# ବିଶ୍ୱଭାରତୀ ପତ୍ରିକା





ବିଶ୍ୱଭାରତୀ ଓଡ଼ିଆ ବିଭାଗ ମୁଖପତ୍ର

# ବିଶ୍ୱଭାରତୀ ଦୀପିକା

୧୩ : ୧୯୮୨

ସମ୍ପାଦନା :

ଡକ୍‌ଟର ନିଳାଦ୍ରି ଭୂଷଣ ହରିଚନ୍ଦନ

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ବିଶ୍ୱଭାରତୀ



# ସର୍ବଭାରତୀୟ ଦୃଷ୍ଟିରେ ଫକୀରମୋହନ

ଓଡ଼ିଆ କଥା ସାହିତ୍ୟର ପିତୃପୁରୁଷ ଫକୀରମୋହନଙ୍କ ଶାଶ୍ୱତ ନାମ ଓଡ଼ିଆ ଜାତୀୟତାର ପ୍ରତୀକ । ଫକୀରମୋହନ ଓଡ଼ିଆ ଜାତିର୍ ଗର୍ବ, ଗୌରବ ଓ ସ୍ୱାଭିମାନ । ଭାରତୀୟ ସାହିତ୍ୟିକ ପରିମଣ୍ଡଳରେ ଏହି ଅସାଧାରଣ ସ୍ରଷ୍ଟା ଆଜି ଅପରିଚିତ ନୁହନ୍ତି । ବିଭିନ୍ନ ଭାଷାରେ ଅନୁବାଦ ମାଧ୍ୟମରେ ତାଙ୍କର ଅମର କୃତି ସୁଧୀ ପାଠକବର୍ଗଙ୍କୁ ଚମତ୍କୃତ କରିଛି, ଓଡ଼ିଆ ସାହିତ୍ୟକୁ ଜାତୀୟ ସ୍ତରରେ ପ୍ରତିଷ୍ଠା ପ୍ରଦାନ କରିଛି ।

ମହାନ୍ ଅଧ୍ୟାପକ ଗୋଲୋକ ବିହାରୀ ଧଳଙ୍କ ଭାଷାର 'ପାଞ୍ଚ ଟଙ୍କିଆ ସ୍କୁଲ ମାଷ୍ଟର ଓଡ଼ିଆ ସାହିତ୍ୟର ସେନାପତି'ହିଁ ସେନାପତିଂକର ସବୁଠାରୁ ବଡ଼ ଗୌରବାନ୍ୱିତ ପରିଚୟ । ଫକୀରମୋହନଙ୍କ ଜୀବନ ଓ ବୈପ୍ଳବିକ ସମାଜ ଦୃଷ୍ଟି ବଡ଼ ଅଭୂତ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ଭାରତୀୟ ସାହିତ୍ୟ ଜଗତର ବହୁ ଶ୍ରେଷ୍ଠ କଥାଶିଳ୍ପୀ ଯେତେବେଳେ ରୋମାନ୍ସ ଲେଖିବା ଭିତରେ ସାର୍ଥକତା ଅନୁଭବ କରୁଥିଲେ, ସେତିକିବେଳେ ଫକୀରମୋହନ ବିନା ପାଶ୍ଚାତ୍ୟ ପ୍ରଭାବରେ ଲେଖିଥିଲେ ବାସ୍ତବବାଦୀ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ; ଯାହାର ସୀମିତ ପରିସର ଭିତରେ ଅତ୍ୟାଚାରୀ ବିରୁଦ୍ଧରେ ଅତ୍ୟାଚାରିତର ପ୍ରତିବାଦ ଫୁଟି ଉଠିବା ସଙ୍ଗେ ସଙ୍ଗେ ପ୍ରବଳ ପରାକ୍ରମୀ ଇଂରେଜ ସରକାରର ଶାସନ ଓ ବିଚାର ବ୍ୟବସ୍ଥା ପ୍ରତି କରାଯାଇଛି ତୀବ୍ର ବ୍ୟଙ୍ଗ ବିଦ୍ରୂପ ।

ଓଡ଼ିଆ କଥାକାରମାନେ ଫକୀରମୋହନଙ୍କ ଉତ୍ତର ଦାୟାଦତ୍ୱ ମୁକ୍ତ କଣ୍ଠରେ ସ୍ୱୀକାର କରି ଆସିଛନ୍ତି । ବିଶିଷ୍ଟ ବର୍ଷୀୟାନ୍ କାହାଣୀକାର ଶ୍ରୀ ବସନ୍ତ

କୁମାର ଶତପଥୀ ତାଙ୍କର ବକ୍ତୃତାରେ ଅନ୍ତରର ସମସ୍ତ ଆବେଗ ଢାଳି କହନ୍ତି– ଫକୀରମୋହନଙ୍କ ସହିତ ମୋର ସମ୍ପର୍କ ପିତାପୁତ୍ରର ସମ୍ପର୍କ । ଏଇ ଆବେଗ, ଏଇ ଆନ୍ତରିକତା କେବଳ ଓଡ଼ିଆ ଗାଳ୍ପିକ ବା ଔପନ୍ୟାସିକମାନଙ୍କର ନୁହେଁ, ସମଗ୍ର ଓଡ଼ିଆ ଲେଖକ ସମାଜର ।

ଓଡ଼ିଆ ସମାଲୋଚକଗଣ ବହୁ ଦୃଷ୍ଟିକୋଣରୁ ଫକୀରମୋହନଙ୍କୁ ଆଲୋଚନା କରିଛନ୍ତି । ଆଲୋଚନାରେ କିଛି ଭାବପ୍ରବଣତା ରହିବା ସ୍ୱାଭାବିକ । କିନ୍ତୁ ଫକୀରମୋହନଙ୍କ ସମ୍ପର୍କରେ ଜାତୀୟ ସ୍ତରର ବିଦ୍ୱାନ ଓ ସ୍ରଷ୍ଟାମାନେ ଯାହା କହିଛନ୍ତି, ତାହା ନିଶ୍ଚୟ ପ୍ରଣିଧାନର ବିଷୟ ।

୧୯୮୮ ମସିହା ଡ଼ିସେମ୍ବର ୮-୯ ତାରିଖରେ ବିଶ୍ୱଭାରତୀରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଏକ ଜାତୀୟ ସେମିନାରର ଆୟୋଜନ କରିଥିଲେ । ଏଥିରେ ଦେଶର କେତେଜଣ ଖ୍ୟାତନାମା ଆଲୋଚକ ଓ ସାହିତ୍ୟିକ ଯୋଗଦେଇ 'Bankim Chandra, Indian Novel and the Indian Mind' ବିଷୟ ଉପରେ ବକ୍ତବ୍ୟ ଉପସ୍ଥାପନ କରିଥିଲେ । ପ୍ରସିଦ୍ଧ ବଙ୍ଗୀୟ ଔପନ୍ୟାସିକ ଓ କବି ଶ୍ରୀ ସୁନୀଲ ଗଙ୍ଗୋପାଧ୍ୟାୟ ଭାଷଣ ପ୍ରସଙ୍ଗରେ କହିଥିଲେ– In Bombay, as in calutta, the use of English has already become wide-spread and there were facilities for printing and publishing, These factors also helped Marathi prose titerature to flourish. But such advantages were almost non-existent in Orissa. And given that, it is quite amazing how such a powerful literature could emerge. The figure who was at the vanguard of this modern development was Fakirmohan Senapati. He was only five years younger than Bankim.

The latter is always remembered as India's very first graduate, while Fakirmohan had only 3 or 4 years of schooling. Bankim's very first position was that of a deputy magistrate, where as Fakirmohan had a job repairing sails at a factory in Balasore. True, he eventually managed to become the dewan at several of the native states of Orissa. He was a prolific writer and gave Oriya literature a distinctive character by liberating it from the dominant

influence of the literature next door. When Bankim was writing historical novels and love stories of the elite, Fakirmohan was writing about the ordinary people at the lower levels of society. His book, 'Chhamana Athaguntha', is the story of an oppressed family of weavers. It is most unfortunate that for a long time Fakirmohan's work remained unknown outside Orissa.

(Sunil Gangopadhyay- Bankim Chandra and making of the Indian Novel-pp. 7)

"ଯେଉଁ ସମୟରେ ବଙ୍କିମଚନ୍ଦ୍ର ଐତିହାସିକ ଉପନ୍ୟାସ ଓ ସମ୍ଭ୍ରାନ୍ତ ଲୋକଙ୍କ ପ୍ରେମ ସମ୍ବଳିତ କାହାଣୀ ଲେଖୁଥିଲେ, ସେତେବେଳେ ଫକୀରମୋହନ ସମାଜର ନିମ୍ନ ସ୍ତରରେ ଥିବା ସାଧାରଣ ଲୋକଙ୍କ ବିଷୟରେ ଲେଖୁଥିଲେ ।"— ଏଇ କଥା ଭିତରେ ଭାରତୀୟ ସାହିତ୍ୟରେ ଫକୀରମୋହନଙ୍କ ଉତ୍କର୍ଷ ପ୍ରତିପାଦନର ପ୍ରଚେଷ୍ଟା ଲକ୍ଷଣୀୟ ।

୧୯୯୩ ଜାନୁଆରୀ ୩୧ରେ ବିଶ୍ୱଭାରତୀ ହିନ୍ଦୀ ବିଭାଗରେ ଅନୁଷ୍ଠିତ ଆଲୋଚନାଚକ୍ରରେ ବିଖ୍ୟାତ ହିନ୍ଦୀ କବି ଓ ସମାଲୋଚକ ପ୍ରଫେସର ନାମବର ସିଂହ ବକ୍ତୃତା ପ୍ରସଙ୍ଗରେ ଛ'ମାଣ ଆଠଗୁଣ୍ଠରେ ରାମଚନ୍ଦ୍ର ମଙ୍ଗରାଜଙ୍କ ପ୍ରତି ଦଣ୍ଡାଦେଶ ବିଷୟକୁ ଉଲ୍ଲେଖ କରି କହିଥିଲେ ଯେ ଇଂରେଜ ବିଚାରକ ରାମଚନ୍ଦ୍ର ମଙ୍ଗରାଜଙ୍କୁ ନରହତ୍ୟା ଅପରାଧରୁ ନିର୍ଦ୍ଦୋଷରେ ଖଲାସ କରି ଗାଈଚୋରୀ ଅପରାଧରେ ୬ ମାସ ଜେଲଦଣ୍ଡ ଦେଇଛନ୍ତି । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଇଂରେଜ ସରକାରଙ୍କ ବିଚାର-ପ୍ରହସନକୁ ଏପରିଭାବେ ବ୍ୟଙ୍ଗ କରିବା ଏକ ଅସାଧାରଣ ଦୁଃସାହସିକ ଘଟଣା, ଯାହା କି ସମସାମୟିକ ଭାରତୀୟ ସାହିତ୍ୟରେ ଅନୁପଲବ୍ଧ ।

କେବଳ ଭାରତୀୟ ସାହିତ୍ୟ କ୍ଷେତ୍ରରେ ନୁହେଁ, ଆନ୍ତର୍ଜାତିକ ସ୍ତରରେ ଫକୀରମୋହନଙ୍କ ବୈଶିଷ୍ଟ୍ୟ ପ୍ରତିପାଦନ କରିବାରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ପ୍ରସିଦ୍ଧ ସମାଲୋଚକ ଶିଶିର କୁମାର ଦାସଙ୍କ ଅବଦାନ ବିଶେଷ ଉଲ୍ଲେଖନୀୟ । ସାହିତ୍ୟ ଏକାଡେମୀ ପ୍ରକାଶିତ ଭାରତୀୟ ସାହିତ୍ୟର ଇତିହାସ ପୁସ୍ତକରେ ୨୮ଟି ସ୍ଥାନରେ ସେ ଫକୀରମୋହନଙ୍କ କୃତିତ୍ୱର ଉଲ୍ଲେଖ କରିଛନ୍ତି ।

ଏ ପୁସ୍ତକର ୨୪୧ ପୃଷ୍ଠାରେ ମାତ୍ର ଗୋଟିଏ ବାକ୍ୟରେ ସେ ଯାହା କହିଛନ୍ତି, ତାହା ହିଁ ଫକୀରମୋହନ-ସାହିତ୍ୟର ଯଥାର୍ଥ ପରିଚୟ :—

Fakirmohan's world is made of the vigorous and the vital, the rude and the naked, the familiar and the real.

ଫକୀରମୋହନଙ୍କ ଶ୍ରେଷ୍ଠ କୃତି ଛ'ମାଣ ଆଠଗୁଣ୍ଠ ବିଷୟରେ ତାଙ୍କର ମତ ଓଡ଼ିଆ ସାହିତ୍ୟର ମହତ୍ତ୍ୱ ପ୍ରତିଷ୍ଠାରେ ବିଶେଷ ସହାୟକ ।

The greatest work of Fakirmohan, Chhaman Athaguntha (1902) is not only free from all traces of the Bankim tradition, but it credited a new world of fiction, which was further expanded and enriched later in the century by several writers, particularly Premchand and Tarashankar Bandyopadhyay. The novel was firts serialised in Utkal Sahitya from 1897 under the pseudonym 'Dhurjati' and completed and published in a book form in 1902. The remarkable quality of the work is its stark realism and grim humour, and abundant sympathy for the poor and the downtrodden. It is a story of an unscrupulous landlord and his greed for acquiring more land, told in the language of the common man. × × A few years earlier Rabindranath, himself a landlord, had written a poem "Two Bighas Land" (1895-96) on a similar theme. A tender and touching poem it certainly was, but Fakirmohan went far ahead in depicting the suffering of the poor, groaning under a socio-economic system that involved the absentee landlordism, the intriguing rent controllers manipulating to become owners of estates, the nefarious activities of the police, the heartlessness of court and the simple daily lives of villagers. The novel is indeed, a memorable human document of rural India. × × Fakirmohan presented a moving record of human misery and struggle. The tradition enriched by him was later taken up by Premchand, Tarashankar Bandyopadhyay, Takazhi Shivasankara Pillai, Pannalal Patel and Gopinath Mohanty, all master-chroniclers of social transformation.

(Sisir Kumar Das—A History of Indian Literature— vol. VIII (1991) pp. 296-97, Sahitya Academi)

ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି ପ୍ରଭୃତିଙ୍କଦ୍ୱାରା ଫକୀରମୋହନ ତାହାରେ ଯେତେ ପରିମାଣରେ ପରିଚିତ ହୋଇଛନ୍ତି, ତାହା ଅପେକ୍ଷା ଅଧିକ ପରିଚିତ ହୋଇଛନ୍ତି, ଏଇପରି କେତେଜଣ ସର୍ବଭାରତୀୟ ସ୍ତରରେ ସ୍ୱୀକୃତ ସମାଲୋଚକମାନଙ୍କଦ୍ୱାରା । ଫକୀରମୋହନଙ୍କ ମହାନତା ସମ୍ପର୍କରେ ଥିବା ସୀମିତ ଦୃଷ୍ଟିକୋଣ ଆଜି ବାହାର ଲେଖକମାନଙ୍କଦ୍ୱାରା ବହୁ ଗୁଣରେ ପ୍ରସାରିତ ହୋଇ-ପାରିଛି । ଫକୀରମୋହନ ବର୍ତ୍ତମାନ କେବଳ ଓଡ଼ିଆ ସାହିତ୍ୟର ନୁହନ୍ତି, ଭାରତୀୟ ସାହିତ୍ୟର ଜଣେ ମହାନ ସ୍ରଷ୍ଟା-ପୁରୁଷ ଭାବେ ସ୍ୱୀକୃତ । ଊନବିଂଶ ଶତାବ୍ଦୀର ଭାରତୀୟ ସାହିତ୍ୟରେ ଏକ ଅନନ୍ୟ କ୍ରାନ୍ତିକାରୀ ଦୃଷ୍ଟିର ସଂଯୋଜନ ହିଁ ତାଙ୍କର ଏହି ପ୍ରତିଷ୍ଠାର ମୂଳ କାରଣ ।

ବିଶ୍ୱଭାରତୀ ଓଡ଼ିଆ ବିଭାଗ ୧୯୯୨ ଫେବୃୟାରୀରେ ଫକୀରମୋହନଙ୍କ ଉପରେ ଏକ ଜାତୀୟ ପାଠଚକ୍ରର ଆୟୋଜନ କରିପାରିଥିବାରୁ ନିଜକୁ ଗୌରବାନ୍ୱିତ ମନେ କରୁଛି । ଏହି ଅବସରରେ ସଂଗୃହୀତ ପ୍ରବନ୍ଧଗୁଡ଼ିକର ଏକତ୍ରୀକରଣରେ ବିଶ୍ୱଭାରତୀ ଦୀପିକା ୧୩ର ସୃଷ୍ଟି । ଗବେଷଣା-ପତ୍ରିକାଟିର ସମ୍ପାଦନାରେ ସହାୟତା କରିଥିବାରୁ ଡଃ ଶ୍ୟାମସୁନ୍ଦର ମହାପାତ୍ର, ଡଃ କଇଳାଶ ପଟ୍ଟନାୟକ ଓ ଡଃ ମନୋରଞ୍ଜନ ପ୍ରଧାନଙ୍କୁ ସାଧୁବାଦ ।

ନୀଳାଦ୍ରି ଭୂଷଣ ହରିଚନ୍ଦନ
୧୫-୧-୯୪

# ପାଠଚକ୍ର ପ୍ରତିବେଦନ

ଶାନ୍ତିନିକେତନସ୍ଥ ବିଶ୍ୱଭାରତୀ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ତ୍ରୟୋଦଶ ବାର୍ଷିକ ଜାତୀୟ ଆଲୋଚନା ଚକ୍ର "ଫକୀରମୋହନ ସେନାପତିଙ୍କ ଜୀବନ ଓ ସାହିତ୍ୟକୁ ଭିତ୍ତିକରି ଗତ ଫେବୃୟାରୀ ୨୩-୨୪ ଦୁଇଦିନ କାଳ ଅନୁଷ୍ଠିତ ହୋଇ-ଥିଲା । ମୁଖ୍ୟ ଅତିଥି ସାହିତ୍ୟିକ ବସନ୍ତ କୁମାର ଶତପଥୀ ଏହି ଆଲୋଚନା ଚକ୍ର ଉଦ୍‌ଘାଟନ କରିଥିଲେ । ବିଭାଗୀୟ ମୁଖ୍ୟ ଡଃ ଶ୍ୟାମସୁନ୍ଦର ମହାପାତ୍ର, ଉକ୍ତ ପାଠଚକ୍ରର ଉପାଦେୟତା ଓ ଆଗନ୍ତୁକ ସମାଲୋଚକବୃନ୍ଦଙ୍କ ସମ୍ପର୍କରେ ପରିଚୟ ପ୍ରଦାନ କରିଥିଲେ । ଉକ୍ତ ଉତ୍ସବରେ ସଭାପତିତ୍ୱ କରିଥିଲେ ବିଶ୍ୱଭାରତୀର ଉପାଚାର୍ଯ୍ୟ ପ୍ରଫେସର ସବ୍ୟସାଚୀ ଭଟ୍ଟାଚାର୍ଯ୍ୟ । ବିଶ୍ୱବିଦ୍ୟାଳୟର କର୍ମ ସଚିବ ଡଃ. ଟି. ବି. ଲାହିଡ଼ି ବିଭାଗୀୟ ଗବେଷଣା ପତ୍ରିକା ବିଶ୍ୱଭାରତୀ ଦୀପିକା ଦ୍ୱାଦଶ ସଂଖ୍ୟା ଉଦ୍‌ଘାଟନ କରିବା ସହିତ ଏହାର ମାନ ସମ୍ପର୍କରେ ନିଜସ୍ୱ ମନ୍ତବ୍ୟ ପ୍ରଦାନ କରିଥିଲେ । ସୂଚନାଯୋଗ୍ୟ ଯେ ଓଡ଼ିଆ ବିଭାଗର ଏହି ପାଠଚକ୍ର ଫକୀର-ମୋହନଙ୍କ ୧୫୦ତମ ଜନ୍ମ ବାର୍ଷିକୀ ଉପଲକ୍ଷେ ଅନୁଷ୍ଠିତ ହେଉଥିଲେ ହେଁ, ଆନ୍ତର୍ଦେଶୀୟ ଓ ସର୍ବଭାରତୀୟ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟର ଏକ ତୁଳନାତ୍ମକ ସମୀକ୍ଷା ପାଇଁ ଏହା ଉଦ୍ଦିଷ୍ଟ ଥିଲା ।

ପ୍ରଥମ ଅଧିବେଶନ ଥିଲା 'ଫକୀରମୋହନଙ୍କ ସହିତ ତୁଳନୀୟ ଅନ୍ୟାନ୍ୟ ସାହିତ୍ୟିକ' । ଫେବୃୟାରୀ ୨୩ ତାରିଖ ଅପରାହ୍ନ ଗ୍ଟରି ଘଟିକାରେ ବହୁ ଛାତ୍ର, ଗବେଷକ ଓ ସମାଲୋଚକଙ୍କ ଗହଣରେ ଏବଂ ପ୍ରଫେସର୍ ଖଗେଶ୍ୱର ମହାପାତ୍ରଙ୍କ ସଭାପତିତ୍ୱରେ ଏହି ଅଧିବେଶନଟି ପରିଗ୍ଟଳିତ ହୋଇଥିଲା । ବିଶ୍ୱଭାରତୀ ବଙ୍ଗଳା, ହିନ୍ଦୀ ଓ ଚୀନା ବିଭାଗର ପ୍ରାଧ୍ୟାପକ ଡଃ ଅମିତ୍ରସୂଦନ ଭଟ୍ଟାଚାର୍ଯ୍ୟ, ଡଃ ହରିଶ୍ଚନ୍ଦ୍ର ମିଶ୍ର ଓ ଡଃ ଅର୍ତତ୍ରାଣ ନାୟକ ପ୍ରମୁଖ ସମାଲୋଚକ ଯଥାକ୍ରମେ 'ଫକୀରମୋହନ ଓ ବଙ୍କିମଚନ୍ଦ୍ର', 'ପ୍ରେମଚାନ୍ଦ ଓ ଫକୀରମୋହନ' ଏବଂ 'ଲୁସୁନ୍ ଓ ଫକୀରମୋହନ' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । ଫକୀରମୋହନ ଯେ ପ୍ରେମଚାନ୍ଦ, ବଙ୍କିମଚନ୍ଦ୍ର ଓ ଲୁସୁନ୍‌ଙ୍କ ସହିତ ସମକକ୍ଷ ଓ ସମଧର୍ମୀ, ଏଥିରୁ ତାହା ପ୍ରତିପାଦିତ ହୋଇଥିଲା ।

ଦ୍ୱିତୀୟ ଦିନର ପ୍ରଥମ ଅଧିବେଶନ ଦଶଟା ସାଢ଼େ ଅଟଟାରେ ଆରମ୍ଭ ହୋଇଥିଲା ଓ ଏହା ଡ଼ଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତିଙ୍କ ଅଧ୍ୟକ୍ଷତାରେ ପରିଚାଳିତ ହୋଇଥିଲା । ଉକ୍ତ ଅଧିବେଶନର ବିଷୟବସ୍ତୁ ଥିଲା 'ଫକୀରମୋହନଙ୍କ ସାହିତ୍ୟ ସହିତ ଅନ୍ୟାନ୍ୟ ତୁଳନୀୟ ସାହିତ୍ୟ' । ସର୍ବମୋଟ ଚାରିଜଣ ପ୍ରାବନ୍ଧିକ ଯଥାକ୍ରମେ ଡଃ ରାମବାହାଲ୍ ତିୱାରୀ, ଡଃ କୃଷ୍ଣଚନ୍ଦ୍ର ଭୂୟାଁ, ଡଃ ମନୋରଞ୍ଜନ ପ୍ରଧାନ ଓ ଡଃ ଚକ୍ରଧର ତ୍ରିପାଠୀ ପ୍ରମୁଖ ସମାଲୋଚକ ପ୍ରବନ୍ଧ ପାଠ କରିଥିଲେ । ଡଃ ତିୱାରି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବ୍ୟାକରଣ ରଚନା ଓ ପାଠ୍ୟପୁସ୍ତକ ଆନ୍ଦୋଳନ ସହିତ ଫକୀରମୋହନଙ୍କ ଶିକ୍ଷାଭିମୁଖୀ ଚିନ୍ତାର ସମାନତା ଦର୍ଶାଇଥିଲେ । ଡଃ କୃଷ୍ଣଚନ୍ଦ୍ର ଭୂୟାଁ ଛ'ମାଣ ଆଠଗୁଣ୍ଠ ଓ ବିଷବୃକ୍ଷର ତୁଳନା କରିଥିଲେ । ଡଃ ମନୋରଞ୍ଜନ ପ୍ରଧାନ 'ପୂର୍ବମାଗଧୀର ରେବତୀମାନେ' ଶୀର୍ଷକ ହିନ୍ଦୀ, ବଙ୍ଗଳା, ଅସମୀୟା ଓ ଓଡ଼ିଆ ସାହିତ୍ୟର ପ୍ରଥମ କ୍ଷୁଦ୍ରଗଳ୍ପଗୁଡ଼ିକର ଏକ ତୁଳନାତ୍ମକ ପ୍ରବନ୍ଧ ପାଠ କରିଥିଲେ । ପ୍ରତ୍ୟେକଟି ଗଳ୍ପର କଥାବସ୍ତୁ, ଚରିତ୍ର, ପରିବେଶ ଓ ଭାଷା-ଶୈଳୀ ଦୃଷ୍ଟିରୁ ଏଗୁଡ଼ିକର ସାମ୍ୟ ଥିଲା ପ୍ରତିପାଦ୍ୟ ବିଷୟ । ପ୍ରେମଚନ୍ଦଙ୍କ ଗୋଦାନ ଓ ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠରେ ଥିବା ଋଣର ପ୍ରାସଙ୍ଗିକତା ସମ୍ପର୍କରେ ଆଲୋଚନା କରିଥିଲେ ଡଃ ତ୍ରିପାଠୀ ।

ଦ୍ୱିତୀୟ ଅଧିବେଶନରେ ସଭାପତିତ୍ୱ କରିଥିଲେ କବି ବ୍ରଜନାଥ ରଥ ଓ ଏହି ଅଧିବେଶନର ବିଷୟ ଥିଲା 'ଫକୀରମୋହନଙ୍କ ସାହିତ୍ୟ ଓ ଜୀବନ' । ସର୍ବମୋଟ ପାଞ୍ଚଜଣ ପ୍ରାବନ୍ଧିକ ଡଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି, ଡଃ କଇଳାଶ ପଟ୍ଟନାୟକ, ଡଃ ବାଉରୀବନ୍ଧୁ କର, ଶ୍ରୀ ଶିଶିର କୁମାର ମହାପାତ୍ର ଓ ଶ୍ରୀ ବ୍ରଜନାଥ ରଥଙ୍କ ପ୍ରବନ୍ଧକୁ ନେଇ ଆଲୋଚନା ହୋଇଥିଲା । ଡଃ ମହାନ୍ତି ଫକୀରମୋହନଙ୍କ 'ସାହିତ୍ୟିକ ବ୍ୟକ୍ତିତ୍ୱ ଓ ସଙ୍ଗଠକ ଜୀବନ', ଡଃ ପଟ୍ଟନାୟକ ଫକୀରମୋହନଙ୍କ ବର୍ଣ୍ଣୀକରଣର ନମୁନା ଭାବରେ 'ଛାଇର ଚିତ୍ର' ପ୍ରବନ୍ଧକୁ ଉପସ୍ଥାପନ କରିଥିଲେ । ଡଃ କର ଓ ଶ୍ରୀ ରଥ 'ଯଥାକ୍ରମେ ଫକୀରମୋହନଙ୍କ ଗଦ୍ୟ-ସାହିତ୍ୟ : ପ୍ରବନ୍ଧ' ଓ 'କବି ଫକୀରମୋହନ' ଶୀର୍ଷକ ପ୍ରବନ୍ଧ ପାଠ କରିଥିବା ସ୍ଥଳେ ଶ୍ରୀ ମହାପାତ୍ର 'ଫକୀରମୋହନ ଓ ମୋହିନୀମୋହନ : ପିତାପୁତ୍ର ସମ୍ପର୍କ'ରେ ଲୁଚି ରହିଥିବା କିଛି ତିକ୍ତ ସମ୍ପର୍କ ସମ୍ବନ୍ଧୀୟ ସୂଚନା ଦେଇଥିଲେ ।

ଆଲୋଚନା ଚକ୍ରର ସର୍ବଶେଷ ବିଷୟ ଥିଲା 'ସାହିତ୍ୟିକ ଫକୀରମୋହନ' ଓ ଏହାର ଅଧ୍ୟକ୍ଷତା କରିଥିଲେ ପ୍ରଫେସର୍ ନରେନ୍ଦ୍ରନାଥ ମିଶ୍ର । ପାଞ୍ଚଜଣ

ପ୍ରାବନ୍ଧିକ ଯଥାକ୍ରମେ ଡଃ ଆଦିକନ୍ଦ ସାହୁ, ଶ୍ରୀ ପଞ୍ଚାନନ ଦାଶ, ଡଃ ଅଶୋକ କୁମାର ମିଶ୍ର, ଡଃ ମିହିର କୁମାର ସାହୁ ଓ ଗବେଷିକା ସବିତା ପଣ୍ଡା ପ୍ରମୁଖ ସ୍ୱ ସ୍ୱ ପ୍ରବନ୍ଧ ପାଠ କରିଥିଲେ । ଡଃ ଆଦିକନ୍ଦ ସାହୁଙ୍କ ଫକୀରମୋହନଙ୍କ ବାମାବାଦୀ (Feminist) ଦୃଷ୍ଟିଭଙ୍ଗୀର ଆଲୋଚନା ବେଶ୍ ହୃଦୟସ୍ପର୍ଶୀ ହୋଇଥିଲା । ପଞ୍ଚାନନ ଦାଶଙ୍କ 'ଫକୀରମୋହନଙ୍କ ଶ୍ରୀମଦ୍‌ଭଗବତ୍ ଗୀତାର ପଦ୍ୟାନୁବାଦ' ପ୍ରବନ୍ଧ ଦୁଷ୍ପ୍ରାପ୍ୟ ସଂସ୍କରଣ ଉପରେ ଆଲୋକପାତ କରିଥିଲା । ଡଃ ମିଶ୍ର ଫକୀରମୋହନଙ୍କ ଗାଥା-କବିତା, ଡଃ ସାହୁ 'ଫକୀରମୋହନଙ୍କ ଉପନ୍ୟାସର କଥାବସ୍ତୁ' ଓ ଶ୍ରୀମତୀ ପଣ୍ଡା 'ଫକୀରମୋହନଙ୍କ ଉପନ୍ୟାସର 'ନାରୀ ଚରିତ୍ର' ସମ୍ପର୍କରେ ପ୍ରବନ୍ଧମାନ ପାଠ କରିଥିଲେ । ସଭାପତି ପ୍ରଫେସର ମିଶ୍ର ଉକ୍ତ ଅଧିବେଶନର ସମସ୍ତ ପ୍ରବନ୍ଧ ପ୍ରତି ଦୃଷ୍ଟି ନିକ୍ଷେପ କରି ଯେଉଁ ମନ୍ତବ୍ୟ ଦେଇଥିଲେ, ତାର ସାରମର୍ମ ହେଲା, ସମସ୍ତ ପ୍ରାବନ୍ଧିକ କେବଳ ଫକୀରମୋହନଙ୍କ କୃତିତ୍ୱକୁ ନେଇ ଆଲୋଚନା କରିଛନ୍ତି, କିନ୍ତୁ କେହି ତାଙ୍କର ପ୍ରଚ୍ଛନ୍ନ ଦୋଷ ସମ୍ପର୍କରେ ମତବ୍ୟକ୍ତ କରିନାହାନ୍ତି । ତଥାପି ପ୍ରବନ୍ଧ ଗୁଡ଼ିକର ଗୁଣାଦର୍ଶ ସ୍ୱୀକାର୍ଯ୍ୟ । ସର୍ବଶେଷରେ ମୁଖ୍ୟଅତିଥି ଶ୍ରୀ ବସନ୍ତ କୁମାର ଶତପଥୀ ଫକୀରମୋହନଙ୍କର ଅସାଧାରଣ ଶିଳ୍ପୀ ପ୍ରତିଭାର ସୂଚନା ଦେବା ସଙ୍ଗେ ସଙ୍ଗେ ଜୋନସନଙ୍କ ସେକସ୍‌ପିୟର ସମ୍ପର୍କୀୟ ଉକ୍ତି ଉଦ୍ଧାରକରି ଫକୀରମୋହନଙ୍କୁ ଅନୁରୂପ ଭାବେ ବାରମ୍ବାର ପଢ଼ି ତନ୍ନିଧ୍ୟସ୍ଥ ସତ୍ୟ ଓ ସୌନ୍ଦର୍ଯ୍ୟକୁ ଅନୁଭବ କରିବା ପାଇଁ ମତ ପ୍ରଦାନ କରିଥିଲେ ।

ଉଦ୍‌ଯାପନ ଉତ୍ସବରେ ପୌରହିତ୍ୟ କରିଥିଲେ ପ୍ରଫେସର ସୌମ୍ୟେନ୍ଦ୍ରନାଥ ବନ୍ଦୋପାଧ୍ୟାୟ । ବିଭିନ୍ନ ଅଧିବେଶନର ନିଷ୍କର୍ଷ ପ୍ରଦାନ କରିଥିଲେ ଡଃ କଇଳାଶ ପଟ୍ଟନାୟକ । ଏଥିରେ ଉପସ୍ଥିତ ପ୍ରତିନିଧିମାନଙ୍କ ପକ୍ଷରୁ ଡଃ ଆଦିକନ୍ଦ ସାହୁ ପାଠଚକ୍ରର ସାଫଲ୍ୟ ପ୍ରସଙ୍ଗରେ ମନ୍ତବ୍ୟ ଦେଇଥିଲେ । ଦୁଇଦିନର ମନୋରଞ୍ଜନ କାର୍ଯ୍ୟ ମଧ୍ୟରେ 'ପେଟେଣ୍ଟ ମେଡ଼ିସିନ୍' ନାଟକ ପରିବେଷଣ କରିଥିଲେ ବିଶ୍ୱଭାରତୀ ଓଡ଼ିଆ ବିଭାଗ ତଥା ଓଡ଼ିଆ ସାହିତ୍ୟ ପରିଷଦର୍ ଛାତ୍ରଛାତ୍ରୀବୃନ୍ଦ ।



# —ଃ ସୂଚୀପତ୍ର ଃ—


| କ୍ର. ନଂ. | ବିଷୟ ଓ ଲେଖକଙ୍କ ନାମ | ପୃଷ୍ଠା |
|---|---|---|
| ୧ | ଫକୀରମୋହନଙ୍କ ସଭାପତି ଅଭିଭାଷଣ | ୧ |
| ୨ | ସେନାପତିଙ୍କ ଶୈଳୀ<br>ବସନ୍ତ କୁମାର ଶତପଥୀ | ୧୬ |
| ୩ | ଫକୀରମୋହନଙ୍କ ଗଦ୍ୟରୀତି ଓ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ<br>ଗଗନେନ୍ଦ୍ରନାଥ ଦାସ | ୨୬ |
| ୪ | ଫକୀରମୋହନ : ନିଜସ୍ୱ କବିତାର ଦର୍ପଣରେ ନିଜେ<br>ବ୍ରଜନାଥ ରଥ | ୬୨ |
| ୫ | ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ଫକୀରମୋହନ ସେନାପତି<br>ମୂଳରଚନା : ରମବହାଲ ତେୱାରୀ<br>ଅନୁବାଦ ; ସଂଗୀତା ଜେନା | ୭୨ |
| ୬ | ଛାଇର ଛବି<br>କଇଳାଶ ପଟ୍ଟନାୟକ | ୮୪ |
| ୭ | ଫକୀରମୋହନଙ୍କ ଗଦ୍ୟ ସାହିତ୍ୟ : ପ୍ରବନ୍ଧ<br>ବାଉରୀବନ୍ଧୁ କର | ୯୨ |
| ୮ | ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ— ତୁଳନାମୂଳକ ଆଲୋଚନା<br>କୃଷ୍ଣଚନ୍ଦ୍ର ଭୂୟାଁ | ୧୦୯ |
| ୯ | ଫକୀରମୋହନଙ୍କ କାବ୍ୟ-କବିତାରେ ଛନ୍ଦର ସ୍ୱରୂପ<br>ଅଶୋକ କୁମାର ରଥ | ୧୨୬ |
| ୧୦ | ମାର୍କସୀୟ ସାହିତ୍ୟତତ୍ତ୍ୱ : ଏକ ପ୍ରାଥମିକ ଆଲୋଚନା<br>ମୂଳରଚନା : ଶ୍ୟାମଲ କୁମାର ସରକାର<br>ଅନୁବାଦ : ନୀହାଦ୍ରି ଭୂଷଣ ହରିଚନ୍ଦନ | ୧୩୧ |
| ୧୧ | Indian Culture in Orissa<br>Dr. Harekrushna Mahtab | ୧୪୪ |

# ଫକୀରମୋହନଙ୍କ ସଭାପତି ଅଭିଭାଷଣ

ସଭ୍ୟ ମହାଶୟଗଣ,

ଏହି ସଭାରେ ଯୋଗଦେବା ସକାଶେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାଣୀଭୂଷଣ ମହାଶୟଙ୍କଠାରୁ ପ୍ରଥମ ପତ୍ର ପାଇ ଆଶ୍ଚର୍ଯ୍ୟ ହେଲି—ମନରେ ବିଚାର କଲି କଟକରେ ମୋ'ଠାରୁ ଶତ ଶତ ଗୁଣରେ ଅଧିକ ବିଦ୍ୱାନ୍ ବୁଦ୍ଧିମାନ୍ ଉପଯୁକ୍ତ ଅନେକ ଲୋକ ବିଦ୍ୟମାନ ଅଛନ୍ତି । ସେମାନଙ୍କ ଯୋଗେ ସଭାର କାର୍ଯ୍ୟ ସୁଚାରୁ ରୂପେ ନିର୍ବାହ ହୋଇପାରେ, ତେବେ ମୋ'ପରି କ୍ଷୀଣବୁଦ୍ଧି ବିକଳେନ୍ଦ୍ରିୟ ଜରାଜୀର୍ଣ୍ଣ ଲୋକଟାକୁ ଆହ୍ୱାନ କି ସକାଶ ? ନିଶ୍ଚୟ ରଥ ମହାଶୟଙ୍କର ଲୋକନିର୍ବାଚନରେ ତ୍ରୁଟି ହୋଇଅଛି, ତେଣୁ ତାହାଙ୍କର ଭ୍ରମ ସଂଶୋଧନ ସକାଶ ଅସ୍ୱୀକାରସୂଚକ ପତ୍ର ଲେଖିଲି ମାତ୍ର ପଣ୍ଡିତ ମହାଶୟ ମୋ' ନିବେଦନ ପତ୍ର ପ୍ରତି ଦୃଷ୍ଟିପାତ ନ କରି ପୁନର୍ବାର ଦୃଢ଼ତା ସହିତ ଆହ୍ୱାନସୂଚକ ପତ୍ର ଲେଖିଲେ । ପଣ୍ଡିତ ମହାଶୟଙ୍କ ପତ୍ର ପାଠର ଅବ୍ୟବହିତ ପରେ ମୁଁ ଖଣ୍ଡିଏ ଖବରକାଗଜରେ ଚୁଁ ଚୁଁ ଡ଼ା ମୁକାମରେ ବଙ୍ଗ ସାହିତ୍ୟ ସମ୍ମିଳନୀର ୫ମ ଅଧିବେଶନରେ ବଙ୍ଗର ଶ୍ରେଷ୍ଠ ପୁରୁଷ ମହାରାଜା ମନୀନ୍ଦ୍ରଚନ୍ଦ୍ର ନନ୍ଦୀ ଏବଂ ଅବସରପ୍ରାପ୍ତ ହାଇକୋର୍ଟର ଜଜ୍ ଏବଂ ତତ୍ତୁଲ୍ୟ ମହାତ୍ମାମାନଙ୍କର ଯୋଗଦାନ ସଭାର କୃତକାର୍ଯ୍ୟତା ଏବଂ ବଙ୍ଗ ସାହିତ୍ୟ ଉନ୍ନତି କଳ୍ପେ ପଞ୍ଚାଶ ସହସ୍ର ଟଙ୍କା ସଂଗ୍ରହ ଇତ୍ୟାଦି ବିଷୟ ପାଠ କରନ୍ତେ ମନରେ କେମନ୍ତ ଗୋଟିଏ ବ୍ୟାକୁଳତା ଜାତ ହେଲା । ବିଚାର କଲି ଉତ୍କଳର ସମସ୍ତ ଶ୍ରେଣୀର ପ୍ରଧାନ ଲୋକମାନେ ମାତୃଭାଷାର ଉନ୍ନତି କାମନାରେ କେବେ ଏକତ୍ରିତ ହେବେ, ହାୟ ସେ ଶୁଭଦିନ କେବେ ଆସିବ । ସଙ୍ଗେ ସଙ୍ଗେ ମୋ' ମନରେ ଗୋଟିଏ ପୁଣି ନିର୍ବେଦ ଉପସ୍ଥିତ ହେଲା । ବିଚାର କଲି ଯେଉଁ ଲୋକ ଉତ୍କଳ ସାହିତ୍ୟ ସମାଜର ସାଦର ଆହ୍ୱାନ ଇଚ୍ଛାପୂର୍ବକ ପ୍ରତ୍ୟାଖ୍ୟାନ କରିପାରେ, ତାହାର ସନ୍ତାପ କପଟତାର ରୂପାନ୍ତର ବିନା ଆଉ କ'ଣ ହୋଇପାରେ—ମୁଁ ଯେତେ ଅଯୋଗ୍ୟ ହୁଏଁ ପଛକେ ମାତୃଭାଷା ଉନ୍ନତି ସମ୍ବନ୍ଧେ ବ୍ୟକ୍ତିଗତ ଭାବରେ ମୋହର ତ ଗୋଟାଏ କର୍ତ୍ତବ୍ୟ ଅଛି ।

ସେତୁବନ୍ଧରେ ଯୋଗଦେବା ସକାଶେ ଗୁଣ୍ଡୁଚିମୂଷା ମଧ୍ୟ ଅବହେଳା କରିନାହିଁ । ନିଜର କିଞ୍ଚିତ୍ ଆର୍ଥିକ କ୍ଷତି ବା ପରିଶ୍ରମ ସ୍ୱୀକାର ନ କରି ଅନ୍ୟର ମୁଖାପେକ୍ଷୀ ହୋଇ ରହିବି, ଏହା କେମନ୍ତ କଥା ! ମୋ' ଦୃଷ୍ଟାନ୍ତ ଅବଲମ୍ବନକାରୀଙ୍କୁ ଦୋଷୀ କରିବାର ମୋହର କିଛିମାତ୍ର ଅଧିକାର ନାହିଁ । ସାହିତ୍ୟିକ ଚର୍ଚ୍ଚା ତେବେ କିପରି ହେବ ? ଏହି ସମସ୍ତ କଥା ଚିନ୍ତା କରି ରଥ ମହାଶୟଙ୍କୁ ତତ୍କ୍ଷଣାତ୍ ସମ୍ମତି-ସୂଚକ ପତ୍ର ଲେଖିଲି ।

ସଭରେ ଯୋଗଦାନ କରିବାର ମୋହର ଆନ୍ତରିକ ଆଗ୍ରହର ଅନ୍ୟତର କାରଣ ଏହିକି ବାଲେଶ୍ୱରରେ ଶୁଣିଥିଲି ଏହି ସମିତି ଯୁବକମାନଙ୍କ ଯୋଗେ ପ୍ରତିଷ୍ଠିତ ଏବଂ ଗ୍ଲାନିତ–ଉତ୍କଳ ଭବୀ ଆଶାଭରସାର ସ୍ଥଳ ଉଦୀୟମାନ ସେହି ଯୁବକମାନଙ୍କୁ ଏବଂ ମାତୃଭଷାର ଉନ୍ନତିକାମୀ ମହାତ୍ମାମାନଙ୍କୁ ଏକତ୍ର ସମାବେଶ ଦେଖି ମୋହର ଶେଷ ପ୍ରାୟ ଜୀବନକୁ ଧନ୍ୟ ଜ୍ଞାନ କରିବି, ଯେଉଁ ସ୍ଥାନରେ ବାକଦେବୀର ଆରାଧନା ଏବଂ ସଭସ୍ଥଳକୁ ତୀର୍ଥସ୍ଥାନ ଜ୍ଞାନ କରୁଥିଲେ । ନୈମିଷା-ରଣ୍ୟ ସେହି ଭବର ତୀର୍ଥସ୍ଥାନ ।

ନିଷ୍ଠୟ କଥା, ମାତୃଭଷା ପ୍ରତି ଶିକ୍ଷିତ ଲୋକମାନଙ୍କର ଅଯତ୍ନ ଗୋଟିଏ ନୈରାଶ୍ୟର କାରଣ ହୋଇପଡ଼ିଥିଲା । ବର୍ତ୍ତମାନ ଶିକ୍ଷିତ ମହାତ୍ମାମାନଙ୍କର ଏ ସମ୍ବନ୍ଧେ ସମବେତ କର୍ମାନୁଷ୍ଠାନ ଦେଖି ମନ ମଧ୍ୟରେ ଆଶା ପୋଷଣ କରା-ଯାଇପାରେ । ମାତୃଭଷାର ଦୁର୍ଦ୍ଦଶା ଆଉ ଦୀର୍ଘକାଳ ସ୍ଥାୟିନୀ ନୁହେଁ । ବର୍ତ୍ତମାନ ସଭସ୍ଥ ମହାତ୍ମାମାନଙ୍କ ଉତ୍ସାହ ଏବଂ ଯତ୍ନ ଦେଖି ଆଶା ଧ୍ରୁବ ଧାରଣାରେ ପରି-ଣତ ହୋଇଛି । ମୁଁ ଉତ୍କଳ ସାହିତ୍ୟ ଏବଂ ମୁକୁରରେ ଶିକ୍ଷିତ ଯୁବକମାନଙ୍କର ଲିଖିତ ଉପର୍ଯ୍ୟୁପରି କେତେଗୋଟି ପ୍ରବନ୍ଧ ଏବଂ କବିତା ମନୋଯୋଗ ସହିତ ପାଠ କରିଛି । ଶବ୍ଦବିନ୍ୟାସର ଶୃଙ୍ଖଳା, ଭଷାର ପରିପାଟ୍ୟ, ଭବର ପ୍ରଗାଢ଼ତା ଦେଖି ମୁଁ ମନରେ ନିଷ୍ଠୟ କରିଛି ଏହି ପ୍ରତିଭଶାଳୀ ଯୁବକମାନେ ସମୟରେ ଚିହ୍ନିତ ଗ୍ରନ୍ଥାକାର ରୂପେ ପରିଚିତ ଏ ଦେଶର ମୁଖୋଜ୍ଜ୍ୱଳକାରୀ ରୂପେ ବିଖ୍ୟାତ ହେବେ । ସେମାନଙ୍କ ଯୋଗେ ମାତୃଭଷା ବିଶେଷ ଉନ୍ନତି ଲଭ କରିବ, ଏହା ନିଃସନ୍ଦେହ ରୂପେ ବୋଲଯାଇପାରେ । ସତ୍ୟତା ଅନୁରୋଧରେ ମୋତେ ନିତାନ୍ତ ସଙ୍କୁଚିତ ଭବରେ ଏହା ମଧ୍ୟ ବୋଲିବାକୁ ହେଉଛି । ଯେତେଗୁଡ଼ିଏ କବିତା ପାଠ କଲେ ଲେଖକ ଯେ ପ୍ରାଚୀନ ଉତ୍କଳ ଭଷା ଆଲୋଚନା କରିଅଛନ୍ତି ଏମନ୍ତ ବୋଧହୁଏ ନାହିଁ । ଅନ୍ୟ ସମ୍ବନ୍ଧ ଯାହାହେଉ, ପ୍ରାଚୀନ ଗ୍ରନ୍ଥକାର ଉପେନ୍ଦ୍ରଭଞ୍ଜ,

ଦୀନକୃଷ୍ଣ, କବିସୂର୍ଯ୍ୟ ବା ଜଗନ୍ନାଥ ଦାସ ଶବ୍ଦବିନ୍ୟାସ ବା ମାର୍ଜିତ ରଚନା ପ୍ରଣାଳୀ ଦେଖାଇ ଯାଇଅଛନ୍ତି । ନିଃସନ୍ଦେହ, ସେ ସମସ୍ତ ବର୍ତ୍ତମାନ ନୂତନ ଗ୍ରନ୍ଥକାରମାନଙ୍କ ପ୍ରତି ଆଦର୍ଶ ସ୍ଥଳ । ମୁଁ ପ୍ରଖ୍ୟାତନାମା କବି ରାଧାନାଥଙ୍କ ଯୌବନ ଜୀବନ ବିଷୟ ଜାଣେ, ସେ କବିତା ଲେଖିବା ପୂର୍ବେ କେତେ ବରଷ ପର୍ଯ୍ୟନ୍ତ ପ୍ରାଚୀନ ଉତ୍କଳ କାବ୍ୟବିଶେଷରେ ଉପେନ୍ଦ୍ର ଭଞ୍ଜ କବିତା ଅତି ମନୋ-ଯୋଗ ସହିତ ବିଶେଷ ଭବରେ ଆଲୋଚନା କରିଥିଲେ । ମୁଁ ସମୟ ସମୟରେ କିଛି କିଛି କବିତା ଲେଖିବାକୁ ଚେଷ୍ଟା କରିବା ସମୟେ ଦୀନକୃଷ୍ଣ ଏବଂ ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣ କରିଥାଏଁ । ଦୀନକୃଷ୍ଣ ବା ଭଞ୍ଜ କବି ଅତି ଅଳ୍ପ ଅକ୍ଷରରେ ଯେଉଁ ପ୍ରଗାଢ଼ ବିସ୍ତୃତ ଭବମାନ ସଂକ୍ଷେପରେ ପ୍ରକାଶ କରିଅଛନ୍ତି, ବର୍ତ୍ତମାନ ଭରତ ପ୍ରଚଳିତ ଯେ କୌଣସି ପ୍ରଥମ ଶ୍ରେଣୀ ଭଷା ମଧ୍ୟରେ ବିରଳ ପ୍ରାପ୍ୟ ।

କି ଧର୍ମାଲୋଚନା–କି ଜ୍ଞାନାର୍ଜନ–କି ବିଷୟ ଚର୍ଚ୍ଚାକ୍ଷେତ୍ର–ସମସ୍ତ ସମୟରେ ସହାୟ ହୁଏ, ସେଥିସକାଶ ଏହାର ନାମ ସାହିତ୍ୟ । ସାହିତ୍ୟ ଜାତିର ଜୀବନ, ଜାତିର ବଳ, ଜାତିର ପଦ ମର୍ଯ୍ୟାଦା ରକ୍ଷାର ଏକମାତ୍ର ଅବଲମ୍ବନ । ଯେଉଁ ଦେଶର ଯେଉଁ ଜାତିର ସାହିତ୍ୟ ଉନ୍ନତ ନୁହେଁ, ସେ ଦେଶବାସୀଙ୍କ ଏହି ସମସ୍ତ ମାର୍ଗ ସଂକୀର୍ଣ୍ଣ, ନିଶ୍ଚୟ କଥାଭଷା ବା ଜାତୀୟ ସାହିତ୍ୟ ଜନସମାଜର ଉନ୍ନତି ପ୍ରତି ସଂପୂର୍ଣ୍ଣ ନିର୍ଭର କରେ । ଏକମାତ୍ର ସାହିତ୍ୟକୁ ସମ୍ମୁଖରେ ଧରି ଜନସାଧା-ରଣରେ ଆତ୍ମପ୍ରତିଷ୍ଠା ସ୍ଥାପନର ପ୍ରୟାସ ଜାତୀୟଜୀବନ, ଜାତୀୟ ଉନ୍ନତିର ଅବସ୍ଥା ସ୍ଥିର କରଯାଇପାରେ । ଯେଉଁ ଜାତିର ଭଷା ଅବନତ, ନିଶ୍ଚୟ ସେ ଜାତି ଜାଗ୍ରତ ହୋଇନାହାନ୍ତି । ସେମାନଙ୍କର ଉଦ୍ୟମଶୀଳତା ଅଭବ, ପୁଣି ସେ ଜାତି ଆତ୍ମନିର୍ଭର କରିବାକୁ ସକ୍ଷମ ନୁହନ୍ତି । ନିଶ୍ଚୟ ସେ ଜାତିର ହୃଦୟ ବିଶେଷ ଜ୍ଞାନ ଭବରେ ଉତ୍ତେଜନା ପ୍ରାପ୍ତ ହୋଇନାହିଁ । ଯେ ଜାତି ଆତ୍ମଗୌରବ ରକ୍ଷଣରେ ଅସମର୍ଥ । ସଭ୍ୟ ଜନସମାଜରେ ସେ ଜାତିର ସ୍ଥାନ ସର୍ବନିମ୍ନ । ସେ ଜାତିର ପଦ ମର୍ଯ୍ୟାଦା ନିତାନ୍ତ ପରିନତ । ସେ ଜାତି ସଭ୍ୟ ଜାତିମଣ୍ଡଳରେ ଚିର ଉପହସିତ ଏବଂ ଅବଜ୍ଞାତ । ଭଷା ପ୍ରତି ଚକ୍ଷୁ ଅବଲମ୍ବନରେ ଆମ୍ଭମାନଙ୍କ ଜାତିକୁ ଅନାଉନ୍ତୁ, ସଭ୍ୟ ସମାଜରେ ଆମ୍ଭମାନଙ୍କ ସ୍ଥାନ କେଉଁଠାରେ । ଆମ୍ଭମାନଙ୍କ ଜାତୀୟ ଉନ୍ନତିର କି ଉପାୟ ନାହିଁ–ଅବଶ୍ୟ ଅଛି ମଧ୍ୟ ତାହା ସହଜସାଧ୍ୟ । ସେହି ଉପାୟ ଆମ୍ଭମାନଙ୍କ ଶ୍ରଦ୍ଧା-ଯତ୍ନ-କିଞ୍ଚିତ୍ ତ୍ୟାଗ ସ୍ୱୀକାର ପ୍ରତି ନିର୍ଭର କରେ । ଆପଣା ଉନ୍ନତି ସାଧନରେ ଆପେ ଯତ୍ନ ନ କରି ଫଳ ପ୍ରତ୍ୟାଶାରେ ଅନ୍ୟ ପ୍ରତି ନିର୍ଭର

କରିବା ବିଡମ୍ବନା ମାତ୍ର । ଅବଶ୍ୟ ବର୍ତ୍ତମାନ ଆମ୍ଭେମାନେ ପୃଥିବୀ ବ୍ୟାପ୍ତ ବିଷୟ ସମ୍ପତ୍ତି ଗରିଷ୍ଠ । ରାଜଭାଷା ଇଂରେଜୀ ଭାଷା ଅଧ୍ୟୟନରେ ବିଶେଷ ଯତ୍ନଶୀଳ ମାତ୍ର ନିଶ୍ଚୟ ଜାଣିବେ ପ୍ରକୃତ ସାହିତ୍ୟ ମାତୃଭାଷାର ସମ୍ପତ୍ତି । ଯେ ପର୍ଯ୍ୟନ୍ତ ମାତୃଭାଷା ଉନ୍ନତି ଲାଭ କରିନାହିଁ, ସେ ପର୍ଯ୍ୟନ୍ତ ଆମ୍ଭେମାନେ ପ୍ରକୃତ ସାହିତ୍ୟର ଆସ୍ୱାଦନରୁ ବଞ୍ଚିତ । ଶତ ସହସ୍ର ରୂପେ ଚେଷ୍ଟା କଲେ ମଧ୍ୟ ପରକୀୟ ଭାଷାକୁ ଆତ୍ମସାତ୍ କରିବାକୁ ଆମ୍ଭେ ନିତାନ୍ତ ଅକ୍ଷମ । ପାର୍ଶ୍ୱବର୍ତ୍ତୀ ଘଟନାବଳୀ ପ୍ରତି ଦେଖନ୍ତୁ ଏହା ଯେମନ୍ତ ପ୍ରକୃତିର ଅମୋଘ ଆଦେଶ । ଭଗବାନ ଯେମନ୍ତ ଭିନ୍ନ ଭିନ୍ନ ଜାତି ସକାଶେ ଭିନ୍ନ ଭିନ୍ନ ଭାଷା ବିଧାନ କରି ଦେଇଅଛନ୍ତି । ଏହା ଆମ୍ଭମାନଙ୍କର କଳ୍ପନାସମ୍ଭୂତ କଥା ନୁହେଁ । ଏହା ଇଂରେଜୀ ଧର୍ମଶାସ୍ତ୍ର ବାଇବଲରେ ସୁସ୍ପଷ୍ଟ ଲେଖାଅଛି– ପରମେଶ୍ୱର ଲୋକମାନଙ୍କର ଭାଷା ପୃଥକ ପୃଥକ ବିଧାନ କରିଦେଲେ । ଆମ୍ଭମାନଙ୍କ ଆର୍ଯ୍ୟ ଧର୍ମଶାସ୍ତ୍ରରେ ମଧ୍ୟ ଉପର୍ଯ୍ୟୁକ୍ତ ବିଷୟରେ ଅନେକ ପ୍ରମାଣ ବିଦ୍ୟମାନ ରହିଅଛି । ଭଗବାନ ବୁଦ୍ଧଦେବ ବୁଝିଥିଲେ, ଜଗତସ୍ଥ ସମସ୍ତ ଲୋକ ଏକ ପରମେଶ୍ୱରଙ୍କ ସନ୍ତାନ–ସୁତରାଂ ଭ୍ରାତୃ ସମ୍ବନ୍ଧରେ ଆବଦ୍ଧ, ମାତ୍ର ଦେଶ ଭେଦେ ଜଳବାୟୁ ଭେଦରେ ଆକାର ପ୍ରକୃତି ଏବଂ ଭାଷା ପୃଥକ ପୃଥକ । ପୂର୍ବକାଳ ଭାରତବର୍ଷରେ ଏକମାତ୍ର ସଂସ୍କୃତ ଭାଷା ଆଲୋଚ୍ୟ ଏବଂ ଧର୍ମଗ୍ରନ୍ଥ ଲିଖିତ ଭାଷା ଥିଲା । ମାତ୍ର ଭଗବାନ ସଂସ୍କୃତ ଭାଷା ପରିତ୍ୟାଗ କରି ତାହାଙ୍କ ମାତୃଭାଷା ପାଲି ଭାଷାରେ ଉପଦେଶ ଦେଇଯାଇଛନ୍ତି ।' ବୌଦ୍ଧଧର୍ମଶାସ୍ତ୍ର ପାଲି ଭାଷାରେ ଲିଖିତ । ତାହାଙ୍କ ସମୟଠାରୁ ଭାରତରେ ପୈଶାଚୀ, ମାଗଧୀ, ଦ୍ରାବିଡ଼ି ଏବଂ ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନ ଲିଖିତ ଏବଂ ଆଲୋଚ୍ୟ ଭାଷା ରୂପେ ପରିଣତ ହୁଏ । ଆମ୍ଭେମାନେ ଅନୁମାନ କରୁ, ଉତ୍କଳ ଭାଷା ବୌଦ୍ଧଯୁଗଠାରୁ ଲିଖିତ ଭାଷା ରୂପେ ବ୍ୟବହୃତ ହୋଇଅଛି । ଉତ୍କଳର ନାନା ପ୍ରଦେଶରେ ତୁଳାଭିଣା ଶରୀର ଭେଦ ବା ଶରୀରଭେଦ ଆତ୍ମଜ୍ଞାନ ନାମକ ଅନେକଗୁଡ଼ିଏ ପୁସ୍ତକ ଦେଖିବାକୁ ମିଳେ । ଦୀର୍ଘକାଳ ଯାବତ୍ ଲେଖକ ଓ ପାଠକ ପରମ୍ପରା ଯେବେ ହେଁ ଏହାର ଭାବ ଓ ଭାଷା ଅନେକ ପରିବର୍ତ୍ତିତ ହୋଇଅଛି ମାତ୍ର ମୂଳ ବିଷୟ ବୌଦ୍ଧ ଭାବରେ ପରିପୂର୍ଣ୍ଣ ।

ପୃଥିବୀର ଇତିହାସ ଆଲୋଚନା କରି ଦେଖନ୍ତୁ କେହି ଜାତି ପରକୀୟ ଭାଷା ବଳରେ ପ୍ରକୃତ ଉନ୍ନତି ଲାଭ କରିବାକୁ ସକ୍ଷମ ହୋଇନାହିଁ । ଜାତି ମଧ୍ୟରେ ପରକୀୟ ଭାଷାର ପ୍ରଭାବ କିପରି ଜାଣନ୍ତି ? ନଦୀରେ ବଢ଼ିପାଣି ପ୍ରବେଶ ପରି, ବଢ଼ିପାଣି ନଦୀର ଗର୍ଭ ଓ କୂଳ ଏବଂ ନଦୀର ନିଜ ଜଳକୁ ଆନ୍ଦୋଳିତ କରି

ଉନ୍ମତ୍ତ ଭାବରେ ଧାବିତ ହେଉଥାଏ । ମୂଳସ୍ରୋତ ରହିତ ହେଲେ ବର୍ଦ୍ଧିର ଚିହ୍ନ ମାତ୍ର ସ୍ଥାନେ ସ୍ଥାନେ ସ୍ଥାପନ କରି ନବାଗତ ପାଣି ବହିଯାଏ । ୫୦/୬୦ ବରଷ ପୂର୍ବରେ ଏହି ଉତ୍କଳ ଦେଶରେ ପାରସ୍ୟ ଭାଷା ରାଜଭାଷା ସୁତରାଂ ଆଲୋଚ୍ୟ ଭାଷା ରୂପେ ବ୍ୟବହୃତ ହେଉଥିଲା । ସମ୍ଭ୍ରାନ୍ତ ଲୋକଙ୍କ ଘର ପିଲାମାନେ ବିଧି ରକ୍ଷାକରି ଅବଧାନ ଚାଟଶାଳୀରେ ଉଡ଼ାଙ୍କ ଫେଡ଼ାଙ୍କ ନଳ ଭିଆଣ ପର୍ଯ୍ୟନ୍ତ ଉତ୍କଳ ଭାଷାର ପାଠ ସମାପ୍ତ କରି ପାରସି ପଢ଼ିବା ପାଇଁ ଅଖୁନଜୀ ସେବାରେ ନିଯୁକ୍ତ ହେଉ-ଥିଲେ । ସେ ସମୟରେ ପାର୍ଶି ମିଶା ଉଡ଼ିଆ ବା ବଙ୍ଗଳାରେ କଥା କହିବା ଜ୍ଞାନ-ବାନର ପରିଚାୟକ ସ୍ୱରୂପ ଥିଲା । ବଡ଼ ଲୋକମାନେ ପାରସ୍ୟ ଭାଷାରେ ଘରର ଆୟବ୍ୟୟ ହିସାବ ରଖୁଥିଲେ । କେବଳ ଭାଗବତ, ରାମାୟଣ ପ୍ରଭୃତି ଧର୍ମଶାସ୍ତ୍ର ଉତ୍କଳ ଭାଷାକୁ ଧରି ରଖିଥିଲା । ହାୟ, ଆମ୍ଭମାନଙ୍କ ପୂର୍ବପୁରୁଷମାନେ ରାଜଭାଷା ସହିତ ମାତୃଭାଷା ଚର୍ଚ୍ଚା କରୁଥିଲେ ଆମ୍ଭମାନଙ୍କ ପାଇଁ କେତେ ସମ୍ପତ୍ତି ସଞ୍ଚିତ ରହିଥାନ୍ତା ।

ଆଉ ଗୋଟିଏ କଥା, ବର୍ତ୍ତମାନ କାଳରେ ରାଜଭାଷା ଇଂରେଜୀର ବହୁଳ ଚର୍ଚ୍ଚା ହେଉଅଛି ସତ୍ୟ; ମାତ୍ର ଏହି ଦୁରୂହ ବିଦେଶୀୟ ଭାଷା ନିମ୍ନଶ୍ରେଣୀ ପର୍ଯ୍ୟନ୍ତ ପ୍ରବେଶ କରିବା ସହଜ ବ୍ୟାପାର ନୁହେଁ, ପୁଣି ସର୍ବସାଧାରଣ କନ୍ୟା ଭଗ୍ନୀମାନେ ଏହି ଭାଷାକୁ ଆୟତ୍ତ କରିପାରିବେ, ଏପରି ଆଶା କରିବା ବିଡ଼ମ୍ବନା ମାତ୍ର । ବାଲ୍ୟ ଜୀବନର ପ୍ରକୃତ ଶିକ୍ଷୟିତ୍ରୀ ଉପଦେଷ୍ଟ୍ରୀ ମାତାମାନେ ଶିକ୍ଷିତା ନ ହେଲେ ଜାତି ମଧ୍ୟରେ ପ୍ରକୃତ ଶିକ୍ଷା ବିସ୍ତାର କଦାଚ ସମ୍ଭବପର ନୁହେଁ, ଅତଏବ ଭବିଷ୍ୟତ ମାତାମାନଙ୍କୁ ଶିକ୍ଷିତା କରାଇବା ନିମନ୍ତେ ମାତୃଭାଷାର ଉନ୍ନତି ନିତାନ୍ତ ଆବଶ୍ୟକ ଅଟେ । ଆମ୍ଭମାନଙ୍କ ଭାବୀ ପୁରୁଷ ପୁତ୍ର ପୌତ୍ରମାନଙ୍କ ପ୍ରତିପୋଷଣ ବା ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନ ନିମନ୍ତେ ଅର୍ଥୋପାର୍ଜ୍ଜନ ବା ସଞ୍ଚୟ ସକାଶେ କେତେ ରୂପେ, ଯତ୍ନ କରିଥାଉଁ ସେମାନଙ୍କୁ ସଭ୍ୟ ସମାଜରେ ଗଣ୍ୟ କରାଇବା ନିମନ୍ତେ ଏବଂ ସେମାନଙ୍କ ଜ୍ଞାନାର୍ଜ୍ଜନର ମାର୍ଗ ପ୍ରଶସ୍ତି ନିମନ୍ତେ ଦେଶୀୟ ସାହିତ୍ୟ ଉନ୍ନତି କି ପ୍ରୟୋଜନୀୟ ନୁହେଁ ? ଆମ୍ଭମାନଙ୍କ ନିକଟ ପ୍ରତିବାସୀ ବଙ୍ଗୀୟ ଜନସମାଜର ଅବସ୍ଥା ପ୍ରତି ଦୃଷ୍ଟିପାତ କରନ୍ତୁ, ସେମାନେ ବର୍ତ୍ତମାନ ସଭ୍ୟ ସମାଜରେ ଗୌରବ ଲାଭ ନିମନ୍ତେ କେତେଦୂର କ୍ଷମହେଲେଣି । ବର୍ତ୍ତମାନ ପୃଥିବୀରେ ଚିହ୍ନିତ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ଭାଷା ସହିତ ବାହୁ ମିଳାଇ ଅନେକଗୁଡ଼ିଏ ବଙ୍ଗଭାଷା ଲିଖିତ ପୁସ୍ତକ ନାନା ଭାଷାରେ ଅନୁବାଦିତ, ସେଥି ସକାଶେ ବଙ୍ଗ ସନ୍ତାନମାନଙ୍କର

ଜଗତରେ ଏତେଦୂର ପ୍ରତିଷ୍ଠା । ଯଦି ବଙ୍ଗଭାଷା ସେମାନଙ୍କଠାରୁ ବାହାର କରି-ନିଆଯାଏ, ସେମାନଙ୍କ ସ୍ଥାନ କେଉଁଠାରେ ହେବ । ଆପଣମାନେ ଅବଶ୍ୟ ଜାଣନ୍ତି, ସେମାନେ ଅଦମ୍ୟ ଉତ୍ସାହ ଅତୁଳନୀୟ ମାତୃଭାଷା ପ୍ରତି ପ୍ରୀତି ବଳରେ ଅଳ୍ପକାଳ ମଧ୍ୟରେ ଏପରି ସୁଯଶ ଅର୍ଜନରେ ସମର୍ଥ ହୋଇଛନ୍ତି । ଜଗତରେ ଭାରତ ଭୂମିରେ ଯେ ଏବେ ଗୌରବ ସଂସ୍କୃତ ଭାଷା କି ସେଥିର ମୂଳାଧାର ନୁହେଁ ? ଭାରତରେ ବର୍ତ୍ତମାନ ୩୬୪ ପ୍ରକାର ଭାଷା ପ୍ରଚଳିତ ଅଛି । ସେଥିମଧ୍ୟରେ ଯେତେ ପ୍ରକାର ଲିଖିତ ପ୍ରସିଦ୍ଧ ଭାଷା ଅଛି, ପ୍ରାଚୀନତ୍ୱରେ ଅଙ୍ଗ ସୌଷ୍ଠବ ଗୁଣରେ ଉତ୍କଳ ଭାଷା କାହାରିଠାରୁ ନିଶ୍ଚୟ ନ୍ୟୁନ ନୁହେଁ । ପ୍ରତ୍ନତତ୍ତ୍ୱବିଦ୍ ମହାପଣ୍ଡିତ ବେଣ୍ଟ୍ଲି ସାହେବଙ୍କ ମତରେ ପ୍ରାୟ ୪୨ ଶତ ବରଷ ପୂର୍ବେ ଲିଖିତ ମାନବ ଧର୍ମଶାସ୍ତ୍ରରେ ଉତ୍କଳର ନାମ ଉଲ୍ଲେଖ ଅଛି, ଅନ୍ୟ କେତେଜଣ ମହାଜ୍ଞାନୀ ମାନବ ଧର୍ମଶାସ୍ତ୍ର ଛ ସହସ୍ର ବର୍ଷ ପୂର୍ବଲିଖିତ ବୋଲି ପ୍ରମାଣ କରାଇବା ନିମନ୍ତେ ନାନା ପ୍ରକାର ଯୁକ୍ତିର ଅବତାରଣା କରାଇ ଯାଇଛନ୍ତି । ମହାଭାରତ ଓ ଅନ୍ୟାନ୍ୟ ପୁରାଣ ଏବଂ ସ୍ମୃତିଶାସ୍ତ୍ରରେ ଉତ୍କଳର ନାମ ପୁନଃ ପୁନଃ ଉଲ୍ଲିଖିତ ଥିବାର ଦେଖାଯାଏ । ୨୫ ଶତ ବରଷ ପୂର୍ବେ ଯୁବକ ଶାକ୍ୟ ସିଂହ ଭାବି ଶ୍ୱଶୁରଙ୍କ ନିକଟରେ ଆତ୍ମ-ବିଦ୍ୟାର ପରିଚୟ ଦେବା ନିମନ୍ତେ ଯେଉଁ ୬୪ ପ୍ରକାର ଅକ୍ଷର ଲେଖିଥିଲେ, ସେଥିମଧ୍ୟରେ ଉତ୍କଳାକ୍ଷର ଅନ୍ୟତମ ଅଟେ । ୧୫ ବରଷ ପୂର୍ବରେ ଉତ୍କଳରେ ଲିଖିତ ପୂର୍ଣ୍ଣାଙ୍ଗ ଭାଷା ବିଦ୍ୟମାନ ଥିବାର ଦେଖାଯାଏ । ହାୟ ! ଆମ୍ଭେମାନେ କି ଦୁର୍ଭାଗ୍ୟ କି ଅଯତ୍ନଶୀଳ, ଏମନ୍ତ ପ୍ରାଚୀନ ଏମନ୍ତ ଅଙ୍ଗସୌଷ୍ଠବ ସମ୍ପନ୍ନା ଭାଷାପ୍ରାପ୍ତ ହୋଇ ମଧ୍ୟ ତାହାର ସଦ୍ବ୍ୟବହାରରେ ଉଦାସୀନ ହୋଇଅଛୁଁ । ଅଙ୍ଗ ପ୍ରସାଦନ ବିରହିତା ସ୍ୱଭାବ ସୁନ୍ଦରୀ ମଧ୍ୟ ସହଜ ଦୃଷ୍ଟିରେ ନିତାନ୍ତ କୁତ୍ସିତା ପରି ପ୍ରତୀୟ-ମାନ ହୁଏ । ମଧୁମକ୍ଷିକା ନାନା ପୁଷ୍ପରେ ବିଚରଣ କରି ଆପଣା ପାଇଁ ଏବଂ ଭାବୀ ପୁରୁଷମାନଙ୍କ ସକାଶ ମଧୁଚକ୍ର ଭଣ୍ଡାରରେ ମଧୁ ସଞ୍ଚୟ କରି ରଖେ । ଆମ୍ଭମାନଙ୍କ ସାକ୍ଷାତରେ ବର୍ତ୍ତମାନ ବିଷୟ ବହୁଳା ଅଙ୍ଗ ସୌଷ୍ଠବ ଗରିଷ୍ଠା ସୁପ୍ରସିଦ୍ଧ ଭାଷାମାନ ଏବଂ ଭାରତୀୟ ସମସ୍ତ ଭାଷାର ଜନନୀ ସ୍ୱରୂପା ସଂସ୍କୃତ ଭାଷା ବିଦ୍ୟମାନ । ଆମ୍ଭେମାନେ ସେଥିରୁ ସାରାଂଶମାନ ଗ୍ରହଣ କରି ମାତୃଭାଷାର ଉନ୍ନତି ବିଧାନ କରିବାକୁ ସହଜରେ କ୍ଷମ ହୋଇପାରୁଁ ।

ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ସକାଶେ କିଏ ଦାୟୀ ? ଦେଶର ପ୍ରତ୍ୟେକ ଲୋକ ଦାୟୀ ଅଟନ୍ତି । ପ୍ରତ୍ୟେକ ଲୋକ ଅର୍ଥ କ'ଣ ଦେଶର ପନ୍ଦର

ପଣ ଲୋକ ଅଶିକ୍ଷିତ, ସେମାନେ କିଛି ବୁଝନ୍ତି ନାହିଁ । ଆମ୍ଭମାନଙ୍କର ବୋଲିବାର ଉଦ୍ଦେଶ୍ୟ ପ୍ରତ୍ୟେକ ଶିକ୍ଷିତ ଲୋକ ଏଥିସକାଶେ ଦାୟୀ । ସେମାନେ ଆପଣା ଆପଣା କର୍ମରେ ଅବହେଳା କଲେ ନିଜ ଦେଶ ପ୍ରତି ଭବୀ ପୁରୁଷମାନଙ୍କ ପ୍ରତି ନୟନ ପ୍ରତିମା ରୂପା କନ୍ୟା ଭଗ୍ନୀମାନଙ୍କ ପ୍ରତି ଅତ୍ୟାଗ୍ରର କରିବାର ହୁଏ । କର୍ତ୍ତବ୍ୟରେ ଅବହେଳା ପ୍ରତ୍ୟବାୟର ହେତୁଭୂତ କି ନାହିଁ ଆପଣମାନେ ଟିକେ ବିଗ୍ଚର କରି ଦେଖନ୍ତୁ– ଆମ୍ଭମାନଙ୍କର ଏତିକି ମାତ୍ର ପ୍ରାର୍ଥନା ।

ଯେଉଁ ଲୋକେ ମାତୃଭାଷା ଚର୍ଚ୍ଚା ଏବଂ ଉନ୍ନତି ସାଧନରେ ବିମୁଖ, ତାହାଙ୍କ ମନରେ ସ୍ୱଦେଶପ୍ରୀତି ସ୍ୱଜାତି ପ୍ରୀତିର ବିରଳ ସଞ୍ଚାର ବୋଲି ନିଶ୍ଚୟ ରୂପେ ବୋଲଯାଇପାରେ । ସ୍ୱଦେଶ ସ୍ୱଜାତି ଅର୍ଥ ସ୍ୱଦେଶ ଭାଷା ଅର୍ଥାତ୍ ଭାଷାର ନାମାନୁସାରେ ଦେଶର ଏବଂ ଜାତିର ନାମକରଣ ହୋଇଥାଏ । କେଉଁଟା ବଙ୍ଗ-ଦେଶ–? ଅର୍ଥ ଯେଉଁ ଦେଶରେ ବଙ୍ଗ ଭାଷା ପ୍ରଚଳିତ । କିଏ ବଙ୍ଗାଳୀ ଜାତି– ଅର୍ଥ- ଯେଉଁମାନେ ବଙ୍ଗ ଭାଷାରେ କଥୋପକଥନ କରନ୍ତି । ଭାଷା ବା ଦେଶର ଉନ୍ନତିକାମୀମାନଙ୍କ ପକ୍ଷରେ ଉଭୟ ପ୍ରତି ପ୍ରୀତି ପ୍ରୟୋଜନୀୟ ।

ଉପସ୍ଥିତ ପ୍ରସଙ୍ଗରେ କିଞ୍ଚିତ୍ ଦୂରବର୍ତ୍ତୀ କଥା ହେଲେ ମଧ୍ୟ ମୁଁ ଗୋଟିଏ ବିଷୟ ଏଠାରେ ଉଲ୍ଲେଖ କରିବାକୁ ଇଚ୍ଛା କରେ । କେତେକ ବର୍ଷ ପୂର୍ବେ ବିଷୟ ବିଶେଷସମ୍ବନ୍ଧରେ ଉତ୍କଳୀ ଏବଂ ବଙ୍ଗାଳୀ ଜାତି ମଧ୍ୟରେ କିଞ୍ଚିତ୍ ମନୋମାଳିନ୍ୟର କାରଣ ଘଟିଥିଲା । କୌଣସି ଜଣେ ବଙ୍ଗବାସୀ ଉତ୍କଳ ନାମ ଉଲ୍ଲେଖ କରି ବିଦ୍ରୂପ ସୂଚକ କିଛି କଥା କହିବାରୁ ବାବୁ ମଧୁସୂଦନ ଦାସ ସ୍ୱାଭାବିକୀ ତେଜସ୍ୱିନୀ ଭାଷାରେ ଉତ୍ତର ଦେଲେ...ତୁମ୍ଭେ ମୋର ନିନ୍ଦାବାଦ କରି-ପାର ମୋତେ ଗାଳି ଦେଇପାର, ମାତ୍ର ମୋ ଦେଶର ନାମୋଲ୍ଲେଖ କରିବାର ତୁମ୍ଭର କିଛି ମାତ୍ର ଅଧିକାର ନାହିଁ । ଯାହାର ଏତେଦୂର ଦେଶପ୍ରୀତି ସେ ଦେଶ ପାଇଁ ସମସ୍ତ ଅର୍ଥ ସମସ୍ତ ସାମର୍ଥ୍ୟ ସହଜରେ ସମର୍ପଣ କରିପାରେ । କେବଳ କଥାରେ ନୁହେଁ, ମଧୁବାବୁ ଜୀବନରେ ସେଥିର ନିଦର୍ଶନ ଦେଖାଉଅଛନ୍ତି । ମୁଁ ଦିନକ ପାଇଁ ଏକଥା ଭୁଲି ନାହିଁ, କେତେ ପୁଣ୍ୟ ବଳରେ କେତେ ଯୁଗ ଯୁଗାନ୍ତ ଭିତରେ ଉତ୍କଳଭୂମି ଏମନ୍ତ ଗୋଟିଏ ସନ୍ତାନ ଲାଭ କରିଛନ୍ତି ! ମଧୁବାବୁ ଗୋଟିଏ ଶାପଭ୍ରଷ୍ଟ ଦେବତା ।

ମାନବ ମାତ୍ରର ସ୍ୱଭାବ ସିଦ୍ଧ ଧର୍ମଜନନୀ ବା ଜନ୍ମଭୂମିର ନିନ୍ଦାବାଦ

ଅସହିଷ୍ଣୁ—ହେଲେ ଯେଉଁମାନେ ସେମାନଙ୍କ ଅଭାବ ମୋଚନରେ ତତ୍ପର, ସେହିମାନେ କେବଳ ସୁସନ୍ତାନ ପଦବାଚ୍ୟ ।

ଜାତୀୟ ସାହିତ୍ୟ ଉନ୍ନତିକଳ୍ପେ ଶିକ୍ଷିତ ଲୋକମାନଙ୍କର ଚାରିଗୋଟି ଉପାୟ ଅବଲମ୍ବନ କରିବାର ଉଚିତ୍—

୧ । ଜାତୀୟ ସାହିତ୍ୟ ପାଠକର

୨ । ପାଠ କରାଅ

୩ । ଲେଖ

୪ । ଲେଖାଅ—

ମୋତେ ସଙ୍କୁଚିତ ଓ ଦୁଃଖିତ ଭାବରେ ବୋଲିବାକୁ ହେଉଛି ଆମ୍ଭମାନଙ୍କ ମଧ୍ୟରେ ଉଚ୍ଚଶିକ୍ଷିତ ଲୋକ ମଧ୍ୟରେ ମାତୃଭାଷାର ଗ୍ରନ୍ଥ କିଣି ପଢ଼ିବାର ରୁଚି ଜାତ ହୋଇ ନାହିଁ ଅଥବା ବଡ଼ ବଡ଼ ଆକାର ସୁନେଲି ବନ୍ଧାଇ ନାନା ଭାବପୂର୍ଣ୍ଣ ପୁସ୍ତକମାନ ସଚରାଚର ସେମାନଙ୍କ ହସ୍ତରେ ଥିବାରୁ ସାମାନ୍ୟ ବନ୍ଧାଇ ଚଟିବହି ପ୍ରତି ଅବଜ୍ଞା ଜାତ ହେବା ସ୍ୱାଭାବିକ । ହେଲେ ସେମାନଙ୍କର ବିଚାର କରିବାର ଉଚିତ ଅନ୍ୟର ସୌଭାଗ୍ୟବତୀ ମାତାକୁ ଭକ୍ତି ଓ ପୂଜା କରିବା ସମୟରେ ହେ ଦରିଦ୍ର ସନ୍ତାନ ! ସେହି ସମୟରେ ମାତାର ଅବସ୍ଥା ଉନ୍ନତି ସକାଶ ଯତ୍ନ କରିବାର ଅଥବା ଅବଜ୍ଞା ଭାବରେ ତାହାକୁ ତଡ଼ିଦେବାର ଉଚିତ, ଏହା ଆପଣମାନଙ୍କର ବିଚାର୍ଯ୍ୟ ବିଷୟ ଅଟେ । ଶ୍ରେଷ୍ଠ ଲୋକର କାର୍ଯ୍ୟକୁ ଇତର ସାଧାରଣେ ଅନୁକରଣ କରିଥା'ନ୍ତି । ଶିକ୍ଷିତ ସମାଜରେ ଯଦି ମାତୃଭାଷାର ଏପରି ଦୁର୍ଦ୍ଦଶା ହୁଏ, ଇତର ସାଧାରଣଠାରୁ ଅଧିକ କ'ଣ ପ୍ରତ୍ୟାଶା କରାଯାଇପାରେ । ଭାଷାଚର୍ଚ୍ଚା, ସମିତିରେ ଆପଣମାନେ ଉପେନ୍ଦ୍ର ଭଞ୍ଜ ବା ଜଗନ୍ନାଥ ଦାସ ନାମ ଶୁଣିଲେ ହାତ ତାଳି ଦେଇଥାଆନ୍ତି, ଅଥବା ବର୍ତ୍ତମାନ ଯୁଗର କବି ରାଧାନାଥର ନାମ ଆପଣମାନଙ୍କ-ଠାରେ କେତେ ଆଦର ସାମଗ୍ରୀ, ମାତ୍ର ଅନ୍ୱେଷଣ କରି ଦେଖନ୍ତୁ ତ ସେମାନଙ୍କ ରଚିତ ପୁସ୍ତକ ଆପଣମାନଙ୍କ ଘରେ କେତେଖଣ୍ଡ ଅଛି, ସାହିତ୍ୟ କଥା ଛାଡ଼ିଦିଅ ଧର୍ମ ଚର୍ଚ୍ଚା ଭାବରେ ଦେଖନ୍ତୁ ପ୍ରତ୍ୟେକ ଖ୍ରୀଷ୍ଟାନ ଘରେ ବାଇବେଲ ପୂଜିତ, ପ୍ରତ୍ୟେକ ମୁସଲମାନ ଘରେ କୋରାନ, ବର୍ତ୍ତମାନ ଉତ୍କଳର ଜାତୀୟ ଧର୍ମ ଗ୍ରନ୍ଥ ଜଗନ୍ନାଥ ଦାସ ଭାଗବତ ଆପଣମାନଙ୍କ ଘରୁ ବାହାରିବ ତ । କଟକ କଲେଜର ଭୂତପୂର୍ବ ପ୍ରିନ୍ସିପାଲ ସ୍ୱର୍ଗୀୟ ନୀଳକଣ୍ଠ ମଜୁମ୍‌ଦାରଙ୍କ ସହିତ ମୋହର ବିଶେଷ ସଦ୍ଭାବ ଥିବାରୁ ମୁଁ ସଚରାଚର ତାହାଙ୍କ ବସାକୁ ଯାଉଥିଲି, ଦେଖେଁ ତାହାଙ୍କ

ଘରେ ଗଚ୍ଛିକୃତ ବଙ୍ଗଳା ପୁସ୍ତକ ସଞ୍ଚିତ ନୂତନ ପୁସ୍ତକ ପ୍ରଚାରମାତ୍ର ସେ ଖଣ୍ଡେ ଖଣ୍ଡେ କିଣିଥାଆନ୍ତି । ମୁଁ ଦିନେ ପଚାରିଲି, ଆପଣଙ୍କୁ ତ କେବେ ବଙ୍ଗଳା ପୁସ୍ତକ ପଢିବାର ଦେଖାଯାଏ ନାହିଁ ? ତେବେ କି ସକାଶ କିଣିଥା'ନ୍ତି– ମୋ ପ୍ରଶ୍ନରେ ସେ ଠିକ୍ ଏହି ଉତ୍ତର ଦେଇଥିଲେ–

''ଆମାର୍ ମାତୃଭାଷାର ବଇ ଆମି ଯଦି ନା କିନି' ଅପରେ କେନ କିନିତେ ଯାବେ । ତାହାହଲେ ମାତୃଭାଷାର ଉନ୍ନତି ହୟନା । ଆପ୍‌ନାଦେର ଦେଶେର ଲୋକେରା ଏଖନ୍ ବୁଝେନା, ତାଇତେଇ ଉତ୍କଲ୍ ଭାଷାର ଏତ ଅବନତି ।''

ବାଲେଶ୍ୱରରେ ବର୍ତ୍ତମାନ ମୋହର ଦୁଇଜଣ ବଙ୍ଗାଳୀ ବନ୍ଧୁ ଅଛନ୍ତି । ଗଚ୍ଛିକୃତ ବଙ୍ଗଳା ପୁସ୍ତକ ସେମାନଙ୍କ ଘରେ ସଞ୍ଚିତ ଅଥଚ ପଢ଼ିବାର ସେମାନଙ୍କର ଅବକାଶ ନାହିଁ ।

ଭଦ୍ର ମହାଶୟଗଣ, ଅନୁଗ୍ରହ କରି ଆପଣମାନଙ୍କ ଆଲମାରି ପ୍ରତି ଦୃଷ୍ଟି-ପାତ କରନ୍ତୁ–କେତେ ମୂଲ୍ୟବାନ୍ ଇଂରେଜୀ ସଂସ୍କୃତ ପୁସ୍ତକ ସଞ୍ଚିତ ଅଛି, ଥିବାର ମଧ୍ୟ ନିତାନ୍ତ ଆବଶ୍ୟକ; ମାତ୍ର ସୌକିନ ଭାବରେ କେତେ ଖଣ୍ଡ ବଙ୍ଗଳା ପୁସ୍ତକ ମଧ୍ୟ କିଣି ରଖିଛନ୍ତି; ମାତ୍ର ଓଡ଼ିଆ ପୁସ୍ତକ କିଛି କିଣି ଅଛନ୍ତି ବି ? ଅନାବୃତ ବସ୍ତୁର ଉନ୍ନତି ସମ୍ଭାବନା ନିତାନ୍ତ ବିରଳ ।

ଉତ୍କଳ ପୁସ୍ତକ ପରି ଉତ୍କଳ ସାମୟିକ ପତ୍ରିକାମାନଙ୍କର ଦୁର୍ଦ୍ଦଶା ମଧ୍ୟ ତତୋଽଧିକ । ବଙ୍ଗଦେଶରେ ବର୍ତ୍ତମାନ ୧୦୬ ଖଣ୍ଡ ମାସିକ ପତ୍ରିକା ପୂର୍ଣ୍ଣ ଉତ୍ସାହ-ପୂର୍ଣ୍ଣ ବେଗରେ ଚଳୁଛି । ଉତ୍କଳର ଦୁର୍ଦ୍ଦଶା ଦେଖ । ମୁଁ ବାବୁ ବିଶ୍ୱନାଥ କର, ବାବୁ ବ୍ରଜସୁନ୍ଦର ଦାସ ମହାଶୟମାନଙ୍କୁ ଶତବାର ଧନ୍ୟବାଦ ପ୍ରଦାନ କରିଥାଏଁ ସେମାନେ ଜୀବନବ୍ରତପର ଉପଯୁକ୍ତ ଲାଭର ପ୍ରତ୍ୟାଶା ପରିତ୍ୟାଗ ପୂର୍ବକ ମନ ପ୍ରାଣ ସମର୍ପଣ କରି ନ ଥିଲେ ଉତ୍କଳରୁ ମାସିକ ପତ୍ରିକାର ନାମ ପର୍ଯ୍ୟନ୍ତ ବିଲୁପ୍ତ ହୋଇଥାଆନ୍ତା । ମୁଁ ଏଥିପୂର୍ବେ ଦୁଇଜଣ ଶିକ୍ଷିତ ପଦସ୍ଥ ଲୋକଙ୍କୁ ଉତ୍କଳ ସାହିତ୍ୟର ଗ୍ରାହକ ହେବା ସକାଶ ଅନୁରୋଧ କରିଥିଲି । ଜଣେ ଉତ୍ତର ଦେଲେ ଓଡ଼ିଆ କାଗଜରେ କ'ଣ ଅଛି ଯେ ଟଙ୍କା ଦେଇ କିଣିବୁଁ । ଅନ୍ୟ ଜଣେ ଉତ୍ତର ଦେଇ-ଥିଲେ ନିତାନ୍ତ ସ୍ୱଦେଶ ହିତୈଷିତା ଦେଖିବାକୁ ନ ଗଲେ କେହି ଓଡ଼ିଆ କାଗଜ କିଣେ ନାହିଁ । ସେମାନେ କେବେ ହେଲେ ସାହିତ୍ୟ ଓ ମୁକୁର ସ୍ପର୍ଶ କରିଥିଲେ ନିଶ୍ଚୟ ବୋଲନ୍ତେ ଏହି ଦୁଇଖଣ୍ଡ ବଙ୍ଗଳା ଅନେକ ଦ୍ୱିତୀୟ ଶ୍ରେଣୀ ପତ୍ରିକାଠାରୁ ନ୍ୟୁନ ନୁହନ୍ତି । ସାପ୍ତାହିକ ପତ୍ରିକାର ଆବସ୍ଥା ମଧ୍ୟ ତଦ୍ରୂପ । ଦୀପିକା ବଙ୍ଗ-

ଦେଶର ସୋମ ପ୍ରକାଶ ଓ ଏଡୁକେଶନ ଗେଜେଟର ସମସାମୟିକ । ଆମ୍ଭମାନଙ୍କ ପରି ୪୦ ବରଷ ପୂର୍ବେ ବଙ୍ଗୀୟ ଭ୍ରାତାମାନ ମାତୃଭଷା ପ୍ରତି ଉଦାସୀନ ଥିଲେ, ତେତେବେଳେ ସୋମ ପ୍ରକାଶ ଓ ଏଡୁକେଶନ ଗ୍ରାହକ ସଂଖ୍ୟା ଦୁଇ ହଜାରରୁ ବେଶୀ ନ ଥିଲ । ବଙ୍ଗଳାରେ ବର୍ତ୍ତମାନ ସାମୟିକ ପତ୍ରିକା ଅସଂଖ୍ୟା କେବଳ କଲିକତାରୁ ପ୍ରତି ସପ୍ତାହରେ ପ୍ରାୟ ୪ ଲକ୍ଷ ଖଣ୍ଡ ପତ୍ରିକା ବାହାରିଥାଏ । ବଙ୍ଗଳାରେ ଗୋଟିଏ କଥା ଅଛି— ସବେ ଧନ। ନୀଳମଣି । ଉକ୍ଳ ଦୀପିକା ଅବସ୍ଥାରୁ ଆପଣା ଜାତୀୟ ମର୍ଯ୍ୟାଦା ବୁଝନ୍ତୁ । ଅଥଚ ମୁଁ ଜାଣେ, ଉକ୍ଳ ଦୀପିକାର ଦୁଇଗୁଣ ବଙ୍ଗଳା ପତ୍ରିକା ଉକ୍ଳକୁ ଆସିଥାଏ । ଧନ ଯନ୍ତ୍ର ପରିଶ୍ରମ ବ୍ୟୟ ବିନା ଜଗତରେ କୌଣସି କାର୍ଯ୍ୟ ସାଧିତ ହୋଇନାହିଁ । ମହୋଦୟଗଣ, ଆପଣମାନେ ଦୁର୍ଦ୍ଦଶାଗ୍ରସ୍ତ ଉତ୍କଳ ଭଷା ଆଲୋଚନା ନିମନ୍ତେ ଆପଣା ଆପଣାର ଅମୂଲ୍ୟ ସମୟ ବ୍ୟୟ କରନ୍ତୁ, ଏପରି ଅନୁରୋଧ କରିବାକୁ ମୋହର ସାହସ ଅଣ୍ଟୁନାହିଁ, ମାତ୍ର ଜାତୀୟ ମର୍ଯ୍ୟାଦା ବର୍ଦ୍ଧନ ମାତୃଭଷାର ଲେଖକମାନଙ୍କୁ ଉତ୍ସାହ ଦାନ ସକାସ ମାସିକ କିଛି କିଛି ଅର୍ଥ ବ୍ୟୟ ସ୍ୱୀକାର କରି ପତ୍ରିକା ଓ ପୁସ୍ତକ ଅନାୟାସରେ କ୍ରୟ କରିପାରନ୍ତି । ଦେଖିବେ ଅତଃପର କେତେ ଲେଖକ ବାହାରି ପଡ଼ିବେ । ଇଂରେଜୀରେ ଗୋଟିଏ ଢଗ ଅଛି whether (where) there is a want there is a supply. ଗୁଲିଆଗଞ୍ଜଠାରେ ପୂର୍ବେ ପଇସାକର ମୁଡ଼ି କିଣିବାକୁ ମିଳୁ ନ ଥିଲ, ବର୍ତ୍ତମାନ ଅନେକ ମିଷ୍ଟାନ ଦୋକାନ, ଯେହେତୁ ସେଠାରେ ବର୍ତ୍ତମାନ ଗ୍ରାହକର ଭିଡ଼ ଲଗିଛି । ମୁଁ ଜାଣେ ବର୍ତ୍ତମାନ ବଙ୍ଗ-ବାସୀମାନେ କନ୍ୟା ଓ ଭଗୀମାନଙ୍କ ସକାଶ ଗୋଟିଏ ଖରଚର ଦଫା ନିର୍ଣ୍ଣୟ କରିଅଛନ୍ତି ।

ମହୋଦୟଗଣ, ଆମ୍ଭମାନଙ୍କ ଗୃହଲକ୍ଷ୍ମୀ ରୂପା କନ୍ୟା ଭଗ୍ନୀମାନେ ଅବସର କାଳରେ ଯେପରି ବୃଥା ଗଳ୍ପ ଅସାର ଚିନ୍ତା ବା ଆଳସ୍ୟରେ ସମୟ ନଷ୍ଟ ନ କରନ୍ତି, ସେଥିପାଇଁ ସେମାନଙ୍କ ସମ୍ମୁଖରେ ପୁସ୍ତକ ଓ ପତ୍ରିକା ସଂଗ୍ରହ କରି ରଖନ୍ତୁ । ଇଂଲଣ୍ଡ ଓ ଆମେରିକାବାସୀ ଅତି ନିମ୍ନଶ୍ରେଣୀ ଲୋକ ମଧ୍ୟ ଘର ଖର୍ଚ୍ଚ ତେଲଲୁଣ ପରି ପ୍ରତିଦିନ ପତ୍ରିକା ଓ ପୁସ୍ତକ କିଣିବା ନିମନ୍ତେ କିଛି କିଛି ଅର୍ଥ ବ୍ୟୟ କରିଥାନ୍ତି । ଏଥିପାଇଁ ସେମାନଙ୍କର ଜଗତ୍‌ବ୍ୟାପୀ ଆଧିପତ୍ୟ ଏବଂ ସମାଦର ।

ସଂପ୍ରତି ଉତ୍କଳରେ ଅନେକ ପ୍ରତିଭଶାଳୀ ଶିକ୍ଷିତ ଲୋକ । ବର୍ତ୍ତମାନ ଛାତ୍ର

କଲେ ସେମାନେ ସୁନ୍ଦର ସୁନ୍ଦର ଗ୍ରନ୍ଥ ଲେଖିପାରିବେ । ଶିକ୍ଷିତ ଲୋକେ ଅଭ୍ୟାସ କଲେ ସହଜରେ ସୁଲେଖକ ହୋଇପାରିବେ । ଅସଂଖ୍ୟ କ୍ଷୁଦ୍ର ଉଇ କଣିକା କଣିକା ମାଟି ପକାଇ ଉଚ୍ଚ ଟିକର (ହୁଙ୍କା) ନିର୍ମାଣ କରନ୍ତି । ସମବେତ ଜନରେ କି କାର୍ଯ୍ୟ ସାଧିତ ହୋଇ ନ ପାରେ । ସତ୍ୟ କଥା, ବର୍ତ୍ତମାନ ଉତ୍କଳର ଲେଖକମାନେ ନିତାନ୍ତ ଦରିଦ୍ର, ସେମାନଙ୍କର ଅନେକ ଲେଖା ଅର୍ଥାଭାବରୁ ପଡ଼ି-ରହିଅଛି । ଦୁଃଖର କଥା, ଉତ୍କଳରେ ନିତାନ୍ତ ଅଭାବ ଅତି ସୁନ୍ଦର ଲିଖିତ ଅତି ଉପଯୁକ୍ତ ଖଣ୍ଡିଏ ଅଭିଧାନ ଅର୍ଥାଭାବରୁ ପଣ୍ଡିତ ଗୋପୀନାଥ ନନ୍ଦ ପ୍ରକାଶ କରିବାକୁ ଏ ପର୍ଯ୍ୟନ୍ତ ସମର୍ଥ ହେଲେ ନାହିଁ । ଏହି ସମସ୍ତ ଦୃଷ୍ଟାନ୍ତ ଦୃଷ୍ଟିରେ ଅନେକ ସୁଲେଖକ ହାତ ଗୋଟାଇ ବସିଲେଣି । ନୂଆ ବା କିଏ ଲେଖିବ । ମାତ୍ର ତୁମ୍ଭେ ଦୋକାନି ଗହକି ଦୁଇ ହୁଅ, ହାଟରେ ଭିଡ଼ ଭାଙ୍ଗି ହେବ ନାହିଁ ।

ବୌଦ୍ଧଧର୍ମ ବିଷୟ ଆଲୋଚନା ଏହି ସଭାର ଅନ୍ୟତମ ଉଦ୍ଦେଶ୍ୟ ଅଟେ । ଚିରନ୍ତନ ପ୍ରଥାନୁସାରେ ସଭାପତିକୁ କିଛି ବୋଲିବାକୁ ହୁଏ । ଏଥିପାଇଁ ସେ ସମ୍ବନ୍ଧେ ବୌଦ୍ଧନୀତି ଆଲୋଚନା ଅଦ୍ୟକାର ସଭାର ଉଦ୍ଦେଶ୍ୟ । ଏଥି ସମ୍ବନ୍ଧେ ଗୋଟିଏ ଛାତ୍ର ପ୍ରବନ୍ଧ ପାଠ କରିଛନ୍ତି, ଆଉ ଅଧିକ କିଛି ବୋଲିବାର ପ୍ରୟୋଜନ ନାହିଁ । ଚିରନ୍ତନ ପ୍ରଥା ଅନୁସାରେ ସଂକ୍ଷେପରେ କେତୋଟି କଥା ବୋଲି କାର୍ଯ୍ୟ ଶେଷ କରିବାକୁ ଇଚ୍ଛା କରେ ।

ଆଜକୁ ୪୦ ବର୍ଷ ପୂର୍ବେ ଜଣେ ବହୁଦର୍ଶୀ ୧୧ଟା ଭାଷାରେ ସୁପଣ୍ଡିତ ଇଂରେଜ ଯେ କି ନିଜେ ଖ୍ରୀଷ୍ଟାନ ଅଟନ୍ତି, ମୋତେ କେତେ ଥର କହିଥିଲେ ବୌଦ୍ଧଧର୍ମ ପୃଥିବୀର ଶ୍ରେଷ୍ଠତମ ଧର୍ମ । ପ୍ରକୃତ ଧର୍ମନୀତି ଶିକ୍ଷା କରିବାକୁ ହେଲେ ବୌଦ୍ଧ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିବା ଉଚିତ୍ ।

ଉକ୍ତ ମହାତ୍ମାଙ୍କ ମୁଖରୁ ଏହି କଥା ଶୁଣି ମୁଁ ବୌଦ୍ଧଧର୍ମ ନୀତି ଜାଣିବାକୁ ଇଚ୍ଛା କରେ । ଉଦ୍ଦେଶ୍ୟ ସାଧନ ନିମନ୍ତେ ପାଲି ଭାଷାରେ ଲିଖିତ ଲଳିତ ବିସ୍ତର ଯାକେ ଏବଂ ଅନ୍ୟାନ୍ୟ ଗ୍ରନ୍ଥ ଅଧ୍ୟୟନ ଆରମ୍ଭ କରିଥିଲି । ଉପଯୁକ୍ତ ଶିକ୍ଷକ ଅଭାବରୁ ଯଦିଚ ଉକ୍ତ ଗ୍ରନ୍ଥମାନ ଭଲ ରୂପେ ଆୟତ୍ତ କରିବାକୁ ସକ୍ଷମ ହୋଇନାହିଁ; ମାତ୍ର ଯେତେ ଦୂର ପଢ଼ିଲି, ସେଥିରୁ ଏତିକି ମାତ୍ର ଉପଦେଶ ପ୍ରାପ୍ତ ହୋଇଅଛି, ବୌଦ୍ଧ ଧର୍ମ ବିଜ୍ଞାନମୟ ଦର୍ଶନଶାସ୍ତ୍ର ଉପରେ ପ୍ରତିଷ୍ଠିତ । ଧର୍ମର ପ୍ରଧାନ ଅଙ୍ଗ ଉଦାରତା, ଦୟା, ପରୋପକାରିତା, ମୈତ୍ରୀ, ପ୍ରାଣୀ ହିତୈଷଣା ପ୍ରଭୃତି ଗୁଣ-ମାନଙ୍କର ଉଚ୍ଚଶିକ୍ଷା ବୌଦ୍ଧ ଦର୍ଶନ ଶାସ୍ତ୍ର ପ୍ରଦାନ କରେ । ସେହି ଧର୍ମର ଏପରି

ଗୋଟାଏ ମହୀୟସୀ ଶକ୍ତି ନ ଥିଲେ ସାମାନ୍ୟ ଭିକ୍ଷୁମାନଙ୍କ ଦ୍ୱାରା ଏହି ଧର୍ମ ଜଗତ୍ ବ୍ୟାପ୍ତ ହେବାକୁ ସକ୍ଷମ ହୋଇ ନ ଥାଆନ୍ତା । ସମସ୍ତ ଏସିୟା ୟୁରୋପ ଆଫ୍ରିକାରେ ଏହି ଧର୍ମ ବ୍ୟାପ୍ତ ହୋଇଥିଲା ଏବଂ କଲମ୍ବସ ଆବିର୍ଭାବର ସହସ୍ରାଧିକ ବରଷ ପୂର୍ବେ ବୌଦ୍ଧଭିକ୍ଷୁମାନେ କାମ ସ୍କଟ୍‌କା ବାଟରେ ଆମେରିକା ଯାଇଥିବାର ପ୍ରମାଣ ବିଦ୍ୟମାନ ରହିଅଛି । ବର୍ତ୍ତମାନ ଅବସାଦ ସମୟରେ ମଧ୍ୟ ପୃଥିବୀର ଲୋକ ସମଷ୍ଟିର ଏକ ତୃତୀୟାଂଶ ବୌଦ୍ଧଧର୍ମାବଲମ୍ବୀ । ଏକଥା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ, ବର୍ତ୍ତମାନ ପ୍ରଚଳିତ ପୃଥିବୀର ସମସ୍ତ ପ୍ରଧାନ ଧର୍ମ ମଧ୍ୟରେ ବୌଦ୍ଧ ଧର୍ମ ଅଗ୍ରଜ ।

ଭଗବାନ ବାସୁଦେବ ଅର୍ଜୁନଙ୍କୁ ବୋଲିଥିଲେ

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ,
ଅଭ୍ୟୁଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"

ପୃଥିବୀର ଧର୍ମ ଇତିହାସ ପାଠ କଲେ ସୁସ୍ପଷ୍ଟ ଜଣାଯାଏ, ଭଗବାନ ବାସୁଦେବଙ୍କ ଶ୍ରୀମୁଖ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ । ପୃଥିବୀର ଆଦି ଧର୍ମ ସନାତନ ଧର୍ମ । ବୈଦିକ ଧର୍ମରେ ଗ୍ଲାନି ଉପସ୍ଥିତ ହେବା ସମୟରେ ଭଗବାନ ଶାକ୍ୟ ସିଂହଙ୍କର ଆବିର୍ଭାବ । ଉତ୍କଳ ବିରାଜିତ ଜଗନ୍ନାଥଦେବ ବୌଦ୍ଧାବତାର ନାମରେ କଥିତ । ବୌଦ୍ଧଧର୍ମର ପ୍ରବଳ ଶତ୍ରୁ ବ୍ରାହ୍ମଣମାନେ ମଧ୍ୟ ବୁଦ୍ଧଦେବଙ୍କୁ ଈଶ୍ୱରାବତାର ବୋଲି ଅସ୍ୱୀକାର କରିବାକୁ ଅକ୍ଷମ, ଅଧିକନ୍ତୁ ବୋଲନ୍ତି ଜଗତର ରାକ୍ଷସମାନଙ୍କ ଅର୍ଥାତ୍ ବୌଦ୍ଧଧର୍ମାବଲମ୍ବୀମାନଙ୍କ ବିନାଶ ନିମନ୍ତେ କପଟରେ ସେମାନଙ୍କ ମଧ୍ୟରେ ଭଗବାନ ବୁଦ୍ଧ ରୂପେ ଅବତୀର୍ଣ୍ଣ ହୋଇଥିଲେହେଁ ବ୍ରାହ୍ମଣଗଣ ତୁମ୍ଭମାନଙ୍କର ବିଶ୍ୱ ସଂସାରର ଉପାସ୍ୟ ଦେବତା ଈଶ୍ୱରଙ୍କ ପ୍ରତି କପଟତା ଦୋଷ ଆରୋପ କରି ଯେ କି ମହାପାପ ଅର୍ଜନ କରିଛ, ସେ କଥା ବେଳେ ଚିନ୍ତା କରି ଦେଖ । ଯେଉଁ ମହାପ୍ରାଣ ସାମାନ୍ୟ ପଶୁପକ୍ଷୀର ମଧ୍ୟ କଷ୍ଟ ଅସହିଷ୍ଣୁ, ସେ କୋଟି କୋଟି ଲୋକ ବିନାଶ ନିମନ୍ତେ କପଟତା ଅବଲମ୍ବନ କରିବେ, ଆପଣମାନଙ୍କ ବିନା ନିତାନ୍ତ ବିଦ୍ୱେଷ ଗ୍ରସିତ ହୋଇ ଆଉ କିଏ ଏ କଥା କହି ଘୋର ମହାପାପ ଅର୍ଜନ କରିବାକୁ ସାହାସୀ ହେବ ।

ଭାରତର ପରମ ସୌଭାଗ୍ୟ ଭଗବାନ୍ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । ମହା ଦୁର୍ଭାଗ୍ୟ— ଭାରତରୁ ବୌଦ୍ଧଧର୍ମର ଉଚ୍ଛେଦନ । କି ରାଜନୀତି କି ଧର୍ମନୀତି କି ଭାଷା ବିସ୍ତାର ସମସ୍ତ ବିଷୟର ଉନ୍ନତିର ପରାକାଷ୍ଠା କେବଳ ବୌଦ୍ଧଧର୍ମ

ପ୍ରଭାବରୁ ଭାରତ ଲାଭ କରିଥିଲା । ଭାରତର ଏକଚ୍ଛତ୍ରନ୍ ଅଶୋକ, ବିନ୍ଦୁସାର, ଚନ୍ଦ୍ରଗୁପ୍ତ, ଶିଳାଦିତ୍ୟ ବା ହର୍ଷବର୍ଦ୍ଧନ ପ୍ରଭୃତି ଅସଂଖ୍ୟ ସାର୍ବଭୌମ ସମ୍ରାଟ-ମାନଙ୍କର ଆବିର୍ଭାବ ବୌଦ୍ଧଯୁଗରେ ହୋଇଥିଲା । ବୌଦ୍ଧଧର୍ମର ବିନାଶ ସଙ୍ଗେ ଭାରତର ଏକତା ଏବଂ ସ୍ୱାଧୀନତା ଛିନ୍ନଭିନ୍ନ ଓ ଅନ୍ୟର କରଗତ । ଭାରତର ପ୍ରାଦେଶିକ ଭାଷାମାନ ବୌଦ୍ଧ ପ୍ରଭାବରେ ଉନ୍ନତିଲାଭ କରେ; ପ୍ରକୃତ ମାନବ ହିତୈଷିଣୀ ବୌଦ୍ଧଧର୍ମ ଭାରତକୁ ଅଥବା ପୃଥିବୀକୁ ଶିକ୍ଷା ଦେଇଅଛି । ପୀଡ଼ିତ-ମାନଙ୍କ ନିମନ୍ତେ ଜଗଦ୍‌ବ୍ୟାପୀ ଔଷଧାଳୟ ବିସ୍ତାର, ସର୍ବସାଧାରଣରେ ଶିକ୍ଷାଦାନ, ଧର୍ମପ୍ରଚାର, ପାନ୍ଥନିବାସ ସ୍ଥାପନ ପ୍ରଭୃତି ସୁମହତ୍ କାର୍ଯ୍ୟର ବୌଦ୍ଧଯୁଗରେ ଜଗତରେ ପ୍ରଥମ ସୂତ୍ରପାତ । ବୌଦ୍ଧଯୁଗରେ ପ୍ରଥମେ ଭାରତର ବିଶ୍ୱବିଦ୍ୟାଳୟ ସ୍ଥାପିତ । ବିହାର ନାଳନ୍ଦାରେ ଚାରି ସହସ୍ର ଶିଷ୍ୟ ଛାତ୍ରାବାସରେ ରହି ଅଧ୍ୟୟନ କରୁଥିଲେ । ବୌଦ୍ଧଭିକ୍ଷୁମାନେ ତତ୍‌କାଳିକ ନିବିଡ଼ ଅରଣ୍ୟ ଓ ହିଂସ୍ରଜନ୍ତୁ ପୂର୍ଣ୍ଣ ସମସ୍ତ ଏସିଆ, ୟୁରୋପ, ଆଫ୍ରିକା ମଧ୍ୟରେ ଭ୍ରମଣ କରି ପଶୁବତ୍ ଅସଭ୍ୟ ଲୋକମାନଙ୍କୁ ଯେ ଭାବରେ ଧର୍ମ ଓ ବିଦ୍ୟା ଶିକ୍ଷାଦାନ ଓ ପୀଡ଼ିତ ଲୋକର ସେବା ଶୁଶ୍ରୂଷା କରୁଥିଲେ, ତାହା ଚିନ୍ତା କଲେ ମନ ସ୍ତମ୍ଭିତ ହୋଇପଡ଼େ । ଉତ୍ତାଳ ସମୁଦ୍ର ଲହରୀ ଲଙ୍ଘନ ପୂର୍ବକ କେବଳ ଜଣେ ଭିକ୍ଷୁ ଡଙ୍ଗା ଖଣ୍ଡିକରେ ଚଢ଼ି ଜାପାନ ଯାଇଥିଲେ, ସେହି ଏକମାତ୍ର ଭିକ୍ଷୁକ ଜାପାନ ରାଜ୍ୟର ଧର୍ମ ପ୍ରତିଷ୍ଠାତା ଅଟନ୍ତି । ବର୍ତ୍ତମାନ ବୌଦ୍ଧଧର୍ମର ଅବସାଦ ସମୟରେ ମଧ୍ୟ ପୃଥିବୀର ଲୋକ ସମଷ୍ଟିର ଏକତୃତୀୟାଂଶ ଲୋକ ଉକ୍ତ ଧର୍ମାବଲମ୍ବୀ ଅଟନ୍ତି । ହିନ୍ଦୁମାନଙ୍କ ଯୋଗେ କେତେ ଲକ୍ଷ ନିରୀହ ବୌଦ୍ଧ ଭିକ୍ଷୁକର ମସ୍ତକ ଚୂର୍ଣ୍ଣ ହୋଇଅଛି । ତହିଁରୁ ବଳି ଭାରତର ଗୁରୁତର କ୍ଷତି ବୌଦ୍ଧଧର୍ମ ଗ୍ରନ୍ଥମାନ ବିନାଶପ୍ରାପ୍ତ । ଗ୍ରନ୍ଥ ବିନାଶ ସମୟରେ କୌଣସି ସଦାଶୟ ବ୍ରାହ୍ମଣଙ୍କ ଯୋଗେ ଅମରସିଂହକୃତ ଅଭିଧାନ ରକ୍ଷା ପାଇଥିବାର କଥିତ ହୁଏ । ସଂସ୍କୃତରେ ଶବ୍ଦାବଳୀର ନାମ ଲିଙ୍ଗାନୁଶାସନ ନିର୍ଣ୍ଣୟ କରିବା ଅତି ଦୁରୂହ ବିଷୟ । କେବଳ ଅମରକୋଷରେ ସୁଗମ ଶିକ୍ଷା ପ୍ରଣାଳୀ ବିଦ୍ୟମାନ । ଅମରକୋଷ ସଂସ୍କୃତ ଭାଷାରେ ଅମୂଲ୍ୟ ନିଧି । ତାହା ଜଣେ ବୌଦ୍ଧଧର୍ମାବଲମ୍ବୀଙ୍କ ରଚିତ । ବଙ୍ଗ ବିଜେତା ନିରକ୍ଷର ବକ୍ତିୟାର ଖିଲଜୀ ବିହାରସ୍ଥ ନାଳନ୍ଦା ଅଧିକାର ପୂର୍ବକ ପୁସ୍ତକାଳୟ ପ୍ରତି ଦୃଷ୍ଟିପାତ କରି ପଚାରିଲେ, ଏ ସମସ୍ତ କୋରାଣ କି ନାହିଁ ? କୋରାଣ ନ ଥିବାର ଶୁଣି ସମସ୍ତ ପୁସ୍ତକ ବିନାଶ କରିବା ନିମନ୍ତେ ଆଦେଶ କରିବାରୁ ତାହାଙ୍କ ସମଭିବ୍ୟାହାରୀ ବହୁ-

ସଂଖ୍ୟକ ସେନା ସେହି ସମସ୍ତ ପୁସ୍ତକ ଦଗ୍ଧ କରି ଏକମାସ ପର୍ଯ୍ୟନ୍ତ ରୁଟି ସେକି-ଥିଲେ । ବର୍ତ୍ତମାନ ସୁସଭ୍ୟ ଇଂରେଜମାନେ ବହୁ ଯତ୍ନ ଆୟାସ ସ୍ୱୀକାର ପୂର୍ବକ ଦୁଷ୍ପ୍ରାପ୍ୟ ବୌଦ୍ଧଦର୍ଶନମାନ ସଂଗ୍ରହରେ ଯତ୍ନଶୀଳ ହୋଇଛନ୍ତି । ସଭ୍ୟ ମହୋଦୟ-ଗଣ, ଗୁଣଗ୍ରାହିତା ସମ୍ବନ୍ଧେ ହିନ୍ଦୁ ମୁସଲମାନ ଇଂରେଜ ମଧ୍ୟରେ ପ୍ରାର୍ଥକ୍ୟ ବୁଝନ୍ତୁ । ଭରତରୁ ବୌଦ୍ଧଧର୍ମ ବିତାଡ଼ନ ମହା ଦୁର୍ଭାଗ୍ୟର ବିଷୟ । ଗୋଟିଏ ଅନ୍ୟତମ କାରଣ ଏହି କି ମୁସଲମାନମାନେ ଯେମନ୍ତ ତୁରଷ୍କ, ଆରବ, ପାରସ୍ୟ ନାମ ଉଚ୍ଚାରଣ କରି ଆତ୍ମଗୌରବ ପ୍ରକାଶ କରିଥାନ୍ତି, ତଦ୍ରୂପ ଆମ୍ଭେମାନେ ଚୀନ, ଜାପାନ, ବର୍ମା ପ୍ରଭୃତିଙ୍କୁ ଧର୍ମବନ୍ଧୁ ଜ୍ଞାନ କରି କେତେ ଆତ୍ମପ୍ରସାଦ ଅନୁଭବ କରୁଥାନ୍ତୁ ।

କଥିତ ହୁଏ ଭଗବାନ୍ ଶାକ୍ୟ ସିଂହଙ୍କ ଜୀବନ କାଳରେ ଉତ୍କଳରେ ବୌଦ୍ଧ-ଧର୍ମ ପ୍ରଚାରିତ ହୁଏ, ସାତ ଶତ ବରଷ ପର୍ଯ୍ୟନ୍ତ ଅପ୍ରତିହତ ଭବରେ ଆଧିପତ୍ୟ ବିସ୍ତାର କରିଥିଲା । ତଦନନ୍ତର ଭାରତର ଅନ୍ୟାନ୍ୟ ଦେଶ ପରି କ୍ରମଶଃ ବିତାଡ଼ିତ ହୁଏ । ଖ୍ରୀଷ୍ଟୀୟ ଆଠଶତ ବରଷରେ ଉତ୍କଳରେ ଅର୍ଦ୍ଧେକ ହିନ୍ଦୁ ଅର୍ଦ୍ଧେକ ବୌଦ୍ଧ ଧର୍ମାବଲମ୍ବୀ ବିଦ୍ୟମାନ ଥିବାର ଚୀନ ପରିବ୍ରାଜକ ୟୁୟନଚୟାଂ (ହୁଏନସାଂ) ଦେଖିଛନ୍ତି ।

ଉତ୍କଳରେ ବୌଦ୍ଧମାନଙ୍କର ପ୍ରଧାନ ପୀଠସ୍ଥାନ ଖଣ୍ଡଗିରି, ଜୈନମାନଙ୍କର ଉଦୟଗିରି, ସୌରମାନଙ୍କର କୋଣାର୍କ, ଶୈବମାନଙ୍କର ଭୁବନେଶ୍ୱର, ଶାକ୍ତ-ମାନଙ୍କର ବିରଜା ଓ ବୈଷ୍ଣବମାନଙ୍କର ପୁରୀକ୍ଷେତ୍ର ଅଟେ । ସଭ୍ୟ ମହୋଦୟଗଣ, ବିଚାର କରି ଦେଖନ୍ତୁ, ଭରତ ପ୍ରଚଳିତ ସମସ୍ତ ପ୍ରଧାନ ଧର୍ମର ସମବେତ ଏତେ ସର୍ବପ୍ରଧାନ ପୀଠସ୍ଥାନ ଭରତରେ ଅଥବା ସମସ୍ତ ପୃଥିବୀ ମଧ୍ୟରେ ଅନ୍ୟ କୌଣସି ଦେଶ ଅଛି କି ନାହିଁ । ସମସ୍ତ ଶ୍ରେଣୀର ଧର୍ମ ପ୍ରଚାରକମାନେ, ଧର୍ମାଚାର୍ଯ୍ୟମାନେ ଉତ୍କଳରେ ଏମନ୍ତ କିଛି ମାହାତ୍ମ୍ୟ ମହିମା ଅନୁଭବ କରିଥିଲେ । ଯହିଁରେ କି ସେମାନେ ଏକସଙ୍ଗରେ ବସି ପରାମର୍ଶ କଲା ପରି ଏ ସ୍ଥାନରେ ଶ୍ରେଷ୍ଠ ପୀଠସ୍ଥାନ ସ୍ଥାପନ କରିଯାଇଛନ୍ତି । ଚୈତନ୍ୟଦେବଙ୍କ ଜୀବନର ସାର୍ଦ୍ଧଶ୍ରେଷ୍ଠ ଅଂଶ ଉତ୍କଳରେ ଅତିବାହିତ । ଉତ୍କଳଭୂମି ପୁଣ୍ୟମୟ । ଏହାର ପ୍ରତ୍ୟେକ ରେଣୁ ପୁଣ୍ୟ ପ୍ଳାବିତ । ଭରତର ସମସ୍ତ ଦିଗ ସୀମାନ୍ତଠାରୁ ଲକ୍ଷ ଲକ୍ଷ ଲୋକ ଆସି ଉତ୍କଳର ରେଣୁ ସ୍ପର୍ଶ କରି ଆପଣା ଆପଣା ଜୀବନକୁ ଧନ୍ୟ ଜ୍ଞାନ କରୁଛନ୍ତି । ମହାରଷ୍ଟ୍ରପତି ଶିବାଜୀ ଦିନେ ଭୁବନେଶ୍ୱରଠାରେ ଠିଆହୋଇ କହିଥିଲେ, ଉତ୍କଳ ଦେବନିବାସ ସ୍ଥାନ,

ମାନବ ଏଥିରେ ବାସ କରିବାର ଯୋଗ୍ୟ ନୁହେଁ ।

ମହୋଦୟଗଣ !

ଆପଣମାନଙ୍କୁ ଅନେକ କଷ୍ଟ ଦେଲିଣି– ଆଉ ସମୟ ନାହିଁ, କେବଳ ମୋ ମନର କେତୋଟି କଥା ପୁନରାବୃତ୍ତି କରି ନିବୃତ୍ତ ହେବି ।

ମହୋଦୟଗଣ, ଏହି ପ୍ରାଚୀନ ପୂଣ୍ୟମୟ– ନୈସର୍ଗିକ ଶୋଭାସମ୍ପଦ-ଭଣ୍ଡାରପୂର୍ଣ୍ଣ ଦେଶରେ ବାସ କରି ମଧ୍ୟ ଆମ୍ଭେମାନେ ସଭ୍ୟ ସମାଜରେ କିପରି ଭାବରେ ପରିଚିତ ହେଉଅଛୁଁ– ଆପଣମାନଙ୍କ ପୂର୍ବ ପୁରୁଷମାନଙ୍କର ବୀରତ୍, ଶିଳ୍ପକୌଶଳ, ବୁଦ୍ଧିମତ୍ତା, ଧୀରତା ଧର୍ମାନୁଷ୍ଠାନ ବିଷୟ ବେଳେ ବେଳେ ମନ ମଧ୍ୟରେ ଚିନ୍ତା କରନ୍ତୁ, ଏହି ବିଂଶ ଶତାବ୍ଦୀ ଜ୍ଞାନ ବିଜ୍ଞାନ ବାହୁଲ୍ୟ ପ୍ରଖର ସମୟରେ ଆମ୍ଭେମାନେ କେତେଦୂର ପଛରେ ପଡ଼ିଛୁଁ, ଏହା ମଧ୍ୟ ଚିନ୍ତାର ବିଷୟ ଅଟେ । ଆଉ କଥାରେ ହେବ ନାହିଁ, ଆସନ୍ତୁ କାର୍ଯ୍ୟରେ ନିଯୁକ୍ତ ହେଉଁ ; ମିଷ୍ଟର ଦାସେ ଆମ୍ଭମାନଙ୍କୁ କାତର ଭାବରେ କେତେଥର କହିଛନ୍ତି ଦିନମାନ ୨୪ ଘଣ୍ଟା ମଧ୍ୟରେ ଅନ୍ତତଃ ୫ ମିନିଟ୍ ସକାଶେ ହେଲେ ସ୍ୱଦେଶ କଥା ଚିନ୍ତା କର, କେବଳ ଚିନ୍ତା ନୁହେଁ, ସ୍ୱଦେଶ, ସ୍ୱଜାତି ଓ ମାତୃଭାଷା ସକାଶେ କାର୍ଯ୍ୟ କରିବାକୁ ହେବ, ତ୍ୟାଗ ସ୍ୱୀକାର କରିବାକୁ ହେବ । ଅର୍ଥ ବିନା କିଛି କାର୍ଯ୍ୟ ସିଦ୍ଧି ହୁଏନାହିଁ ।

ମାତୃଭାଷା ଉନ୍ନତି ସକାଶେ ଅନ୍ତତଃ ଦିନକର ଆୟ ଦାନ କରିବା ପ୍ରସ୍ତାବ ହୋଇଥିଲା, ଆସନ୍ତୁ ଆଜିଠାରୁ ସେ ପ୍ରସ୍ତାବ କାର୍ଯ୍ୟରେ ପରିଣତ କରାଇବାକୁ ଚେଷ୍ଟା କରିବା । ଶିକ୍ଷିତ ଯୁବକ ଦଳ ସ୍ୱଦେଶର ଆଶାଭରସାର ସ୍ଥଳ । ମୋହର ବିଶେଷ ପ୍ରାର୍ଥନାପୂର୍ଣ୍ଣ ଆଶା, ଆଜଦିନ ଏହି ଶୁଭ ମୁହୂର୍ତ୍ତଠାରୁ ସେମାନେ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେବେ । *



* ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ଫକୀରମୋହନଙ୍କ ପ୍ରଦତ୍ତ ସଭାପତି ଅଭିଭାଷଣ । ପ୍ରଥମେ 'ମୁକୁର'ର ୭ମ ଭାଗ ସଂଖ୍ୟା (୧୯୧୨ରେ ପ୍ରକାଶିତ ଏବଂ ପରେ 'ଝଙ୍କାର' ର ୪୪ଶ ବର୍ଷ ୧୦ମ ସଂଖ୍ୟାରେ ପୁନଃ ପ୍ରକାଶିତ । ଋଣ ସ୍ୱୀକାର ପୂର୍ବକ 'ଝଙ୍କାର'ରୁ ଗୃହୀତ ।

# ସେନାପତିଙ୍କ ଶୈଳୀ

ବସନ୍ତ କୁମାର ଶତପଥୀ

ଏଇମାତ୍ର ଆଉଥରେ ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠ ପଢ଼ି ଶେଷ କଲି । ଏଥରକୁ ମିଶାଇ ଗତ ତିରିଶ ବର୍ଷରେ ସୁଖଦୁଃଖରେ ହୁଏତ ଉପନ୍ୟାସଟିକୁ ଶହେଆଠ ଥର ପଢ଼ିଥିବି । ପ୍ରତିଥର ନୂଆ ନୂଆ ଲଗେ; ନୂଆ ନୂଆ ଚିଜର ସୂଚନା ଓ ସନ୍ଧାନ ମିଳେ । ମୋଟ କଥାରେ ଏ ବହିଟି ବାରମ୍ବାର ପଢ଼ାସହେ । ଉପନ୍ୟାସଟିକୁ ଏକା ନିଶ୍ୱାସରେ ପଢ଼ିବା ବହି । ହେଲେ ଗଡ଼େଇ ଯିବା ବା ପୃଷ୍ଠା ଓଲଟାଇ ଯିବା ବହି ନୁହେଁ; ପଢ଼ି ହଜମ କରିବା କିସମର ବହି ନ ହେଲେ ମଧ୍ୟ ପଢ଼ି ଗ୍ରେବାଇବା ବହି । ଦୁର୍ଭାଗ୍ୟ ଯେ ଏ ଶ୍ରେଣୀର ବହି ଆମ ସାହିତ୍ୟରେ କମ୍ । ଆଜିକାଲି ଲେଖକମାନେ ପ୍ରତିଯୋଗିତା କରି ସ୍ଥୂଳରୁ ସ୍ଥୂଳତର ଯେଉଁ ଉପନ୍ୟାସ ମାନ ଲେଖୁଚନ୍ତି ସେଥିରୁ ପୁରା ପୁରା ପରିଛେଦ, ଥାକ ଥାକ ପୃଷ୍ଠା ଓଲଟାଇ ଦେଲେ ବି ବହିଟିର କିଛି ହାନି ହେବ ନାହିଁ । ଏହା କହିବାର ଅର୍ଥ ଯେତେ ମନଧ୍ୟାନ ଦେଇ ବହି ଲେଖାଯିବା ଉଚିତ୍ ତାହା ନାନା କାରଣରୁ ସମ୍ଭବ ହେଉନାହିଁ । ଲେଖକଙ୍କ ସ୍ୱକୀୟତା ତି ବୈଚିତ୍ର୍ୟର ଅଭାବ ସର୍ବତ୍ର ଅନୁଭୂତ ହେଉଅଛି । ତେଣୁ ଥରେ ପଢ଼ି ସାରିଲେ ପୁନର୍ବାର ପଢ଼ିବା ପାଇଁ ବହିରେ କିଛି ମାଲ ମସଲ ନ ଥାଏ ।

ଫକୀରମୋହନଙ୍କ ଏ ବହିଟି ତାଙ୍କ ରଚନାବଳୀ ଓ ଓଡ଼ିଆ ସାହିତ୍ୟର ଏ ଶ୍ରେଣୀର ବହି ଭିତରେ ଏତେ ଆଦୃତ ଓ ଜନପ୍ରିୟ କାହିଁକି ? ଅନ୍ତତଃ ମୋର ଏ ବହିଟି ପ୍ରତି ପକ୍ଷପାତିତା କାହିଁକି ? ଭିକ୍ଟୋରିଆ ଯୁଗର ପ୍ରାୟଶଃ ଆଦି ଉପନ୍ୟାସର ଆକର୍ଷଣ କେଉଁଠି ? ପ୍ରେମ କହିଲେ ଯାହା ବୁଝାଏ ତାହାର ବିଲକ୍ଷଣ ଅଭାବ ଏ ବହିରେ । ବିଷୟବସ୍ତୁରେ ନୂତନତା ଆଉ ନାହିଁ । ବାରମ୍ବାର ପଢ଼ି ଶୁଣି ଘଟଣା ପୁରୁଣା ପୋଚଗ ହୋଇ ଯାଇଛି । କଥା ଓ କାହାଣୀ ସହଜ, ସରଳ ଓ ସାମାନ୍ୟ, ବୌଦ୍ଧିକ ଗୁରୁତ୍ୱ ବା ମନସ୍ତାତ୍ତ୍ୱିକ ବିଶ୍ଳେଷଣ ବହିରେ ନାହିଁ କହିଲେ ଚଳେ । କିଏ କହେ ଏହା ବଙ୍କିମଚନ୍ଦ୍ରଙ୍କର ବିଷବୃକ୍ଷର ଅନୁକରଣ । ଆଉ କିଏ କୁହେ ଏହା 'ଗୋଦାନ' ପରି ନୁହେଁ । ବିଶ୍ୱସାହିତ୍ୟ ସ୍ତରକୁ ଏହା ଉଠି ପାରିନାହିଁ । ତଥାପି କାହିଁକି କହିବାକୁ ଇଚ୍ଛା ହୁଏ ଓଡ଼ିଆ ସାହିତ୍ୟରେ ଏ ବହିଟିର ସ୍ୱତନ୍ତ୍ର ସ୍ଥାନ ଅଛି ଏବଂ ଏହା ଏକ ନମ୍ବର ବହିର ଅନ୍ତର୍ଗତ ବୋଲି ।

ବିନଥିଲି ଯେବେ ବହିଟିରେ ଘଟଣାର ଉପସ୍ଥାପନା ଉନ୍ମୋଚନ ବିଶ୍ଳେଷଣ ଓ ପରିଣତି ଚମତ୍କାରିତା ସୃଷ୍ଟି କରୁଥିଲା ଏବଂ ସାଧାରଣ ପାଠକ ପରି ମୁଁ ମଧ୍ୟ ମୁଗ୍ଧ ହେଉଥିଲି । ତାହାପରେ ଧର୍ମାତ୍ମା ଓ ନୀତିବାଦୀଙ୍କ ସହ ମିଶି ବହିଟିରେ ଧର୍ମର ଜୟ ଓ ପାପର କ୍ଷୟ 'ଅଧର୍ମ ବିତ୍ତ ବଢ଼େ ବହୁତ' ଆଦି ହିତୋପଦେଶର ଉଦାହରଣ ପାଉଥିଲି । (ଯେବିଓ ଏବେ ଜାଣୁଛି ସିଆଣିଆ ଓ ହୁଣ୍ଡାଙ୍କ ସମାନ ପରିଣତି ଏବଂ ଅତ୍ୟାଗ୍ରରୀ ମଙ୍ଗରାଜ, ସତୀସାଧ୍ୱୀ ସାଆନ୍ତାଣୀ, ପାପିନୀଚମ୍ପା ଓ ନିଷ୍ପାପ ଭଗିଆ ସାରିଆ ସମସ୍ତେ କାବ୍ୟିକ ନ୍ୟାୟ ବିଗ୍ରହର ଊର୍ଦ୍ଧ୍ୱରେ ଥାଇ ଅପମୃତ୍ୟୁ ବା ଅକାଳମୃତ୍ୟୁ ବରଣ କରିଛନ୍ତି ।) କେତେବେଳେ ପୁଣି ପ୍ରଗତିବାଦୀ ସାଜି ବହିଟିରେ ଧନୀନିର୍ଦ୍ଧନ ଶ୍ରେଣୀ ସଂଘର୍ଷ ପଢ଼ି ପୁଞ୍ଜିବାଦୀର ବିଲୟ କଳ୍ପନା କରୁଥିଲି ଏବଂ ସେନାପତିଙ୍କୁ କାର୍ଲମାର୍କସ୍‌ଙ୍କ ଅଗ୍ରଜ ଭାବୁଥିଲି । କେତେବେଳେ ଅବା ସମାଜ ସଂସ୍କାର ମନୋବୃତ୍ତି ନେଇ ଉପନ୍ୟାସରୁ ସମସାମୟିକ ସମାଜ ଚିତ୍ର ଖୋଜୁଥିଲି । ଆଉ କେତେବେଳେ ନିଛକ କଳାପ୍ରେମୀ ହୋଇ ଚରିତ୍ର ଚିତ୍ରଣର ବାହାଦୁରୀ ଓ ହାସ୍ୟରସର ତାରିଫ କରୁଥିଲି । ଫକୀରମୋହନ ଅବଶ୍ୟ ଏସବୁ ପ୍ରଶଂସାର ଅଧିକାରୀ ଏବଂ ତାଙ୍କ ଗଳ୍ପ ଉପନ୍ୟାସରେ ଆଦର୍ଶବାଦ, ନୀତିବାଦିତା ଜାତୀୟତା ସଂସ୍କାରପ୍ରୟାସ ଓ କଳାପ୍ରୀତିର ନିଦର୍ଶନ ଭରପୂର । ହେଲେ ଏସବୁ ଥାଇ ମଧ୍ୟ ଔପନ୍ୟାସିକ କାଳଜୟୀ ହୋଇ ନ ପାରନ୍ତି । ଫକୀରମୋହନଙ୍କ ରଚନା କାଳୋର୍ତ୍ତୀର୍ଣ୍ଣ ହୋଇ ପାରିଛି । ତାଙ୍କର ଅନନୁକରଣୀୟ ଶୈଳୀ ବଳରେ ଯେମିତି କୌଣସି ଏକ ପଚନ ନିବାରକ ପୁଟ ଦ୍ୱାରା ଇଜିପ୍‌ଟର ଲୋକେ ହଜାର ହଜାର ବର୍ଷ ଧରି ଶବକୁ ସରସ ଜୀବନ୍ତ କରି ରଖିପାରୁଥିଲେ, ଯେମିତି ବୈଜ୍ଞାନିକ ପ୍ରକ୍ରିୟା ଓ ଔଷଧପାତି ଦ୍ୱାରା ନାନା ଜାତିର ପଦାର୍ଥକୁ ଆଜିକାଲି ବହୁକାଳ ସଂରକ୍ଷଣ କରି ହେଉଛି ।

ଉପନ୍ୟାସଟି ଯେମିତି ପରିଣତ ବୟସରେ ଲେଖା, ତାର ଶୈଳୀ ବି ସେମିତି ପରିପକ୍ୱତାର ସ୍ୱାକ୍ଷର ବହନ କରେ । ପଞ୍ଚାବନ ବର୍ଷ ବୟଃକ୍ରମ ବେଳକୁ ଫକୀରମୋହନ ଅସାଧାରଣ ଅନୁଭୂତି, ଅଭିଜ୍ଞତା ଓ ଜୀବନ ଦର୍ଶନରେ ନିଜକୁ ଗଢ଼ି ସାରିଥାନ୍ତି । ଜୀବନର ମଧୁର ତଥା କଟୁତିକ୍ତକଷାୟ ଅମୃତ ଓ ହଳାହଳ ସେବନ କରି ଏବଂ ନାନା ଝଡ଼ଝଞ୍ଜା ଓ ଆପଦ ବିପଦ ଦେଇ ଗତି କରି ମନୁଷ୍ୟ ଜାତି ପ୍ରତି ଅନୁକମ୍ପା ଓ ସହାନୁଭୂତିରେ ନିଜ ହୃଦୟକୁ ଆର୍ଦ୍ର ରଖିଥାନ୍ତି । ନାନା ସ୍ଥାନ ଭ୍ରମଣ କରି ବିଭିନ୍ନ ଦେଶର ଲୋକଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ଗୁଡ଼ାଏ

ଛବି ମନ ଭିତରେ ରଖିଥାନ୍ତି । ତତ୍ ସହିତ ନାନା ଗ୍ରନ୍ଥ ଅଧ୍ୟୟନ କରି ଏବଂ ଅନୁବାଦ କରି ସେ ସଂସ୍କୃତ, ବଂଗଳା, ଇଂରଜୀ, ହିନ୍ଦୀ ଓ ଯାବନିକ ଭାଷାର ଶବ୍ଦାବଳୀ ଆୟତ୍ତ କରିଥାନ୍ତି ଏବଂ ଆହରଣ ଓ ସମନ୍ୱୟ କରିବା ମନୋବୃତ୍ତି ନେଇ ସେହି ସେହି ଭାଷାର ଶବ୍ଦମାଳାକୁ ଖାଣ୍ଟି କଞ୍ଚା ଓଡ଼ିଆ ସହିତ ସମ୍ମିଶ୍ରିତ କରି ଏପରି ଏକ ଭାବବାହକ ମାଧ୍ୟମ ସୃଷ୍ଟି କଲେ ଯାହା ତାଙ୍କ ସାହିତ୍ୟିକ କୃତିକୁ ଅମରତ୍ୱ ଦେଇଥିଲା । ଏକ ନୂତନ ଦିଗ୍‌ଦର୍ଶନ ଦୃଷ୍ଟିଭଙ୍ଗୀ ନେଇ ଯେଉଁ ଭାଷା ଓ ଶୈଳୀ ସୃଷ୍ଟି କଲେ ତାହାହିଁ ତାଙ୍କର ନିଜସ୍ୱ । ସେହି ଉପନ୍ୟାସ କଳା ଓ ଶୈଳୀ ବୈଚିତ୍ର୍ୟହିଁ ପାଠକକୁ ମନ୍ତ୍ର ମୁଗ୍ଧ କରେ ଏବଂ ଘଟଣା, ଦୃଶ୍ୟ ଓ ଚରିତ୍ରାବଳିଙ୍କୁ ନାହିଁ ନଥିବା ରୂପରେ ପ୍ରକଟିତ କରାଏ । ଏଠାରେ ନାହାନ୍ତି ବଙ୍କିମ, ନାହାନ୍ତି ଡ଼ିକେନ୍‌ସ । କଳ୍ପନାର ରଙ୍ଗ ଓ ଶୈଳୀର ତୂଳୀରେ ସମାଜର ଦୈନନ୍ଦିନ ଘଟଣାବଳିକୁ ସାମାନ୍ୟତମ ସ୍ପର୍ଶ ଦ୍ୱାରା ସେ ଜୀବନ୍ତ ଓ ଭାସ୍ୱର ଏପରିକି ଅଲୌକିକ କରିଦେଇଛନ୍ତି । ପ୍ରତ୍ୟେକ ଶବ୍ଦ, ବାକ୍ୟ ଓ ପରିଚ୍ଛେଦ ପରୀକ୍ଷା ନିରୀକ୍ଷା ପରେ ବ୍ୟବହୃତ ହୋଇଥିବାରୁ (ବହୁ ପାଠକ ଏକତ୍ର ହୋଇ ପାଟି କରି ପଢ଼ିଲେ ଫକୀରମୋହନଙ୍କ ଲେଖାରୁ ବହୁତ ରସ ମିଳେ) ଘଟଣା, ବର୍ଣ୍ଣନା, ବା ଚରିତ୍ର ଗଢି ମୂଳ ଡ଼ିଜାଇନ ସହିତ ଖାପ ଖାଇ ଏପରି ଏକ କଳା ସୌଧ ଗଢ଼ି ଦେଇ-ଥିଲେ ଯାହାର ସାମଗ୍ରିକ ସୌନ୍ଦର୍ଯ୍ୟ ଓ ଅଂଶ ବିଶେଷର ଚମତ୍କାରିତା ଯୁଗପତ୍ ଉପଲବ୍ଧି କରିହୁଏ । ହାସ୍ୟ, କରୁଣ, ବକ୍ରୋକ୍ତି, ବ୍ୟଙ୍ଗ, ବିଦ୍ରୂପ, ଇଙ୍ଗିତ, ସୂଚନା, ବ୍ୟଞ୍ଜନା ଆଦି ନାନା ରସ ଓ ଅଳଙ୍କାରରେ ରସାଣିତ ଓ ବିମଣ୍ଡିତ ଶୈଳୀର ଯାଦୁସ୍ପର୍ଶରେ ଅସଂଲଗ୍ନତା ଓ ଅବାନ୍ତରତା ମଧ୍ୟ ଏକାନ୍ତ ଅପରିହାର୍ଯ୍ୟ ଅଙ୍ଗ ହୋଇ ସ୍ଥାନ ଦଖଲ କରି ବସନ୍ତି । ସେ ସ୍ୱର୍ଣ୍ଣସ୍ପର୍ଶରେ ହେୟ ତୁଚ୍ଛ ପଦାର୍ଥ ମଧ୍ୟ ସୁବର୍ଣ୍ଣ ପାଲଟିଛି । ଇଂରଜୀରେ Style is the man କଥାଟି ଅକ୍ଷରେ ଅକ୍ଷରେ ଫକୀରମୋହନଙ୍କ ପ୍ରତି ପ୍ରଯୁଜ୍ୟ । ଏଇ ଶୈଳୀରେ ହିଁ ତାଙ୍କର ପ୍ରତିଭା ଓ ସ୍ୱାତନ୍ତ୍ର୍ୟ ପର୍ଯ୍ୟବେସିତ । ଏଇ ଶୈଳୀ ତାଙ୍କ ଉପନ୍ୟାସକୁ ଚିର ସଂରକ୍ଷିତ ଆଦରଣୀୟ କରିଛି । ବାରମ୍ବାର ପାଠରେ ତାହା ଉଜ୍ଜ୍ୱଳତର ସ୍ପଷ୍ଟତର ହୁଏ ସିନା ବିମଳିନ ଆଦୌ ହୁଏ ନାହିଁ ।

ଯାଦୁକର କାଉଁରୀ କାଠି ବଳରେ ଅଦ୍ଭୁତ କ୍ରିୟାକାଣ୍ଡ ଭିଆଇଲା ପରି କିମ୍ବା ବ୍ୟଙ୍ଗ ଚିତ୍ରକର ଏଠି ସେଠି ତୂଳୀ ଗାଳି ଚିତ୍ର ଓ ଚେହେରାରେ ରୂପାନ୍ତର ଆଣି ଦେଲା ପରି ଫକୀରମୋହନ ସାମାନ୍ୟତମ ସ୍ପର୍ଶରେ କିପରି ବିଚିତ୍ର

ଛବି ସୃଷ୍ଟି କରି ପାରୁଥିଲେ ତାର କେତୋଟି ଉଦାହରଣ ନିମ୍ନରେ ଦିଆ-ଯାଉଛି ।

ମଙ୍ଗରାଜ ଚରିତ୍ର ଅନୁଧ୍ୟାନ କରନ୍ତୁ । ସେ ହେଉଛନ୍ତି ଉପନ୍ୟାସର ନାୟକ । ତାଙ୍କ ରୂପ ବା ଚେହେରାର ବର୍ଣ୍ଣନା କାହିଁ ନାହିଁ । କେବଳ "ପରିଧାନ ଖଣ୍ଡ ଏ ତେଲ ଚିକିଟା ମଫ ଲୁଗା, ଅଣ୍ଟାରେ ଗେରୁ ରଙ୍ଗିଆ ଗାମୁଛା ଭିଡା, କାନ୍ଧରେ ବିରାଟ ତାଳପତ୍ର ଛତା ।" କୃପଣତା, ଭଣ୍ଡାମି, ବକଧାର୍ମିକତା, ଓ ଏକାଙ୍ଗ ଚକ୍ରବର୍ତ୍ତୀତାର ସମସ୍ତ ସୂଚନା ଓ ସଙ୍କେତ ଏତିକିରେ ଏବଂ ସମଗ୍ର ଉପନ୍ୟାସରେ ଆମେ ତାଙ୍କୁ ଏଇ ତିନି ରୂପରେ ଦେଖିବୁଁ । ମଙ୍ଗରାଜଙ୍କ ଗଳା-ସ୍ୱରର ଧାରଣା ଦେବା ପାଇଁ କହିଛନ୍ତି, ଯେପରି କଲିକତା ସହରର ପ୍ରାତଃକାଳ ତୋପ ଘଡ଼ି ଶେଷଜ୍ଞାପକ ସେହିପରି ମଙ୍ଗରାଜଙ୍କ ଡ଼ାକ । ହାୟ କି ବିଡ଼ମ୍ବନା ! ଉପସଂହାରରେ ଏଇ ତୋପ ଧ୍ୱନିର କି କରୁଣ ପରିଣତି "ସ୍ୱର କ୍ଷୀଣ, କ୍ରମଶଃ କ୍ଷୀଣତର ।"

ଚମ୍ପା ଉପନାୟିକା; ସାମାନ୍ୟ ଚାକରାଣୀ, ଅଜ୍ଞାତ କୁଳଶୀଳା, କିନ୍ତୁ ତା' ପାଇଁ ଗୋଟିଏ ବିରାଟ ପରିଚ୍ଛେଦ । କେତେ ଶ୍ଳୋକସ୍ତୁତି, ଗୀତ ସଂକୀର୍ତ୍ତନ, ଶାସ୍ତ୍ର ପୁରାଣର ଅବଲମ୍ବନ ତାର ରୂପ ବର୍ଣ୍ଣନା ପାଇଁ ! କେତେ ଉପମା ତାର ରୂପ, ଅଙ୍ଗଭଙ୍ଗୀ ଓ ଚାଲିଚଳନ ପାଇଁ । ଶେଷକୁ ପୁଣି "ଅତଃପରଂ ବର୍ଣ୍ଣ୍ୟତେ ବିବିଧ ପ୍ରବନ୍ଧେ" ଯାହାକୁ କହନ୍ତି ମକ୍ ହିରୋଇକ୍ ।

ଅଥଚ ଉପନ୍ୟାସର ନାୟିକାଙ୍କୁ କେବଳ ପ୍ରତୀକ ଚରିତ୍ର କରଯାଇ ରୂପ ବର୍ଣ୍ଣନା ବାଦ୍ ଦିଆଯାଇଛି । ତାଙ୍କର ନାଆଁ ବି ନାହିଁ । ସେ ସାଆନ୍ତଙ୍କ good angel; ସାକ୍ଷାତ ଦେବୀ ପ୍ରତିମା । ସେଥିପାଇଁ ତାଙ୍କୁ ବୃନ୍ଦାବତୀଙ୍କ ପାଖରେ ରଖାଯାଇଛି; ସେଇ ବୃନ୍ଦାବତୀଙ୍କ ପାଖରେ ତାଙ୍କର ଅନ୍ତିମ ଶଯ୍ୟା । ସେ ହଉଡ଼ା ମାଆ "ଶାଳଗ୍ରାମର ଶୋଇବା ବସିବା ପରି ତାଙ୍କର ହସକାନ୍ଦ କେହି ଜାଣି ପାରିବେ ନାହିଁ ।" ଶାଳଗ୍ରାମ ଓ ବୃନ୍ଦାବତୀଙ୍କ ସହିତ ତାଙ୍କୁ ଯୋଡ଼ି ତାଙ୍କୁ ଦେବ-ଲୋକର ମଣିଷ କରିଛନ୍ତି ଲେଖକ । ସେ ରକ୍ତ ମାଂସର ନୁହନ୍ତି, ମୂର୍ତ୍ତିମନ୍ତ ପୁଣ୍ୟ, କେବଳ ଏକ ଗୁଣ, ଆଇଡ଼ିଆ । ତାଙ୍କ ମୁହଁରେ ପଦେ ମାତ୍ର କଥା ଦିଆଯାଇଛି, "ମୁଁ କହୁଛି ରାତି ହେଲାଣି, ଶୋଇପଡ଼, ଆଉ ସେ କଥାଗୁଡ଼ାକ ପାଞ୍ଚନାହିଁ ।" ନିୟତି ଦେବୀଙ୍କ ବାଣୀପରି କଥାଗୁଡ଼ାକ । ସଆନ୍ତାଣୀଙ୍କ ଆଦର୍ଶ ଗୃହିଣୀତ୍ୱ ତଥା ନାରୀତ୍ୱ ଏତିକିରେ ସ୍ପଷ୍ଟ ।

ସାଙ୍ଗକୁ ଦୁଇଟି ଗୌଣ ପୁରୁଷ ଚରିତ୍ର ନିଅନ୍ତୁ । ଦୁହିଁଙ୍କ ଆବିର୍ଭାବ ବହିର ଶେଷ ଦୁଇ ପରିଛେଦରେ । ବିଗ୍ରହି ବସିଲେ ଦୁହିଁଙ୍କ ଉପନ୍ୟାସରେ ସ୍ଥାନ ନାହିଁ । ବାବାଜି ଲଳିତା ଦାସଙ୍କ କାର୍ଟୁନ ଛବିଟି ଏହିପରି । "ବୟସ ଅଧୋଡ଼ା, ବର୍ଣ୍ଣ ଶ୍ୟାମଳ, ଦେହଟି ଥାକୁଲଥୁକୁଲ, ମୁଣ୍ଡଟି ଲଣ୍ଡା, ମଝିରେ ଟଗୁଭୁଜ ଡ଼େମ୍ପ ପରି ଚୁଟୁକି; ବେକରେ ମୋଟାମୋଟା ତୁଳସୀ କଣ୍ଠି ପାଞ୍ଚ ଫେର ବସିଛି । ନାସାର୍ଦ୍ଧରୁ କେଶ ପର୍ଯ୍ୟନ୍ତ ଚିତା ଆଉ ଡେଡ଼୍ ଲେଟର ଅଫିସରୁ ବେରିଂ ଚିଠି ବାହୁଡ଼ିଲା ପରି ସର୍ବାଙ୍ଗରେ ଛପା.........।" "ବାବାଜିଟି ଘରି ନିର୍ଲୋଭ, କେହି କିଛି ହେଲେ "ହରେ କେଷ୍ଟ ହରେ କେଷ୍ଟ" କହନ୍ତି ।" କେଉଁ ଦେଶର ଲୋକ ଜାଣିବାକୁ କଷ୍ଟ ହେବ-ନାହିଁ 'ହରେକେଷ୍ଟ'ରୁ । ମରୁଆ ଯାଙ୍କରିଠୁ ଭେକ ନେବ !! ଶେଷ ପରିଛେଦରେ ଆମେ ଯେତେବେଳେ ମଙ୍ଗରାଜଙ୍କ ଦଶା ଜାଣିବାକୁ ବ୍ୟାକୁଳ ଓ ମଙ୍ଗରାଜଙ୍କ ଶେଷ ନିଶ୍ୱାସ ବାହାରି ଯିବା ଉପରେ ସେତିକିବେଳେ "ବାଙ୍କ ମୁଣ୍ଡ ମୂଳିଆ ବାଉଁଶ ବାଡ଼ି ଧରି" ଗୋପୀ କବିରାଜ ହାଜର । କି ବିଚିତ୍ର ରୋଗ ନିର୍ଣ୍ଣୟ ଓ ରୋଗର ନିଦାନ ! "କଣ୍ଠାଶ୍ଳେଷ...ଦୂରସଂସ୍ଥେ" "ମୁସ୍ତକୀ...ଗଡ଼ି" ବିବିଧାନ୍ ଗୁଣାନ୍' ଆଦି ଶ୍ଳୋକର ବ୍ୟାଖ୍ୟା କରି ଗୋପି ବୁଝାଇ ଦେଲା, ରୋଗୀର କଣ୍ଠରେ ଶ୍ଳେଷ୍ମା, ଦୂରକୁ ଗଲିଗଲେ ମୁସ୍କିଲ, ଗଡ଼ରେ ଶୁଣ୍ଠି ପିପ୍ପଳୀ ବଚ ମୁଥମାରି କୁଟିବ, ଅନୁପାନ ଅଧିକ କରିଦେଲେ ବିଧା ମାଇଲା ପରି ଗୁଣ କରିବ । ଚରିତ୍ର ଚିତ୍ରଣର କଳା କୁଶଳତାରେ ଆମେ ଏତେ ମୁଗ୍ଧ ହୋଇ ଯାଉଁ ଯେ ଗଳ୍ପର ଗତି ବ୍ୟାହତ ହେଲେ ହେଁ ଆମେ ଧୈର୍ଯ୍ୟ ଧରି ରହୁଁ ଏବଂ ଉତ୍କଣ୍ଠାକୁ ସାମୟିକ ବିଶ୍ରାମ ଦେଉଁ ।

କେବଳ ଚରିତ୍ର ଚିତ୍ରଣରେ ନୁହେଁ; ସର୍ବତ୍ର ସେନାପତିଙ୍କ ଲକ୍ଷ୍ୟ ପାଠକର ମନକୁ ନାନା ଉପାୟରେ ବାନ୍ଧି ରଖିବା, ଯିମିତି ସେ ବ୍ୟଗ୍ର ବା ଅସହିଷ୍ଣୁ ହେବ ନାହିଁ ବା ପ୍ରଶ୍ନ ପଚାରିବାକୁ ଅବସର ପାଇବ ନାହିଁ । ଅବାସ୍ତବ ବାସ୍ତବ ରୂପେ ଆଉ ଯିମିତି ତାକୁ ସାଧାରଣ ଅସାଧାରଣ ରୂପେ ପ୍ରତୀୟମାନ ହେବ ଏବଂ ତଥାପି ସେଗୁଡ଼ାକ ସେ ଅବିଶ୍ୱାସ କରି ପାରୁନଥିବ ।

ଚମତ୍କାର ବର୍ଣ୍ଣନା ଫକୀରମୋହନଙ୍କ ଶୈଳୀର ବିଶେଷ ଅଙ୍ଗ Fine sensibility ଏବଂ eyes to see and ears to hear ଥିବାରୁ ସେ ମୁହୂର୍ତ୍ତକେ ଦୃଶ୍ୟର ଅସଲ ଅଂଶକୁ ଧରି ପାରୁଥିଲେ ଏବଂ ଗୋଟିଏ ଦୁଇଟା ସ୍ପର୍ଶରେ ଦୃଶ୍ୟଟିଏ ଆଙ୍କି ଦେଉଥିଲେ ଏବଂ ରହୁଁ ରହୁଁ ଦୃଶ୍ୟଟି ଜୀବନ୍ତ ଓ

ସୁସ୍ପଷ୍ଟ ହୋଇ ଉଠୁଥିଲ "କେହି ପିଣ୍ଡାରେ ବସି ବାଟଣା ବାଟୁଛି, କେହି ଗୁହାଳ କଢ଼ାରେ ଲଗିଛି, କେହି କେହି ଝାମ୍ପଟିଏ ମୁଣ୍ଡେଇ ହାତରେ ଦଉଡ଼ି ଖଣ୍ଡେ ଦା ଟାଏ ଧରି କାହାଳିଟାଏ ଓଟାରି ଓଟାରି ବାହୁଙ୍ଗିଟାଏ କାନ୍ଧରେ ପକାଇ ଘାସ କାଟିବାକୁ ବାହାରିଅଛି ।, କେହି ଭଡ଼ିରେ ଚଢ଼ି କଖାରୁଡଙ୍କ ସଳଖି ଦେଉଛି"– ଏ ହେଲ ତନ୍ତୀ ସାହିର ସକାଳ । "ଗୋଟିଏ ଶେଯ ପିଲ କୁଆଁ କୁଁଆ କରି କାନ୍ଦୁଥିଲ..." ଏ ହେଲ ତେଲି ସାହିର ମଝି ରାତି । ଆଉ ଗଛ ଆଉ, ଅଶ୍ୱତ୍ଥ ପତ୍ର ଗୋଟିଏ ମଧ୍ୟ ଖସ୍ କରିବାକୁ ନାହିଁ...ଗାଆଁର ବୁଲକୁତୀ କାଙ୍କାଟିଙ୍କକୀ କୁତିଟା ପୋଖରୀ ପଙ୍କରେ ପଡ଼ି ଲଟପଟ ହେଉଅଛି, ଆଉ ଡ଼େମ୍ପେଂ ଜିଭଟା କାଢ଼ି ପକାଇ ଧକାଉଅଛି, ପାଣିକି ଯାଉନାହିଁ ।" ରତନ ମୌଜାର ଜ୍ୟେଷ୍ଠ ମାସିଆ ଦି'ପ୍ରହର । ବାସଙ୍ଗ ଛଡ଼ି ଧରି (ଘୋଡ଼ାକୁ) ବାଡ଼େଇଅଛି ଏବଂ ପାଟିରେ ଟାକର ଫୁଟାଉଛି । ଘୋଡ଼ାଟି ମିଠା କଦମ୍ ଗ୍ଭଲିଅଛି ।"–ଗୋବିନ୍ଦପୁରର ବେଳର ନିରବତା ଏଇ ଅସାଧାରଣ ଶବ୍ଦ ଦ୍ୱାରା ଭଙ୍ଗ ହେଉଛି । ଓଡ଼ିଆ ସାହିତ୍ୟରେ ଆଦର୍ଶ ବର୍ଣ୍ଣନା ଯଦି କେହି ପଢ଼ିବାକୁ ଗ୍ଭହେଁ ତେବେ ସେ ଉପନ୍ୟାସ ବର୍ଣ୍ଣିତ ମଙ୍ଗରାଜଙ୍କ ପାଠ, ଅସୁରଦୀଘି, ଘରପୋଡ଼ି, ଗୋପିସାଉର ଦୋକାନ ଘର ତନ୍ତି ସାଇ, ଦିଲଦାର ମିଆଁଙ୍କ ମଜଲିସ ପଢ଼ୁ; ବାସ୍ତବ ଚିତ୍ର ପାଇଁ କ୍ଲାସିକ ନଥଙ୍କ ଅ ମୃତ୍ୟୁଜୀବନ ଚରିତରେ ।

ତୁଳନା, ଉପମା ସୃଷ୍ଟି ସେନାପତିଙ୍କ ଶୈଳୀର ବୈଶିଷ୍ଟ୍ୟପ୍ରଧାନ ଅଙ୍ଗ । ସେ ଗୁଡ଼ିକ ଏତେ ସଂକେତପୂର୍ଣ୍ଣ ଓ ସୁଦୂର ପ୍ରସାରୀ ଯେ ସେଥିରୁ ଲେଖକଙ୍କ ଜ୍ଞାନ, ଅଭିରୁଚି ତଥା ପର୍ଯ୍ୟବେକ୍ଷଣ ଅଭିନିବେଶ ଶକ୍ତିର ପରିସର ଜଣାପଡ଼େ । ଦେଶ ବିଦେଶର ପୁରାଣ, ଶାସ୍ତ୍ର, ଇତିହାସ, ରାଜନୀତି, ଧର୍ମଗ୍ରନ୍ଥ ଠାରୁ (କ୍ଲାଇବ, ନେପୋଲିୟନ, ଯିଶୁଖ୍ରୀଷ୍ଟ, ଦୁର୍ବାସା, ଆମେରିକାର ପ୍ରେସିଡ଼େଣ୍ଟ ନିର୍ବାଚନ, ବ୍ରିଟିଶ ପାର୍ଲାମେଣ୍ଟ, ମାଞ୍ଚେଷ୍ଟର ଲୁଗାକଳ) ବଣର କେନ୍ଦୁଆ ପର୍ଯ୍ୟନ୍ତ ସମସ୍ତେ ଉପମା ସୃଷ୍ଟିକୁ ଆସି ଥାଆନ୍ତି । ଯେତେ ଉଦ୍ଭଟ ସାମଞ୍ଜସ୍ୟହୀନ ହେଲେ ବି ଉପମା ସବୁ ଯଥାର୍ଥ ଏପରିକି ଅତି ଆଧୁନିକ । କେବଳ ଗୋଟିଏ ପରିଚ୍ଛେଦରୁ କେତୋଟି ଉଦାହରଣ ନିଅନ୍ତୁ । "କେଉଟମାନେ ତାଗ କାଟିବା ସକାଶେ ଛଣପଟ ବିଡ଼ା ମେଲଇ ଦେଇଥାନ୍ତି; ସେହିପରି (ଆଖୁନ୍‌ଜୀଙ୍କ) ବିଡ଼ାଏ ପାଚିଲ ଦାଢୀ । ଲଙ୍କା ପୋଡ଼ିବାବେଳେ ହନୁମାନ ମୁହଁରେ ନିଆଁ ଲଗିଲ ପରି...ପାଚିଲ ଦାଢ଼ିଗୁଡ଼ିକ ଝରିବାଣ ପରି ଉଡ଼ୁଥାଏ" "ଘର ଉପର ଭଙ୍ଗା କାଣିସମାନଙ୍କରେ ଓକିଲମାନେ

ଯେପରି ଦର୍ପଣ ଆଲମାରୀରେ ଆଲନା ପୋଥି ସଜାଡ଼ି ଦେଇ ତକିଆକୁ ଆଉଜି ଓ ମେଡଲକୁ ଗୁହିଁ ବସିଥାଆନ୍ତି ବୁଢ଼ୀଆଣୀମାନେ ସେହିପରି ଜାଲଟାଙ୍ଗି ମଶା ମାଛିଟିକୁ ଗୁହିଁ...'' ''ଓ୍ୱାଟର୍ଲୁ ଯୁଦ୍ଧରେ ହାରି ନେପୋଲିଅନ ଏପରି ଭାବନାରେ ବସି ପାରି ନଥିଲେ ।'' ''ପଠାଣ ଘର ତଲକଦିଆ ମାଇକିନିଆଙ୍କ ପରି ତାନ-ପୁରଟା'' ଏବଂ ''ପଡ଼ିଆର ବାଜି ହାଣ୍ଡି ପରି ତବଲ ଦୁଇଟା ।'' ''ହିପୋଟି ଆଗରେ ଗ୍ରେଭ ଆସାମୀ ପରି ।'' ସ୍ୱର୍ଗର ଦୂତ ବଂଶୀ ବଜାଇଲେ ସମସ୍ତ ମୃତ-ଲୋକ କବରରୁ ଉଠି ବସିଲା ପରି ମଜଲିସ ଅବଶୋଷରେ ମରି ପଡ଼ିଥିଲା, ମଙ୍ଗରାଜଙ୍କ ଟଙ୍କାର ଝଣଝଣ ଶବ୍ଦରେ ବଞ୍ଚି ଉଠିଲା'' ''କଳା ପର୍ବତରେ କୁହୁଡ଼ି ବୁଲିଲା ପରି ଦାଢ଼ିସାର ଧୂଆଁ ଖେଳିଗଲା ।'' ମିଆଓ-ମି-ଆଁଓ-ମିଆଁଓ ଓସ୍ତାଦଜୀଙ୍କ ତାନପୁରା କାନ ବାଁ ହାତରେ ମୋଡ଼ି-ସୁର ଦେଇ ବସିଲେ'' ''ସରକାର କେନାଲ ଦ୍ୱାରା ଯେପରି ପରଗନା ପରଗନା କରି ମହାନଦୀର ଜଳ ବାଣ୍ଟୁଅଛନ୍ତି, ନଳ ଯୋଗରେ ହୁକା ଭିତରେ ଜମାଥିବା ଧୂଆଁ ସମସ୍ତଙ୍କ ମୁହଁକୁ ବାଣ୍ଟିଗଲା ।'' ''ମହାଦେବଙ୍କ ଆଗରେ ରୋଗୀ ଧାରଣା ଦେଲା ପରି ନଳଟା ମିଆଁଙ୍କ ପାଦ ସ୍ପର୍ଶ କରି ଅଡ଼ିଅଛି ।

''କ୍ଲାଇବ ସାହେବଙ୍କ ପଲାଶିଯୁଦ୍ଧ ଜୟ ସମ୍ବାଦ ଶୁଣି ବିଲାତରେ ଡ଼ାଇରେକ୍ଟର ସଭା ନିଶ୍ଚୟ ଏତେ ଦୂର ଆନନ୍ଦିତ ହୋଇ ନଥିବେ ।'' ''ଜାଲ ମଧ୍ୟରେ ବୁଣା ଗୁଡ଼ଙ୍କ ଖାଇଲାବେଳେ ପକ୍ଷୀମାନଙ୍କ ଆନନ୍ଦ ବ୍ୟାଧ ତୁନି ହୋଇ ଦେଖୁଥାଏ । ସେ ସମୟରେ ମଙ୍ଗରାଜ ଭାବୁଥିଲେ ''ଆ ବାପ ଚଢେଇ ଆ, କାଣ୍ଡିଆ ପାଖକୁ ଆ ।'' ଉଦାହରଣଗୁଡ଼ିକ ଗୋଟିଏ ମାତ୍ର ପରିଚ୍ଛେଦରୁ ନିଆଯାଇଛି । Sublime ଓ Ridiculousର ଏକତ୍ର ସଂସ୍ଥିତି, ମହାଦେବରୁ ମିଆଁ ପର୍ଯ୍ୟନ୍ତ ପତନ, ଝଂକାର ଝଣଝଣରୁ ଦେବଦୂତଙ୍କ ବଂଶୀ ଏବଂ ମଲାଲୋକଙ୍କ ପରି ମଜଲିସର ଉତ୍‌ଥାନ । ସଂହତି ଓ ପୂର୍ବାପର ସମ୍ପର୍କ ନ ବୁଝି ମଧ୍ୟ ଏ ଉପମା ଗୁଡ଼ିକ ଆମକୁ ଆଶ୍ଚର୍ଯ୍ୟାଭିଭୂତ କରେ । ଗଳ୍ପର ପ୍ରଗତି କଥା କିଏ ପଗ୍ରରେ ? ହାସ, ଅଟ୍ଟାହସ, ଉପହାସ ପରିହାସରେ ପାଠକ ମଜ୍ଜମାନ । ଲେଖକଙ୍କ ଉପମାର ପରିହାସର କଳ୍ପନା କରିବାରେ ପାଠକ ମଗ୍ନ ।

ଗୁଣକୁ ବସ୍ତୁ ସାହାଯ୍ୟରେ, ଅଦୃଶ୍ୟକୁ ଦୃଶ୍ୟ ବସ୍ତୁଦ୍ୱାରା ବା Abstractକୁ Concrete ଦ୍ୱାରା ପ୍ରକାଶ କରିବା ସେନାପତିଙ୍କ ଶୈଳୀର ଅନ୍ୟ ଏକ ଲକ୍ଷଣ । ଲୁଆ ବିଲର ଧାନ ତଳି ସବୁଜ ହେଲା ନ କହି ''ଶୁଆ ପକ୍ଷିଆ ବନି ଗଲଣି''

କହିବା ଦ୍ୱାରା ଘନ ଜଙ୍ଗଲର ସମସ୍ତ ସବୁଜିମା ଶୁଆ ପକ୍ଷୀଠାରେ ପ୍ରାଣବନ୍ତ ହୋଇ ଶ୍ୟାମ ଗେଛାଇତର ଗାଁ ତଳି ବିଲକୁ ଭିଡ଼ି ଆସିଛି ଯେମିତି । ଦିନେ ଦୁଇ ଦିନ ବା ଅଳ୍ପ କେଇ ଦିନରେ ମୁକୁଳାଇ ଆଣିବି ନ କହି "ମାଠିଆଏ ତେଲ ପେଡ଼ିଥିବେ କି ନାହିଁ" କହିବା ଦ୍ୱାରା ଜେଇ ଅଭ୍ୟନ୍ତରର ହାଡ଼ଭଙ୍ଗା ପରିଶ୍ରମ ତେଲ ହୋଇ ବାହାରି ଆସିଲା ପରି ଜଣାପଡ଼େ । ସିମିତି ସମୟ ସ୍ୱଳ୍ପତାର ସୂଚନା ଦେବାକୁ ଯାଇ ଲେଖକ କହନ୍ତି, କ୍ଲାଇବ ସାହେବ ଦିଲ୍ଲୀ ବାଦ୍‌ସାଙ୍କ ପାଖରୁ ବଂଗଳାର ସୁବାଦାରୀ ନେବାବେଳେ ଏତେ ଅଳ୍ପ ସମୟ ବା ଗୋଟିଏ ଗଧ କିଣାରେ ତାହାଠାରୁ ଅଧିକ ସମୟ କହିବା ଦ୍ୱାରା ଶୈଳୀକୁ ଛବିଳ କରିବା ସଙ୍ଗେ ସଙ୍ଗେ ଅନେକ କଥାର ଇଙ୍ଗିତ ଦେଇଛନ୍ତି । 'ମାମୁଁ'ର ଗଘୋମହାନ୍ତିଙ୍କ ନଖ କେତେ ଟାଣ ତାହା ଜାଣଇବା ପାଇଁ "ଗ୍ୱରି ଗ୍ୱରିଟା ନହୁଗଣୀ କୁଛା" ଏହି ଶ୍ରେଣୀର ତୁଳନା । ନୃଶଂସ ଭାବରେ ଅବଲୀଳାକ୍ରମେ ହତ୍ୟାକୁ "ପପଣ କୁକୁଡ଼ା ଜଭେ କଲପରି" କହି ଲେଖକ ନିଜେ ପଠାଣର ଆନନ୍ଦ ପାଉଛନ୍ତି ଯିମିତି । ଗଘୋ· ମହାନ୍ତିଙ୍କ "ମେଣ୍ଢାଲେମିଆ" ତୂଳ ଏଇ ଶ୍ରେଣୀର ଇଙ୍ଗିତପୂର୍ଣ୍ଣ ବଂକ୍ତିଟ ଶବ୍ଦ । ଶୈଳୀ ସର୍ବତ୍ର ଘଟଣା, ଚରିତ୍ର, ବର୍ଣ୍ଣନାର ଅନୁରୂପ । କାହିଁ ବେଖାପ ନାହିଁ । ପ୍ରାୟ ସବୁଠି ଦୁଃଖ ସୁଖ ମିଶା ହସ, ପ୍ରକୃତ ହାସ୍ୟରସ । ସର୍ବବ୍ୟାପୀ ଏଇ ହାସ୍ୟ ରସର ସଞ୍ଚାର ପାଇଁ ଫକୀରମୋହନ ନାନା ଉପାୟ ଗ୍ରହଣ କରିଥାନ୍ତି । କେତେ-ବେଳେ ଜୀଅନ୍ତାକୁ ମଲା ସହିତ ଯୋଡ଼ି (ସେବାରଟି ଟିକିଏ ଲସଭରି) ମଣିଷକୁ ପଶୁପକ୍ଷୀ ସହିତ ତୁଳନା କରି (ଯଥା–"ଗୋଟିଏ ପାଣିକାଉ ମେମ୍ ସାହେବଙ୍କ ଗାଉନ ପରି କୂଳରେ ବସି ଡ଼େଣା ଶୁଖାଉଛି," "ଶାରୀ ଢ଼ଗିଆକୁ ଦେଖ, ବଗଜ ବଗୁଲି ଲେଖ" "ହେ ହିନ୍ଦୁଧର୍ମୀ ବର୍ଗମାନେ, "ସ୍ୱର୍ଗୀୟ ଧର୍ମ ଓ ଦେବଦେବୀଙ୍କୁ ମର୍ତ୍ତ୍ୟର ଧୂଳିମାଟିରେ ଗଡ଼ାଇ ("ଜଗନ୍ନାଥ ମହାପ୍ରଭୁଙ୍କ ରଥ ଆଗ ଶଢଧା ବାଲିଲେ ଭକ୍ତ ଗଡ଼ିଗଲା ପରି ଘୋଡ଼ାଟା ତିନି ଗ୍ୱରି ଥର ଗଡ଼ିଯାଇ...ବୈଷ୍ଣବମାନେ ମାଳ ଝୁଲିଧରି ହରିନାମ ଭଜିଲା ପରି ଗୋରୁ ବାଛୁରୀମାନେ ପାକୁଳି କରୁଛନ୍ତି) ଦେବଦେବୀଙ୍କୁ ଓଜନ ଡ଼ାଙ୍ଗିରେ ତଉଲି ଓ ମର୍ତ୍ତ୍ୟର ଦୈନନ୍ଦିନ ବ୍ୟବହୃତ ଉପ-କରଣ ସହିତ ତୁଳନା କରି (ଦେଶପଶୁରୀ ଡ଼ରଣା ହେବନାହିଁ, ଦୁଇ ଗ୍ୱରିଟା ହଳଦୀବଟା ମିଳ ମିଶିଲେ ଯେତେ ବଢ଼) ଫକୀରମୋହନ ଅକ୍ଲେଶରେ ଲୁଡ଼ି ତ୍ରାସ ବା ହାସ୍ୟୋଦ୍ଦୀପକ ଚିତ୍ର ଦେଇ ପାରନ୍ତି । Grotesque ଏବଂ Beautifulର ଧାରଣା ଏକତ୍ର ସମାବେଶ ।

ଭାଷା ଓ ଶବ୍ଦର ବ୍ୟବହାର କୌଶଳ ମଧ୍ୟ ଅନୁଧ୍ୟାନ କରିବା କଥା । କେତେବେଳେ ଯାବନିକ ଶବ୍ଦ ବ୍ୟବହାର କରି (ଶେଖ କେରମତ ଅଲି ଫୌଜ ହୋଇ ଗଲେଣି) କେତେବେଳେ ଖାଣ୍ଟି ଦେଶୀ ଶବ୍ଦ ସହିତ ତତ୍ସମ ବା ମୂଳ ସଂସ୍କୃତ ଦେଇ ("ଢ଼ାଳଟା ଥୋଇ ଦେଇ ଧନୁକାକର ଧାରଣେ ପୂର୍ବକ ଅଞ୍ଜଳିବଦ୍ଧୋ ଭୂତ୍ୱା ସଆନ୍ତଙ୍କର କୀର୍ତ୍ତିମାୟୁର୍ଘଶ୍ରଶ୍ରୟଂ କାମନା କଲେ") କେତେବେଳେ ଇଂରଜୀ (ଚମ୍ପାର ଗୋଲପ ଗୁଲି, ସାହେବ ମାଇଁ ଡ଼ିଅର ଲେଡ଼ି ଆରମ୍ଭ କରି) କେତେ-ବେଳେ ଅବା ହିନ୍ଦୀ (କୁଛ ପରବା ନୋହି ଟଙ୍କା ଆଣ) ବ୍ୟବହାର କରି ସେ ଶୈଳୀରେ ବୈଚିତ୍ରୀ ଆଣନ୍ତି । କେତେବେଳେ ଅବା ଚରିତ୍ର ଗୁଡ଼ାକର ବିଚିତ୍ର ନାମକରଣ କରି (ଗେମ ଗମ ଲଲ୍ଲ, ଏ ବି ସି ଡ଼ି ଡ଼ଗ୍ଲାସ ବାପର ନାମ ଇ ଏଫ୍-ଜି ଏଚ୍ ଡ଼ଗ୍ଲାସ, ନାକଫୋଡ଼ିଆ ମା, ହଗୁରମା, ମୁତୁରୀମା, ମହନ୍ତ ବାନ୍ଦର ଦାସ ମର୍କଟ ମହାରଜ, ରଘୋ ମହାନ୍ତି) କେତେବେଳେ ପୋଷାକ ପରିଚ୍ଛଦର ଯାବନିକ ଭଷାରେ ବିଷଦ ବର୍ଣ୍ଣନା କରି (ମାମୁଁରେ ଚିତ୍ରକଳା ଓ ନାକଫୋଡ଼ିଆ ମାଆର ଯୁଦ୍ଧ) କେତେବେଳେ ପୁରଣ ଶାସ୍ତ୍ର ଇତିହାସ ଚର୍ଚ୍ଚା (ବୋଘସିଂହ ବଂଶର ଇତି-ବୃତ୍ତ, ପଣ୍ଡିତ ସଭା) । ପୁରଇ, ପୁଣି କେତେବେଳେ ଗାଉଁଲି ଭଷାକୁ ହଠାତ୍ ସଂସ୍କୃତର ଗୁରୁଗମ୍ଭୀର ସ୍ତରକୁ ଉଠାଇ (ଘୋର ନୈଶ ଓ ନିସ୍ତବ୍ଧତା ଭେଦ କରି ସେହି ପୈଶାଚିକ ବିରଟ ହାସ୍ୟ ସାଆନ୍ତାଣୀଙ୍କ କର୍ଣ୍ଣପଟହ ଭେଦ କରିଥିବ") ବା ଶୈଳୀକୁ ହଠାତ୍ ତଳକୁ ଖସାଇ (ଟୋଙ୍ଗି ମାଉସୀ ପରିଚ୍ଛେଦର ଟଣାଟଣି ଓ ଗପ ପରେ ଶେଷକୁ ଠୋସ୍ ଠୋସ୍, ଧସ୍ ଧସ୍, ଫସ୍ଫସ୍, କସ୍‌ମସ୍) ଫକୀରମୋହନ ରଚନା ଶୈଳୀରେ ବର୍ଣ୍ଣ ବୈଚିତ୍ର୍ୟ ସୃଷ୍ଟି କରି ପାରନ୍ତି । କେତେବେଳେ ବର୍ଣ୍ଣନା ଅତି ବିସ୍ତୃତ, ଅତିରଞ୍ଜନ ବର୍ଣ୍ଣାଢ଼୍ୟ ଅନ୍ୟତ୍ର ସଂକ୍ଷିପ୍ତ, ଲଣ୍ଡିତ । ଦିଲଦାର ମିଆଁଙ୍କ ମଜଲିସ୍ ଯେତେ ବିସ୍ତୃତ, ଫତେପୁର ଷରଷଣ୍ଡର ଜମିଦାରୀ ହାସଲ ସେତେ ସଂକ୍ଷିପ୍ତ । କେତେବେଳେ ଅବା ଉଦ୍ଦେଶ୍ୟ ଲୁକ୍କାୟିତ ("ଚିତ୍ରକଳା ପକ୍ଷରୁ ଜଣେ ଅନ୍ଧଦାମିଆ, ଜୁନିଅର ଟୋକାଳିଆ ଓକିଲ ନିଯୁକ୍ତ ଥିଲେ ।")

ସେନାପତିଙ୍କ ସାଟାୟାର ବା ବ୍ୟଙ୍ଗବିଦ୍ରୁପର ଶରବ୍ୟ ବ୍ୟକ୍ତି, ଜାତି ସମ୍ପ୍ରଦାୟ ବିଶେଷ ନୁହନ୍ତି । ମଣିଷର ଆଦର୍ଶରୁ ଯେ ଚ୍ୟୁତ ବା ସମାଜର ନୀତି ନିୟମ ଯେ ଲଙ୍ଘନ କଲା ସେନାପତି ତା ପାଇଁ ଶର ବା ଛୁରୀ ବାହାର କରୁଥିଲେ । ବ୍ରାହ୍ମଣ, କରଣ, ତନ୍ତୀ, ବାରିକ, ସାହେବ, ପଠାଣ, ବାବାଜୀ, ଧନିକ, କିରଣୀ,

ଡ଼ାକ୍ତର, ଓକିଲ କାହାରି ରକ୍ଷା ନାହିଁ । ହେଲେ ଅସୂୟା, ଈର୍ଷା, ନିର୍ମମଣ ନାହିଁ ସେ ଆଘାତରେ । ବେକ ପତାଇବା ପାଇଁ ସମସ୍ତେ ଆଗ୍ରହୀ । ଉଚ୍ଚକୋଟୀର ସାଟାୟାର ସ୍ରଷ୍ଟାରୂପେ ସେନାପତି ନୃଶଂସତା ଅବଲମ୍ବନ ନକରି ରୋଗୀର କଲ୍ୟାଣକାମୀ ଡ଼ାକ୍ତର ଭଳି ଛୁରି ଚଳାଇ ସମାଜକୁ ରୋଗବିମୁକ୍ତ ଓ ସୁସ୍ଥ କରିବା ପ୍ରୟାସରେ ସ୍ୱର୍ଗୀୟ ଆନନ୍ଦ ମଧ୍ୟ ପାଉଥିଲେ ।

ବଡ଼ଜେନାଙ୍କ ପ୍ରତିଷ୍ଠିତ ପରମ୍ପରାର ଅନୁପ୍ରେରଣାରେ ଆଦର୍ଶ ସମାଜ ପ୍ରତିଷ୍ଠାରେ ପ୍ରଖରଦୃଷ୍ଟି ରଖି ଓଡ଼ିଆ ଜାତି ତଥା ଭାଷାର ଜୀବନ ମରଣ ବେଳର ସେନାପତି ପରିସ୍ଥିତି ଓ ସ୍ଥାୟୀ ସମାଜ ଚେତନାକୁ ଯେଉଁ ଶୈଳୀରେ ଗଳ୍ପ ଉପନ୍ୟାସରେ ଅପୂର୍ବରୂପ ଦେଇଥିଲେ ତାହା ପରବର୍ତ୍ତୀ ଯୁଗର ମନନଶୀଳତା ଓ ଅଭିଜ୍ଞତା ତଥା ସରସତା ଓ ରସିକତା ଅଭାବରେ ମ୍ଳାନ ହୋଇଛି । ସାମାଜିକ ଓ ରାଜନୀତିକ ଏବଂ ସାମ୍ପ୍ରଦାୟିକତାର ଚାପରେ କଳାବବୋଧ ହରାଇ ସେନ୍‌ସିବିଲିଟିକୁ ନିସ୍ତେଜ ଓ ପ୍ରାଣହୀନ କରି ଆମେ ରୋମାଣ୍ଟିକ ଅବା ମେଲୋଡ୍ରାମାଟିକ୍ ଭାଷାକୁ ବଳିଷ୍ଠ ଉପାଦେୟ, ପୁରୁଷୋଚିତ ଭାଷା ଭାବି ଚାଲିଛୁଁ । ସେନାପତିଙ୍କ ଅମୂଲ୍ୟ (ଶୈଳୀ) ଉତ୍ତରପୁରୁଷଙ୍କୁ ଯେ ଅପ୍ରସ୍ତୁତ ଅଯୋଗ୍ୟ ଅବସ୍ଥାରେ ପାଇବ ସେଥିକୁ ଭୟ କରିବାର ଯଥେଷ୍ଟ କାରଣ ଅଛି । କାବ୍ୟଧର୍ମୀ ଶୈଳୀର ନାନା ବାଙ୍କ, ବାଗ, ପେଞ୍ଚ ପାଞ୍ଚ ଅନୁଧ୍ୟାନ କରିବାକୁ ଆୟସ ଓ ସାଧନା ଦରକାର । ସର୍ବାଜନାଦୃତ ହେବା ଭଳି ଭାଷା ଓ ଶୈଳୀ କିପରି ହେବା ଉଚିତ ସେନାପତି ତାହା ଦେଖାଇ ଦେଇ ଯାଇଛନ୍ତି । ସୁରେନ୍ଦ୍ର ମହାନ୍ତିଙ୍କ ଅଧୁନା ପୁରସ୍କୃତ 'ନୀଳଶୈଳ'ରେ ଫକୀରମୋହନଙ୍କ ଉପନ୍ୟାସ କଳା ଓ ଶୈଳୀର ସୁସ୍ପଷ୍ଟ ଅନୁକୃତି ସର୍ବଥା ଅଭିନନ୍ଦନୀୟ ।



'ଅନ୍ନପୂର୍ଣ୍ଣା', ବାଘ୍ରାରୋଡ଼, ବାରିପଦା, ମୟୂରଭଞ୍ଜ

# ଫକୀରମୋହନଙ୍କ ଗଦ୍ୟରୀତି ଓ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ

ଗଗନେନ୍ଦ୍ର ନାଥ ଦାସ

(୧)

ଏ ପ୍ରବନ୍ଧ ନିମ୍ନ ତିନିଗୋଟି ବିଶ୍ୱାସ ବା ଧାରଣା (Premise) ଉପରେ ପ୍ରତିଷ୍ଠିତ :

(୧) ପୃଷ୍ଠଭୂମି ଓ ପରିବେଶ, ଅନ୍ୟ କଥାରେ ପରମ୍ପରା ଓ ପରିସ୍ଥିତି, ଶିଳ୍ପୀ-ମାନସକୁ ଗଭୀର ଭାବରେ ପ୍ରଭାବିତ କରି ତାର କଳାକୃତି ବା ସାହିତ୍ୟ କୃତି ଉପରେ ତାର ପ୍ରତିଫଳନ ରଖିଯାଏ ବା ଛାଡ଼ିଯାଏ;

(୨) ପରମ୍ପରା ଓ ପରିସ୍ଥିତିର ଗଭୀର ଅନୁଶୀଳନ ବା ଅନୁଧ୍ୟାନ ଦ୍ୱାରା ଯେ କୌଣସି ସାହିତ୍ୟିକର ବ୍ୟକ୍ତି-ମାନସ ବା ଶିଳ୍ପୀ-ମାନସକୁ ଅନ୍ତତଃ ଆଂଶିକ ଭାବରେ ଆବିଷ୍କାର କରଯାଇ ପାରେ, ଆଉ ସେଥିପାଇଁ ଐତିହାସିକ ପଦ୍ଧତି, ମନୋବିଶ୍ଳେଷଣ ପଦ୍ଧତି ଆଦିର ସାହାଯ୍ୟ ନିଆଯାଇ ପାରେ;

(୩) ସାହିତ୍ୟ-ସ୍ରଷ୍ଟାର ବ୍ୟକ୍ତି-ମାନସ ବା ଶିଳ୍ପୀ-ମାନସକୁ ଅନ୍ତତଃ ଆଂଶିକ ଭାବରେ ଆବିଷ୍କାର କରଯାଇ ପାରିଲେ ତାହା ତାର ସାହିତ୍ୟ କୃତିର ଅବବୋଧରେ ସହାୟକ ହୋଇପାରେ, ଅନ୍ତତଃ ଆଂଶିକ ଭାବରେ ।

(୨)

୧୮୬୮ର ଜାନୁଆରୀ ମାସରୁ ୧୮୭୦ର ମଧ୍ୟ ଭାଗ ପର୍ଯ୍ୟନ୍ତ ଓଡ଼ିଶାର ବିଦ୍ୟାଳୟରେ ଓଡ଼ିଆ ଭାଷାର ପ୍ରଚଳନକୁ ସୁଦୃଢ଼ ଓ ସମ୍ପ୍ରସାରିତ କରିବା ପାଇଁ ହୋଇଥିବା ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ କିପରି ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶରେ ବିଶେଷ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ସେ

ସମ୍ପର୍କରେ ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକ ଓ ଗବେଷକମାନେ କିଛି ପରିମାଣରେ ସଚେତନ ଥିଲେ ମଧ୍ୟ ଯେତେ ଅଧିକ ସଚେତନ ହେବା ଆବଶ୍ୟକ ତା ନୁହଁନ୍ତି ବୋଲି ମନେ ହୁଏ । ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶ ବିଷୟକ ଆଲୋଚନା ପ୍ରସଙ୍ଗରେ ବହୁ ଦିନରୁ ପଡ଼ି ଯାଇଥିବା ଶଗଡ଼ ଗୁଳା ହେତୁ ସେଇ ଧାରାର ଅନୁବର୍ତ୍ତନରେ ସାହିତ୍ୟର ପୃଷ୍ଠଭୂମି ରଚନା ଅବକାଶରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ (ଯାହାର ସ୍ୱରୂପ ଭଲ ଭାବରେ ଉପଲବ୍‌ଧ ଓ ଅନାବିଷ୍କୃତ ରହିଯାଇଛି ବୋଲି କୁହାଯାଇ ପାରେ ।) କାରଣ କେହି କେହି ସମାଲୋଚକ ଏଇ ଅଭିନବ ଗଦ୍ୟରୀତିର ମୂଳ ବା ପ୍ରେରଣାର ଉତ୍ସ ସନ୍ଧାନ ବା ଅନ୍ୱେଷଣର କୌଣସି ଉପଯୋଗିତା, ଏପରି କି ଆବଶ୍ୟକତା ଆଦୌ ଅନୁଭବ କରି ନଥିବା ବେଳେ ଆଉ କେହି କେହି ତାହା ସହଜସାଧ୍ୟ ନୁହେଁ ବୋଲି ସିଦ୍ଧାନ୍ତ କରିଛନ୍ତି । ପୁଣି ଆଉ କେହି କେହି ସେଇ ମୂଳ ବା ପ୍ରେରଣାର ଉତ୍ସ ଆବିଷ୍କାର ପ୍ରସଙ୍ଗରେ ଯେଉଁ ସବୁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଓ ତାର ଦୃଷ୍ଟାନ୍ତରେ ଥିବା ଯେଉଁ ସବୁ କାରଣ ନିର୍ଦ୍ଦେଶ କରିଛନ୍ତି ତାର କିଛି ଉପଯୋଗିତା ଅବଶ୍ୟ ରହିଛି । କାରଣ ଫକୀରମୋହନ ପ୍ରବର୍ତ୍ତିତ ଏଇ ଅଭିନବ ଗଦ୍ୟରୀତିର ଉଦ୍ଭବ ଓ ବିକାଶରେ ସେ ମଧ୍ୟରୁ କେତେକର ସାମୂହିକ ସହାୟକ ତଥା ପରିପୂରକ ଭୂମିକା ହୁଏତ ଥିଲା । କିନ୍ତୁ ସେ ସବୁର ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ସହ ବିଶେଷ ସମ୍ପର୍କ ନଥିଲା କି ଏଇ ଅଭିନବ ଗଦ୍ୟରୀତିର ମୂଳ ବା ପ୍ରେରଣାର ଉତ୍ସ ତାହା ମଧ୍ୟରେ ନ ଥିଲା । ଆହୁରି ପୁଣି କେହି କେହି ସମାଲୋଚକଙ୍କ ଅନୁମାନ ବା ସିଦ୍ଧାନ୍ତ ପ୍ରକୃତ ସତ୍ୟର, ଅନ୍ୟ କଥାରେ ଏଇ ଅଭିନବ ଗଦ୍ୟରୀତିର ମୂଳ ବା ପ୍ରେରଣା ଉତ୍ସର ଅତି ନିକଟବର୍ତ୍ତୀ ହୋଇ ତାହାକୁ ସାଧାରଣ ଭାବରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ବୋଲି ଚିହ୍ନିତ କରିଥିଲେ ମଧ୍ୟ ବା ଏପରି କି ତାହାକୁ ଆଂଶିକ ଭାବରେ ଆବିଷ୍କାର କରି ପାରିଥିଲେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଉପାଦାନର ଅନୁପଯୋଗ ତଥା ଆବଶ୍ୟକ ବ୍ୟାଖ୍ୟା ଓ ବିଶ୍ଳେଷଣ ପୁଣି ଆହୁରି ଅଧିକ ଗଭୀର ଅନ୍ତର୍ଦୃଷ୍ଟିର ଅଭାବରୁ ତାହା ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହୋଇ ପାରିନାହିଁ ଓ ଅସ୍ପଷ୍ଟପରିଆ ଓ ଏକପାଖିଆ ତଥା ଅପୂର୍ଣ୍ଣାଙ୍ଗ ଓ ତେଣୁ ଭ୍ରମଯୁକ୍ତ ଚିତ୍ର ପ୍ରଦାନ କରୁଛି । ସେ ସମ୍ପର୍କରେ କେତେକ ସୂଚନା ନିମ୍ନରେ ଦିଆଯାଉଛି ।

୩.୧ ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ବିଶିଷ୍ଟ ସମାଲୋଚକ ଶ୍ରୀନିବାସ ମିଶ୍ର ଫକୀରମୋହନଙ୍କ ଗଦ୍ୟସାହିତ୍ୟର ବିସ୍ତାରିତ ସମାଲୋଚନା

ପ୍ରସଙ୍ଗରେ ସେଇ ଗଦ୍ୟରଚନାର ଦୁଇଟି ସୁସ୍ପଷ୍ଟ ପର୍ଯ୍ୟାୟ ଥିଲ ବୋଲି କହିଥିଲେ ହେଁ ଫକୀର ମୋହନଙ୍କ ପ୍ରଥମ ପର୍ଯ୍ୟାୟର ଗଦ୍ୟ ରଚନା ଉପରେ 'ଉତ୍କଳ ଦୀପିକା' ପୃଷ୍ଠାରେ ହୋଇଥିବା ତୀବ୍ର ସମାଲୋଚନାକୁ ଓ ତାର ଯାଥାର୍ଥ୍ୟକୁ ଲକ୍ଷ୍ୟ କରିପାରି ନାହାନ୍ତି କି ତାଙ୍କ ଦ୍ୱିତୀୟ ପର୍ଯ୍ୟାୟର ଗଦ୍ୟରଚନାର ମୂଳ ବା ପ୍ରେରଣାର ଉତ୍ସକୁ ଅନୁସନ୍ଧାନ ବା ଆବିଷ୍କାର କରିବାର ଉପଯୋଗିତା ବା ଆବଶ୍ୟକତାକୁ ଆଦୌ ଅନୁଭବ କରିପାରି ନାହାନ୍ତି, ତା ଆବିଷ୍କାର କରିପାରିବା ତ ଆହୁରି ଦୂରର କଥା ( ଦ୍ରଷ୍ଟବ୍ୟ :- ମିଶ୍ର, ଶ୍ରୀନିବାସ, ୧୯୬୮, ପୃ–୨୬୯ ) ।

୩ . ୨ ଫକୀରମୋହନ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକ ସର୍ବେଶ୍ୱର ଦାସ ଫକୀରମୋହନଙ୍କ ଗଦ୍ୟରୀତିର ମୂଳ ସୂତ୍ର ବା ପ୍ରେରଣା ଉତ୍ସର ସନ୍ଧାନ ପାଇବା ସହଜ ନୁହେଁ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରି କହନ୍ତି, "ଓଡ଼ିଆ ଗଦ୍ୟ ସାହିତ୍ୟର ଅପ୍ରତିଦ୍ୱନ୍ଦୀ ସମ୍ରାଟ, ଓଡ଼ିଆ କଥା ସାହିତ୍ୟର ଅମର କଳାକାର ଫକୀରମୋହନଙ୍କ ରଚନା ଶୈଳୀ ସମ୍ପୂର୍ଣ୍ଣ ଅଭିନବ ଏବଂ ଏକାନ୍ତ ଭବରେ ମୌଳିକ । ଓଡ଼ିଆ ଗଦ୍ୟ ସାହିତ୍ୟର ଇତିହାସରେ ସେ ବିପ୍ଳବର ବାର୍ତ୍ତାବହ ଏବଂ ଏକ ନବଯୁଗର ପ୍ରବର୍ତ୍ତକ ରୂପେ ଚିର ସ୍ମରଣୀୟ ହୋଇ ରହିବେ । ଏ କଥା ସ୍ୱୀକାର କରିବା ଯେତିକି ସହଜ, ସେହି ଅଭୂତପୂର୍ବ ସଫଳତାର ମୂଳ ସୂତ୍ର ବିଶ୍ଳେଷଣ କରି ଦେଖାଇ ଦେବା ସେହି ପରିମାଣରେ ସହଜ ନୁହେଁ । ସମାଲୋଚକର ତୀକ୍ଷ୍ଣତମ ଦୃଷ୍ଟିକୁ ପରାଜିତ କରି ଖସି ଗ୍ଲଲିଯିବା ପ୍ରତିଭର ଚିରନ୍ତନ ରୀତି ।" ( ଦାସ, ସର୍ବେଶ୍ୱର, ୧୯୭୨, ପୃ–୫୫ ) । ହୁଏତ ଏ କାରଣରୁ ଫକୀର ମୋହନ ପ୍ରବର୍ତ୍ତିତ ଅଭିନବ ଗଦ୍ୟରୀତିର ମୂଳ ଖୋଜିବା ପାଇଁ ସେ ଚେଷ୍ଟିତ ହୋଇ ନାହାନ୍ତି, ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ ସହ ତାର ସମ୍ପର୍କ ଆବିଷ୍କାର ତ ଦୂରର କଥା ।

୩ , ୩ ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶ ମଧ୍ୟରେ ନିବିଡ଼ ଓ ଆତ୍ମିକ ଯୋଗସୂତ୍ର ଥିବା ସମ୍ପର୍କରେ ବିଶେଷ ସଚେତନ —— ଓ ଯେହେତୁ ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକମାନଙ୍କ ମଧ୍ୟରେ ଏକ ବ୍ୟତିକ୍ରମ —— ଜଣେ ଗବେଷକ ଓ ସମାଲୋଚକ ହେଉଛନ୍ତି ନଟବର ସାମନ୍ତରାୟ । ପୁଣି ଅନ୍ୟମାନଙ୍କର ସେ ସମ୍ପର୍କୀୟ

ସଚେତନତା —— ତା ଯଦି ସାମାନ୍ୟ ପରିମାଣରେ ଥାଏ —— ଉପର ଠାଉରିଆ ଓ ଅଗଭୀର ହୋଇଥିବା ବେଳେ ତାଙ୍କର ଏ ସମ୍ପର୍କୀୟ ସଚେତନତାରେ ବେଶ୍ କିଛି ପରିମାଣରେ ଗଭୀରତାର ସ୍ପର୍ଶ ଲାଗିଛି । ସେ ପ୍ରସଙ୍ଗରେ ସେ କହନ୍ତି, "ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଓଡ଼ିଆ ଭଷା ବିଲୋପ ଆନ୍ଦୋଳନ ଏକ ଶ୍ରେଷ୍ଠ ପୃଷ୍ଠଭୂମିକା ରୂପେ ଗୃହୀତ ହେବା ଉଚିତ । ( ସାମନ୍ତରାୟ, ନଟବର, ୧୯୬୪, ୨୪୬ ) ପୁଣି ଅନ୍ୟତ୍ର ମଧ୍ୟ ଏଇ ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ ( ସାମନ୍ତରାୟ ଭଷାରେ 'ଭଷା-ବିଲୋପ ଆନ୍ଦୋଳନ' ) ଓଡ଼ିଶାରେ ମଧ୍ୟବିତ୍ତ ଶ୍ରେଣୀର —— ଯେଉଁମାନେ ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଓ ପାଠକ ରୂପରେ ଆବିର୍ଭୂତ ହେଲେ —— "ମନ ପରିବର୍ତ୍ତନର ପ୍ରଧାନ ହେତୁ" ବୋଲି କହି ( ତତ୍ରୈବ ) ସେ ଏ ସମ୍ପର୍କୀୟ ବିଶେଷ ସଚେତନତାର ପରିଚୟ ଦେଇଥିଲେ । ଅନ୍ୟତ୍ର ମଧ୍ୟ ସେ ଏ ସମ୍ପର୍କୀୟ ବିଶେଷ ସଚେତନତା ଅନୁରୂପ ସ୍ପଷ୍ଟ ଭବରେ ପ୍ରକାଶ କରିଛନ୍ତି (ତତ୍ରୈବ, ପୃ—୨୫୦-୫୫) ।

ପୁଣି ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶରେ ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଅତୀବ ସଚେତନ ଏଇ ବିଶିଷ୍ଟ ସମାଲୋଚକ ଓ ଗବେଷକ ଫକୀରମୋହନଙ୍କ ଗଦ୍ୟରୀତି ଉପରେ ବିସ୍ତାରିତ ଆଲୋଚନା ମଧ୍ୟ କରିଛନ୍ତି (ଦ୍ରଷ୍ଟବ୍ୟ :- ସାମନ୍ତରାୟ, ନଟବର, ୧୯୭୨, ପୃ—୪୭-୮୦ ଓ ୧୯୬୪, ପୃ—୪୦୨-୦୫) । କିନ୍ତୁ ସେ ଫକୀରମୋହନ ପ୍ରବର୍ତ୍ତିତ ଏଇ ଅଭିନବ ଗଦ୍ୟରୀତିର ମୂଳ ବା ପ୍ରେରଣାର ଉତ୍ସ ଅନ୍ୱେଷଣ ପ୍ରସଙ୍ଗରେ ତାଙ୍କ ପତ୍ନୀ କୃଷ୍ଣକୁମାରୀ ଓ ତାଙ୍କ ପ୍ରଶାସକ ଜୀବନରେ ଆସିଥିବା ଓଡ଼ିଶାର ପ୍ରତ୍ୟେକ ସ୍ତରର ଜନଜୀବନ ଓ ଲୋକଭଷାର ପ୍ରତ୍ୟକ୍ଷ ସଂସ୍ରବ ଓ ନିବିଡ଼ ପରିଚୟର ଉଲ୍ଲେଖ କରିଛନ୍ତି (ସାମନ୍ତରାୟ, ନଟବର, ୧୯୭୨, ପୃ—୬୭-୬୯, ୭୪ ଓ ୧୯୬୪, ପୃ—୪୦୩-୦୪) । ଅନ୍ୟତ୍ର ପୁଣି ସେନାପତିଙ୍କ ଗଦ୍ୟରୀତିର ପ୍ରକୃତ ମୂଳ ବା ପ୍ରେରଣା-ଉତ୍ସ ଆବିଷ୍କାର କରିପାରିଥିବାର ସୂଚନା ଦେଇ କହନ୍ତି, "ସେନାପତି ଉପନ୍ୟାସସ୍ଥ ଘଟଣାବଳୀର ସମୟ ହିଁ ସେନାପତି ଗଦ୍ୟଶୈଳୀ ଉପଭୋଗର ପ୍ରଧାନ ଚାବିକାଠି । ଏ ଚାବିକାଠି ଧରି ଉପନ୍ୟାସର ଦୁଆର ଖୋଲନ୍ତୁ, ଦେଖିବେ ଏଥିରେ ଅଛି ଦୁଇଶ ବର୍ଷର ବିଭିନ୍ନ ଚରିତ୍ର, ବିଭିନ୍ନ ସମାଜ, ବିଭିନ୍ନ ପରିସ୍ଥିତି ଓ ବିଭିନ୍ନ ଘଟଣା । ଏ ପ୍ରତ୍ୟେକଟିରେ ଆପଣ ପାଇବେ ଯୁଗୋପଯୋଗୀ ଓ ପାତ୍ରୋପଯୋଗୀ ଭିନ୍ନ ଭିନ୍ନ ଭଷା ଓ ତାକୁ ରୂପ ଦେବା ପାଇଁ ଭିନ୍ନ ଭିନ୍ନ ଶୈଳୀ (ସାମନ୍ତରାୟ, ନଟବର,

୧୯୭୨, ପୃ–୮୦) । ୧୮୩୧ ପରେ ହୋଇଥିବା ସାହିତ୍ୟିକ ରୁଚି ପରିବର୍ତ୍ତନ ସାହିତ୍ୟକୁ ବାସ୍ତବମୁଖୀ କରାଇବା ଫଳରେ ଏହା ପୁଣି ସମ୍ଭବ ହୋଇଥିଲା ବୋଲି ସେ କହିଛନ୍ତି (ତତ୍ରୈବ, ପୃ–୭୭-୭୮) । ଫକୀରମୋହନଙ୍କ ଗଦ୍ୟରୀତିର ମୂଳ ବା ପ୍ରେରଣା ଉତ୍ସର ଆବିଷ୍କାର ପ୍ରସଙ୍ଗରେ ଏ ସବୁର ସମ୍ଭାବ୍ୟ ସହଯୋଗୀ ଓ ପରିପୂରକ ଭୂମିକା ହେତୁ ଏ ସମସ୍ତ ଦୃଷ୍ଟିକୋଣର ଉପଯୋଗିତା ବିଚାର୍ଯ୍ୟ । କିନ୍ତୁ ପ୍ରକୃତରେ ଫକୀରମୋହନଙ୍କ ଗଦ୍ୟରୀତିର ମୂଳ ବା ପ୍ରେରଣାଉତ୍ସ ଏସବୁ ମଧ୍ୟରେ ନଥିଲା ; ଥିଲା ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଭିତରେ । ତେଣୁ ସାମନ୍ତରାୟ ତାହାକୁ ଆବିଷ୍କାର କରିବା ପାଇଁ ବ୍ୟର୍ଥ ହୋଇଛନ୍ତି ।

୩ . ୪ ଫକୀରମୋହନ ସାହିତ୍ୟ ତଥା ତାଙ୍କ ଗଦ୍ୟରୀତିର ଆଉଜଣେ ବିଶିଷ୍ଟ ସମାଲୋଚକ ସୁରେନ୍ଦ୍ର ମହାନ୍ତି ତତ୍କାଳୀନ ପରିସ୍ଥିତି ବା ପରିବେଶ ସହ ଫକୀରମୋହନୀୟ ଗଦ୍ୟରୀତିର ଯୋଗସୂତ୍ର ରହିଛି ବୋଲି ସ୍ପଷ୍ଟ ସୂଚନା ଦେଇଛନ୍ତି । ସେଇ ସମସାମୟିକ ପରିସ୍ଥିତି ବା ପରିବେଶ ମଧ୍ୟରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନକୁ ବିଚାରକୁ ନେଇ ସେ ତା ସହ ଫକୀରମୋହନୀୟ ଗଦ୍ୟରୀତିର ସମ୍ପର୍କକୁ ଆବିଷ୍କାର କରି ମଧ୍ୟ କରିପାରି ନାହାନ୍ତି ବୋଲି ମନେ ହୁଏ । ଏ ସମ୍ପର୍କୀୟ ଆଲୋଚନାରେ ସେ ହିଁ ପ୍ରଥମେ ବିଷୟଟିର ଅତି ନିକଟବର୍ତ୍ତୀ ହୋଇ ଠିକଣା ପ୍ରଶ୍ନ ମଧ୍ୟ ପଚାରିଛନ୍ତି, "କିନ୍ତୁ ଫକୀରମୋହନ ଏ ଶୈଳୀର ମୂଳ ପ୍ରେରଣା ପାଇଲେ କେଉଁଠୁ ? କାହିଁକି ସେ ତାଙ୍କ ସମସାମୟିକ ପ୍ରଭାବରୁ ମୁକ୍ତ ହୋଇ ଏପରି ଏକ ବ୍ୟତିକ୍ରମ ସୃଷ୍ଟି କରିଥିଲେ ? ଫକୀରମୋହନଙ୍କ ଶୈଳୀ ଆଲୋଚନା ପ୍ରସଙ୍ଗରେ ଏପରି ପ୍ରଶ୍ନ ଉତ୍ଥାପନ କରିବା ଅବାନ୍ତର ହେବନାହିଁ (ମହାନ୍ତି, ସୁରେନ୍ଦ୍ର, ୧୯୮୧, ପୃ–୨) । ଆଉ ଏ ପ୍ରଶ୍ନର ଉତ୍ତର ଦେଇ ସେ ପୁଣି ଅନୁମାନ କରି କହନ୍ତି, "ହୋଇପାରେ ସେତେବେଳେ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଁ', ଏହା ବଙ୍ଗଳାର ଏକ ଉପଭାଷା ବୋଲି ଯେଉଁ ପରିପ୍ରଚାର ଚାଲିଥିଲା, ତାହାର ପ୍ରତିବାଦରେ ଫକୀରମୋହନ ଭାଷାକୁ ସନ୍ଧି-ସମାସ-ଘନ ସଂସ୍କୃତ ପ୍ରଭାବିତ ଗଦ୍ୟରୀତିରୁ ମୁକ୍ତ କରି ଜୀବନ୍ତ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠା ପାଇଁ ପ୍ରେରଣା ପାଇଥିଲେ ।" (ତତ୍ରୈବ) । ତେବେ ପୂର୍ବୋକ୍ତ ପ୍ରଶ୍ନଟିର ଏ ଉତ୍ତର ପ୍ରକୃତ ଉତ୍ତରର ଅତି ନିକଟବର୍ତ୍ତୀ ହୋଇଥିଲେ ମଧ୍ୟ ସୁରେନ୍ଦ୍ର ମହାନ୍ତିଙ୍କ ଏ ଅନୁମାନ ଓ ଦୃଷ୍ଟିକୋଣ ସାଧାରଣ ଭାବରେ ଠିକ୍ ହୋଇଥିଲେ ମଧ୍ୟ ପ୍ରକୃତ ବ୍ୟାଖ୍ୟା ଓ ବିଶ୍ଳେଷଣର ଅଭାବରୁ ତାହା ଯେତିକି ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହେବା କଥା ତା ହୋଇପାରି

ନାହିଁ ; ପୁଣି ଅନ୍ୟ ପକ୍ଷରେ ତା ଅତ୍ୟନ୍ତ ଉପର ଠାଉରିଆ, ଅସ୍ପଷ୍ଟ ତଥା ସୂଚନାତ୍ମକ ହୋଇପଡ଼ିଛି । ଆହୁରି ବି ସେ ତାଙ୍କ ଅନୁମାନକୁ ତଥ୍ୟ ଓ ଯୁକ୍ତିର ଭିତ୍ତିଭୂମି ଉପରେ ପ୍ରତିଷ୍ଠା କରିବାର ଚେଷ୍ଟା ଆଦୌ କରିନାହାନ୍ତି । ସେଥିରେ ପୁଣି ବାକ୍ୟଟିର ପ୍ରାରମ୍ଭରେ "ହୋଇପାରେ" ପଦଟିର ବ୍ୟବହାର ମଧ୍ୟ ତାଙ୍କ ଉତ୍ତରରେ ଦେଇଛି ଏକ ଆନୁମାନିକତା ଓ ଅନିଶ୍ଚିତତାର ସ୍ପର୍ଶ ।

କେବଳ ସେତିକି ନୁହେଁ, ଫକୀରମୋହନ ପ୍ରବର୍ତ୍ତିତ ଏକ ଅଭିନବ ଗଦ୍ୟରୀତିର ଉଦ୍ଭବ ଓ ବିକାଶରେ ଆଉ କେତେକ ନିକଳ୍ପ ମୂଳ ବା ପ୍ରେରଣାର ଉତ୍ସ ଆବିଷ୍କାର କରିଥିବାରୁ ସେ ଉପରେ ସୂଚିତ ପ୍ରକୃତ ମୂଳ ବା ପ୍ରେରଣା-ଉତ୍ସର ଗୁରୁତ୍ୱକୁ ମଧ୍ୟ ଆହୁରି ହ୍ରାସ କରିପକାଇଛନ୍ତି । ଉଦାହରଣ ସ୍ୱରୂପ ଉପରେ ଉଦ୍ଧୃତ ବାକ୍ୟର ଠିକ ପର ବାକ୍ୟରେ, "ପୁଣି ହୋଇପାରେ ସେତେବେଳେ ଗଦ୍ୟ ଲୋକରେ ପ୍ରଚଳିତ ଓ ଆଦୃତ ନଥିବା ହେତୁ ଏହାକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଫକୀରମୋହନ ଲୋକସାଧାରଣଙ୍କ ସହଜବୋଧ୍ୟ ଏକ ରୀତିଶୈଳୀ (ଗଦ୍ୟଶୈଳୀ ?) ଅନୁସରଣ କରିଥିଲେ ।" ବୋଲି କହି ସେ ଉପରୋକ୍ତ ପ୍ରଶ୍ନଟିର ଆଉ ଏକ ବିକଳ୍ପ ଉତ୍ତର ଦେଇଥିଲେ ; ଆଉ ଏକ ବିକଳ୍ପ ମୂଳ ବା ପ୍ରେରଣାଉତ୍ସ ଦର୍ଶାଇ ଥିଲେ । ଏଇ ଦୃଷ୍ଟିକୋଣଟିର କିଛି ଉପଯୋଗିତା ହୁଏତ ଅଛି ଓ ଫକୀରମୋହନଙ୍କର ସେପରି ଉଦ୍ଦେଶ୍ୟ ମଧ୍ୟ ଥାଇପାରେ । ସେ କ୍ଷେତ୍ରରେ ମାତ୍ର ସହାୟକ ବା ପରିପୂରକ ଭୂମିକା ସ୍ୱୀକାର୍ଯ୍ୟ ।

ଅନ୍ୟତ୍ର ମଧ୍ୟ ସେ ତତ୍କାଳୀନ ପରିବେଶ ସହ ଫକୀରମୋହନଙ୍କ ଗଦ୍ୟରୀତିର ସମ୍ପର୍କ ଆବିଷ୍କାର କରିବାକୁ ଯାଇ ପୂର୍ବୋକ୍ତ ପ୍ରଶ୍ନଟିର ଆଉ ଏକ ବିକଳ୍ପ ମୂଳ ବା ପ୍ରେରଣା-ଉତ୍ସର ସନ୍ଧାନ ଦେଇଛନ୍ତି । ସେ ପ୍ରସଙ୍ଗରେ ୪ । ୧ । ୧୮୭୧ ରେ ବଙ୍ଗର ଲେଫ୍‌ଟ୍‌ନାଣ୍ଟ ଗଭର୍ଣ୍ଣର ସାର ଜର୍ଜ କାମ୍ପ୍‌ବେଲ୍ ଦେଇଥିବା ଏକ ଆଦେଶର ଉଲ୍ଲେଖ କରି କହନ୍ତି "ସାର ଜର୍ଜ ନିଜ ମନ୍ତବ୍ୟରେ କହିଥିଲେ, ବିଜାତୀୟ ଭାଷା ବାଦ ଦେଇ, ଦାଣ୍ଡରେ ଯେଉଁ ଭାଷା ଲୋକ ବୁଝି ପାରିବେ, ତାହା ହିଁ ପ୍ରକୃତ ଶୁଦ୍ଧ ଭାଷା ଓ ସେହି ଭାଷାରେ ଲିଖିତ ସାହିତ୍ୟ ଏକା ଶୁଦ୍ଧ ସାହିତ୍ୟ ।" କଚେରୀମାନଙ୍କରେ କେବଳ ଏହି ପ୍ରକାର-ଶୁଦ୍ଧ ଭାଷା ଓ ଇଂରେଜୀ ବ୍ୟବହୃତ ହୋଇପାରିବ ବୋଲି ସାର ଜର୍ଜ ଆଲୋଚିତ ଇସ୍ତାହାରରେ ନିର୍ଦ୍ଦେଶ ଦେଇଥିଲେ । ପୁଣି ଶିକ୍ଷା ବିଭାଗର ଡ଼ିରେକ୍‌ଟରଙ୍କୁ ମଧ୍ୟ ଆଦେଶ ଦିଆଯାଇଥିଲା ଯେ, ସେ କେବଳ ଏହିପରି ଭାଷାରେ ଲିଖିତ ବହିକୁ ପାଠ୍ୟପୁସ୍ତକ ରୂପେ

ଅନୁମୋଦନ କରିବେ । ସାର ଜର୍ଜଙ୍କର ଏ ପ୍ରକାର ଆଦେଶ ଓଡ଼ିଶାର ଶିକ୍ଷିତ ସମ୍ପ୍ରଦାୟରେ ଏକ ବିକ୍ଷୋଭ ସୃଷ୍ଟି କରିଥିଲା । ........... ଯାହାହେଉ ସେହି ଦିନ ଠାରୁ ଓଡ଼ିଆ ଗଦ୍ୟ ରଚନାରେ ଦୁଇଗୋଟି ସ୍ପଷ୍ଟରୀତି ପ୍ରକାଶ ପାଇଲା–– ଗୋଟିଏ ରୀତି ହେଲା ଦାଣ୍ଡରେ ଯେଉଁ ଭାଷାରେ ଲୋକେ କଥାବାର୍ତ୍ତା କରନ୍ତି, ସେହି ଭାଷାରେ ଓ ଆଉଟି ଓଡ଼ିଆ ତତ୍ସମ ଓ ତଦ୍ଭବ ଶବ୍ଦ ପ୍ରୟୋଗରେ ।'' ଇତ୍ୟାଦି (ତତ୍ରୈବ, ପୃ–୮) । କିନ୍ତୁ ବଙ୍ଗର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କର ଏକ ଆଦେଶ ହେତୁ ହିଁ ଫକୀରମୋହନ ଲୋକ ପ୍ରଚଳିତ ଭାଷାରେ ସର୍ଜନଶୀଳ ସାହିତ୍ୟ ସାଧନାରେ ବ୍ରତୀ ହେଲେ ବୋଲି କହିବା ଏକ କଷ୍ଟକଳ୍ପିତ ସିଦ୍ଧାନ୍ତ ; ସହଜରେ ବିଶ୍ୱାସଯୋଗ୍ୟ ନୁହେଁ ଓ ଅବିଶ୍ୱାସ୍ୟ । ତାପରେ ଏ ଆଦେଶ ସହ ଫକୀରମୋହନ କେତେଦୂର ପରିଚିତ ଥିଲେ ଓ ତାହା ତାଙ୍କ ମନରେ କେତେଦୂର ରେଖାପାତ କରିଥିଲା ବା ତାର ସମ୍ଭାବନା କେତେ ଥିଲା, ପୁଣି ଏ ଆଦେଶ ଫଳରେ ୧୮୭୧ର ଡ଼ିସେମ୍ବର ପରଠାରୁ କିପରି ଓଡ଼ିଆ ଗଦ୍ୟରଚନା କ୍ଷେତ୍ରରେ ଦୁଇଗୋଟି ସ୍ପଷ୍ଟ ରୀତି ପ୍ରକାଶ ପାଇଲା ସେସବୁ ଉପଯୁକ୍ତ ତଥ୍ୟ ପ୍ରମାଣ ସାହାଯ୍ୟରେ ଦେଖାଇ ଦେବା ତ ଦୂରର କଥା ସେ ବିଷୟରେ ସୁରେନ୍ଦ୍ର ମହାନ୍ତି କୌଣସି ଆଲୋଚନା ମଧ୍ୟ କରିନାହାଁନ୍ତି । ତେଣୁ ଏ ଦୃଷ୍ଟିକୋଣ ଓ ଫକୀରମୋହନ ପ୍ରବର୍ତ୍ତିତ ଗଦ୍ୟରୀତିର ଉଦ୍ଭବ ଓ ବିବର୍ତ୍ତନରେ ସାର ଜର୍ଜଙ୍କର ଆଦେଶର ସମ୍ଭାବ୍ୟ ଭୂମିକାର ଗୁରୁତ୍ୱ ଗ୍ରହଣୀୟ ନୁହେଁ ।

ପରେ ସେ ପୂର୍ବୋକ୍ତ ପ୍ରଶ୍ନଟିର ପୁଣି ଏକ ବିକଳ୍ପ ଉତ୍ତର ଦେଇ କୁହନ୍ତି, ''ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟି ବାସ୍ତବବାଦ ଦ୍ୱାରା ପ୍ରଭାବିତ ଥିଲା । ତେଣୁ ଚରିତ୍ରଚିତ୍ରଣ ଓ ପରିବେଶକୁ ବାସ୍ତବତାର ପୁଟ ଦେଇ ପରିସ୍ଥିତି ଓ ପୃଷ୍ଠଭୂମି ସହିତ ସାମଞ୍ଜସ୍ୟସମ୍ପନ୍ନ ବାତାବରଣ ସୃଷ୍ଟି କରିବା ପାଇଁ ଫକୀର-ମୋହନ ଉପଯୋଗୀ ଭାଷା ଓ ଶୈଳୀ ବ୍ୟବହାର କରିଥିଲେ ।'' (ତତ୍ରୈବ, ପୃ–୧୦) । କିନ୍ତୁ ଫକୀରମୋହନଙ୍କ ଗଦ୍ୟରୀତିର ମୂଳ ବା ପ୍ରେରଣାର ଉତ୍ସ ଏଠାରେ ମଧ୍ୟ ନଥିଲା ।

ମୋଟ ଉପରେ ଫକୀରମୋହନ ପ୍ରବର୍ତ୍ତିତ ଅଭିନବ ଗଦ୍ୟରୀତିର ପ୍ରକୃତ ମୂଳ ବା ପ୍ରେରଣା ଉତ୍ସକୁ ସୁରେନ୍ଦ୍ର ମହାନ୍ତି ପ୍ରାୟ ଆବିଷ୍କାର କରିଥିଲେ ମଧ୍ୟ ତଥ୍ୟ ପ୍ରମାଣ ତଥା ବ୍ୟାଖ୍ୟା ଓ ବିଶ୍ଳେଷଣ ଅଭାବରୁ ତାଙ୍କ ଆବିଷ୍କାର ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହୋଇନପାରି ସାଧାରଣ, ଅସ୍ପଷ୍ଟ, ସୂଚନାମୂଳକ, ଆନୁମାନିକ, ଅନିଶ୍ଚିତ

ଓ ଉପର ଠାଉରିଆ ତ ହୋଇ ପଡ଼ିଛି, ସେଥିରେ ପୁଣି ତାଙ୍କର ଆଉ କେତେକ ବିକଳ୍ପ ମୂଳ ବା ପ୍ରେରଣାଉତ୍ସକୁ ଆବିଷ୍କାର କରିବାର ପ୍ରଚେଷ୍ଟା ମଧ୍ୟରେ ପ୍ରକୃତ ମୂଳ ବା ପ୍ରେରଣାଉତ୍ସର ସ୍ୱତନ୍ତ୍ର ସ୍ଥିତି ଓ ଗୁରୁତ୍ୱ ହଜିଯାଇଛି ।

୩ . ୫ . ଫକୀରମୋହନ ସାହିତ୍ୟର ଆଉ ଜଣେ ବିଶିଷ୍ଟ ସମାଲୋଚକ ଜନ୍ ଭିକ୍‌ଟର ବୋଲ୍‌ଟନ (J. V. Boulton) ଏ ସମ୍ପର୍କରେ ଅଧିକ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ଦେଇ କହନ୍ତି, "ଏଇ ଭାଷା ଆନ୍ଦୋଳନର ଗୋଟିଏ ଅଦ୍ଭୁତ ଫଳ ସ୍ୱରୂପ ଫକୀରମୋହନଙ୍କ ଶୈଳୀ ବଦଳି ଗଲା । ଯୌବନ କାଳରେ ଫକୀର ମୋହନ ବିଦ୍ୟାସାଗରଙ୍କ ଜୀବନଚରିତ ବଙ୍ଗଳାରୁ ଓଡ଼ିଆରେ ଅନୁବାଦ କରିଥିଲେ । ସେଇ ଅନୁବାଦର ଭୂମିକାରେ ଫକୀରମୋହନ ଲେଖି ପକାଇଥିଲେ ଯେ, ଓଡ଼ିଆ ବଙ୍ଗଳା ଭିତରେ ଖୁବ୍ ଅଳ୍ପ ତଫାତ ଅଛି । ମୁଷ୍ଟିମେୟ ବିଭକ୍ତି ଓ ପ୍ରତ୍ୟୟ ବଦଳାଇ ଦେଲେ ବଙ୍ଗଳା ଓଡ଼ିଆ ହୋଇଯାଏ । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଫକୀରମୋହନଙ୍କ ଏଇ ଉକ୍ତି ତାଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକରେ ଉଦ୍ଧାର କରିଥିଲେ । ଉକ୍ତିଟି କେବଳ ସାଧୁ ଭାଷାରେ ପ୍ରଯୁଜ୍ୟ । ଏଇ ଉକ୍ତି କରିଥିବାର ଫକୀରମୋହନଙ୍କ ଅନୁତାପ ହୋଇଥିବ । କାହିଁକି ନା ସାଧୁଭାଷା ଛାଡ଼ି ସେ 'ଛଅମାଣ ଆଠଗୁଣ୍ଠ'ରେ କେବଳ ଘରେଇ ଓଡ଼ିଆ ବ୍ୟବହାର କରିଥିଲେ" (ବୋଲଟନ୍, ଜେ: ଭି:, ୧୯୭୬, ପୃ–୧୦) । ବୋଲଟନ୍‌ଙ୍କ ଏ ସିଦ୍ଧାନ୍ତ ଓ ଏ ଆବିଷ୍କାର ବହୁ ପରିମାଣରେ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ହୋଇଥିଲେ ମଧ୍ୟ ପର୍ଯ୍ୟାପ୍ତ ନୁହେଁ । ପୁଣି ଆଉ କେତେକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତଥ୍ୟକୁ ବିଚାରକୁ ନିଆଯାଇ ନ ଥିବାରୁ ତଥା ଅଧିକ ବ୍ୟାଖ୍ୟା ଓ ବିଶ୍ଳେଷଣ ଅଭାବରୁ ଅଧାପନ୍ତରିଆ ଓ ଏକପାଖିଆ ହୋଇଯାଇ ଓ ଅପୂର୍ଣ୍ଣାଙ୍ଗ ରହିଯାଇ ଆଂଶିକ ଭାବରେ ପ୍ରାମାଣିକ ଚିତ୍ର ପ୍ରଦାନ କରେ ।

୩ . ୬ . ନିମ୍ନରେ ଫକୀରମୋହନଙ୍କ ପ୍ରବର୍ତ୍ତିତ ଅଭିନବ ଗଦ୍ୟରୀତି ସହ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ଯୋଗସୂତ୍ର କିପରି ଅତ୍ୟନ୍ତ ନିବିଡ଼, ଓତପ୍ରୋତ ଓ ଆତ୍ମିକ ତା ଅଧିକ ତଥ୍ୟ ପ୍ରମାଣ ତଥା ବ୍ୟାଖ୍ୟା ଓ ବିଶ୍ଳେଷଣ ଭିତର ଦେଇ ଆବିଷ୍କାର କରିବାର ପ୍ରଚେଷ୍ଟା କରାଯିବ । ପୁଣି ତାହାକୁ ଉଦାହରଣ ସ୍ୱରୂପ ଉପସ୍ଥାପନ କରି ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସୂଚାଇ ଦିଆଯିବ ।

(୪)

୪ . ୧ . ଫକୀରମୋହନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ 'ଜୀବନଚରିତ'କୁ ବଙ୍ଗଳାରୁ ଓଡ଼ିଆକୁ ଅନୁବାଦ କରି ୧୮୬୬ରେ ପ୍ରକାଶ କରିଥିଲେ । ଏଇ ଅନୂଦିତ ପୁସ୍ତକର ଭୂମିକାରେ ଫକୀରମୋହନ ଲେଖିଥିଲେ, "ଏକଥା ଯଥାର୍ଥ ଅଟେ ଯେ କେବଳ କ୍ରିୟାମାତ୍ର ପରିବର୍ତ୍ତନ କରିଦେଲେ ବାଙ୍ଗାଲ ଉଡ଼ିଆ ହୋଇଯାଏ ।" (ଭଟ୍ଟାଚାର୍ଯ୍ୟ, କାନ୍ତିଚନ୍ଦ୍ର, ୧୮୭୦, ପୃ-୨୧) । ଅନୁବାଦ ଫକୀରମୋହନଙ୍କ ଏ ଉକ୍ତିରୁ ଏ ପୁସ୍ତକର ଭଷା କେତେଦୂର ବଙ୍ଗଳା ପ୍ରଭବିତ ଥିବ ଓ ଅନୁବାଦ କାର୍ଯ୍ୟରେ ଫକୀରମୋହନଙ୍କ ଦୂର୍ବଳତା କେଉଁଠି ଥିବ ତା ସହଜରେ ଅନୁମାନ କରାଯାଇପାରେ । ଏଠାରେ ସ୍ମରଣ କରଯାଇପାରେ ଯେ ପ୍ରଥମେ ଫକୀରମୋହନ ବଙ୍ଗଳା ଭଷାରେ ମଧ୍ୟ କିଛି କିଛି ଲେଖାଲେଖି କରୁଥିଲେ । ମୋଟ ଉପରେ ଏଇ ଅନୂଦିତ ପୁସ୍ତକର ଭଷା ବଙ୍ଗଭଷା ଦ୍ୱାରା ବିଶେଷ ଭବରେ ପ୍ରଭବିତ ହୋଇ ଏକ "ମିଶ୍ରିତ ଭଷା" ହୋଇ ପଡ଼ିଥିଲା । ଏହି ପୁସ୍ତକ (ଚରିତାବଳୀ ?) ର ଭଷାକୁ ଏ କାରଣରୁ ଉତ୍କଳ ଦୀପିକାର ୧୮୬୭ ମାର୍ଚ୍ଚ ତା ୯ ରିଖର ସଂଖ୍ୟାରେ ଜଣେ ପତ୍ରଲେଖକ ତୀବ୍ର ସମାଲୋଚନା କରିଥିଲେ । ସେ ପ୍ରସଙ୍ଗରେ କୁହାଯାଇଥିଲା, "କିନ୍ତୁ ଯେପରି ଉତ୍କଳ ଭଷାର ଉନ୍ନତି ହେବ ଭଦ୍ରଲୋକଙ୍କ ମଧ୍ୟରେ ଯେଉଁ ଭଷା ପ୍ରଚଳିତ ଅଛି ତହିଁରୁ ସାଧ୍ୟାନୁସାରେ ବିଜାତୀୟ ଶବ୍ଦ ବିଦୂରିତ କରି ତାହା ପରିବର୍ତ୍ତେ ନଗର ଦୂରବର୍ତ୍ତୀ ବ୍ରାହ୍ମଣ ଶାସନରେ ଓ କରଣାଦି ଭଦ୍ରଲୋକଙ୍କ ବସତିରେ ବ୍ୟବହୃତ ଶବ୍ଦମାନ ପ୍ରୟୋଗ କରିବା ଓ ସମୟ ବିଶେଷରେ କୌଣସି ଶବ୍ଦର ଅଭବ ହେଲେ ଭରତବର୍ଷୀୟ ଭଷାମାନଙ୍କ ଜନନୀ ସଂସ୍କୃତ ଭଷାରୁ ସେହି ସେହି ଶବ୍ଦ ଆଣି ପ୍ରୟୋଗ କରିବା ଅଥବା ସ୍ଥାପିତବ୍ୟ ଭଷାସଙ୍ଗେ ଚଙ୍ଗରଜୀ (ଇଙ୍ଗରଜୀ ?) ପ୍ରଭୃତି ବିଦେଶୀୟ ଶବ୍ଦ ମିଳି ଯାଉଥିଲେ ତାକୁ ବ୍ୟବହାର କରିବା ତଥା ନୂତନ ଶବ୍ଦ ସୃଷ୍ଟି କରିବା ତାହା କରିବା ଉଚିତ । ନଗରରେ ନାନା ଜାତୀୟ ଓ ନାନା ଧର୍ମାବଲମ୍ବୀ ଲୋକଙ୍କ ସମାଗମ ଥିବାରୁ ସେହି ସ୍ଥାନରେ ଏକ ପ୍ରକାର ମିଶ୍ରିତ ଭଷା ହୋଇଯାଏ ଓ ଗ୍ରାମରେ ଯଥାର୍ଥ ଭଷା ପ୍ରଚଳିତ ଥାଏ । ସଂସ୍କୃତରୁ ସବୁ ଭରତଭଷା ଉତ୍ପନ୍ନ ହୋଇଥିବାରୁ ଅଭବ ପକ୍ଷରେ କ୍ୱଚିତ୍ ଲଳିତ୍ୟ ସଂସ୍ଥାପନ ନିମନ୍ତେ ଅବିଦିତ (ଅବିହିତ ?) ହୋଇ ନ ପାରଇ । ମେଘ, ଅଫିସ, ଅଦାଲତ, ଦେଓ୍ୱାନି ପ୍ରଭୃତି ଚଳିତ ବିଜାତୀୟ ଶବ୍ଦ ପ୍ରୟୋଗ କଲେ ହେଁ କୌଣସି ହାନୀ ହୋଇ ନ ପାରେ । ନୂତନ ଶବ୍ଦ ସୃଷ୍ଟିରେ ଓ ଭିନ୍ନ ଦେଶୀୟ ଶବ୍ଦ

ପ୍ରୟୋଗରେ ସମାନ ଫଳ କିନ୍ତୁ ଆଦିମରେ ଜାତ୍ୟାଭିମାନ ରହେ ।" (ମହାନ୍ତି, ବଂଶୀଧର, ୧୯୮୯, ପୃ–୨୦୮-୦୯) । ଆହୁରି ମଧ୍ୟ ଏଥିରେ ଥିବା ଭାଷାଗତ ଦୋଷର ଉଦାହରଣ କେତୋଟି ଦିଆଯାଇ କୁହାଯାଇଥିଲା, "........ଅଳ୍ପ ବୟସ୍କ ଭଦ୍ର ସନ୍ତାନମାନଙ୍କୁ ଏ ପ୍ରକାର ଗ୍ରନ୍ଥ ପଢାଇ ଭାଷାରେ ଏ ପ୍ରକାର ବିଜାତୀୟ ଜ୍ଞାନ ଜନ୍ମାଇ ଦେବାରୁ ତାଙ୍କୁ ନ ପଢାଇବା ଶ୍ରେୟସ୍କର ।" (ତତ୍ରୈବ, ପୃ–୨୧୦) ।

ଏ ସମାଲୋଚନାର ଆଭିମୁଖ୍ୟ ସ୍ପୃହଣୀୟ ଓ ଗୁରୁତ୍ୱପୂର୍ଣ୍ଣ ତଥା ଏଥିରେ ଥିବା, "ନଗରରେ ନାନାଜାତୀୟ ଓ ନାନା ଧର୍ମାବଲମ୍ବୀ ଲୋକମାନଙ୍କ ସମାଗମ ଥିବାରୁ ସେହି ସ୍ଥାନରେ ଏକ ପ୍ରକାର ମିଶ୍ରିତ ଭାଷା ହୋଇଯାଏ ଓ ଗ୍ରାମରେ ଯଥାର୍ଥ ଭାଷା ପ୍ରଚଳିତ ଥାଏ" ପରି ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥିଲେ ହେଁ ଏହା ଫକୀରମୋହନଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା କି ନାହିଁ କହିବା ସମ୍ଭବ ନୁହେଁ । ତେବେ ଯଦି ଏହା ଫକୀରମୋହନଙ୍କ ଦୃଷ୍ଟି ଆକର୍ଷଣ କରି-ପାରିଥିବ ତା ସତ୍ତ୍ୱେ ସେତେବେଳେ ଏହା ତାଙ୍କ ମନରେ ରେଖାପାତ କରିଥିବାର ବା ତାଙ୍କ ଉପରେ ପ୍ରଭାବ ପକାଇଥିବାର ମନେ ହୁଏ ନାହିଁ କାରଣ ଏହା ପରେ ୧୮୬୯ରେ ପ୍ରକାଶିତ ତାଙ୍କ "ଭାରତ ବର୍ଷର ଇତିହାସ" (୧ମ ଭାଗ) ର ଭାଷାରେ ମଧ୍ୟ ବଙ୍ଗ ଭାଷାର ବିଶେଷ ପ୍ରଭାବ ଅବ୍ୟାହତ ଓ ଅପ୍ରଚ୍ଛନ୍ନ ରହିଥିଲା ଓ ସେଥିପାଇଁ ଫକୀରମୋହନ ସମାଲୋଚିତ ହୋଇଥିଲେ । କିନ୍ତୁ ତା ତ ପରର କଥା ତା ପୂର୍ବରୁ ଓଡ଼ିଶାରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟର ଆରମ୍ଭ ଓ ପରିସମାପ୍ତି ହୋଇ ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ ମଧ୍ୟ ହୋଇ ସାରିଥିଲା । ବର୍ତ୍ତମାନ ସେ ସମ୍ପର୍କରେ ସାମାନ୍ୟ ସୂଚନା ଦେବା ଆବଶ୍ୟକ ।

୪ . ୨ . ୧୮୬୫ରେ ଓଡ଼ିଶାକୁ ନବାଗତ କମିଶନର ରେଭେନ୍‌ସା ଓଡ଼ିଶାର ଶିକ୍ଷାବିଷୟକ ୧୮୬୪-୬୫ର ବାର୍ଷିକ ରିପୋର୍ଟରେ ଓଡ଼ିଶାର ବିଦ୍ୟାଳୟର ଉଚ୍ଚଶ୍ରେଣୀରେ ଓଡ଼ିଆଭାଷା ଅବହେଳିତ ହେଉଥିବାରୁ ସେଥିପ୍ରତି ବଙ୍ଗସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ତଥା ଯେତେଦୂର ସମ୍ଭବ ଓ ଯଥାଶୀଘ୍ର ବଙ୍ଗଭାଷା ପରିବର୍ତ୍ତେ କେବଳ ଓଡ଼ିଆ ଭାଷା ପ୍ରଚଳନର ସୁପାରିଶ କରି ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବ ଉପରେ ଅଭିମତ ଦେବାକୁ ବଙ୍ଗସରକାରଙ୍କ ଦ୍ୱାରା ଆଦିଷ୍ଟ ହୋଇ ଶିକ୍ଷାବିଭାଗର ଡ଼ିରେକ୍‌ଟର ଦକ୍ଷିଣ-ପଶ୍ଚିମ ଶିକ୍ଷାଚକ୍ରର ଇନ୍‌ସପେକ୍‌ଟରଙ୍କ ମତାମତ ଲୋଡ଼ିଥିଲେ । ସେତେବେଳେ ଓଡ଼ିଶାର ବିଦ୍ୟାଳୟ-

ଗୁଡ଼ିକ ଦକ୍ଷିଣ-ପଶ୍ଚିମ ଶିକ୍ଷାଚକ୍ରର ଅନ୍ତର୍ଗତ ଥିଲ । ଇନ୍‌ସପେକ୍‌ଟର କମିଶନରଙ୍କ ପ୍ରସ୍ତାବକୁ ବିରୋଧ କରି ବଙ୍ଗଭାଷା ପ୍ରଚଳନକୁ ଆହୁରି ପ୍ରସାରିତ କରିବାର ପ୍ରତି ପ୍ରସ୍ତାବ ଦେଇଥିଲେ । ଡ଼ିରେକ୍‌ଟର ମଧ୍ୟ ଇନ୍‌ସପେକ୍‌ଟରଙ୍କ ପ୍ରତି-ପ୍ରସ୍ତାବକୁ ଦୃଢ ସମର୍ଥନ ଜଣାଇ ବଙ୍ଗସରକାରଙ୍କୁ ସୁପାରିଶ କରିଥିଲେ । ବଙ୍ଗସରକାର ଡ଼ିରେକ୍‌ଟର-ସମର୍ଥିତ ଇନ୍‌ସପେକ୍‌ଟରଙ୍କ ପ୍ରତି-ପ୍ରସ୍ତାବକୁ କମିଶନରଙ୍କ ନିକଟକୁ ୧୮୬୭ର ଡ଼ିସେମ୍ବର ମାସରେ ପଠାଇ ପ୍ରଶ୍ନଟି ଉପରେ ପୁଣି ଥରେ ତାଙ୍କ ସୁଚିନ୍ତିତ ଅଭିମତ ଲୋଡ଼ିଲେ । ଇନ୍‌ସପେକ୍‌ଟର ଓ ଡ଼ିରେକ୍‌ଟରଙ୍କ ପ୍ରତି-ପ୍ରସ୍ତାବର ପ୍ରତିକ୍ରିୟା ଓ ପ୍ରତିବାଦରେ ଗୌରୀଶଙ୍କର ରାୟ ଓ ତାଙ୍କ ଦ୍ୱାରା ସମ୍ପାଦିତ 'ଉତ୍କଳ ଦୀପିକା'ର ନେତୃତ୍ୱରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ଆରମ୍ଭ ହୁଏ ୧୮୬୮ର ଜାନୁଆରୀ ମାସରେ । ଏହି ଆନ୍ଦୋଳନର ଅଙ୍ଗ ସ୍ୱରୂପ କଟକରେ ଏକ ସଭା ହୋଇ କମିଶନରଙ୍କୁ ଏକ ଆବେଦନ ଦେବାର ସ୍ଥିର ହୁଏ ଓ ସେହି ବର୍ଷ ଏପ୍ରିଲ ମାସରେ ଦିଆହୁଏ । ଏ ମଧ୍ୟରେ ଇନ୍‌ସପେକ୍‌ଟର ନିଜର ପୂର୍ବମତ ପରିବର୍ତ୍ତନ କରି ଓଡ଼ିଆ ଭାଷା ପ୍ରଚଳନର ସପକ୍ଷତା ଦୃଢ଼ ଭାବରେ କରି ଏକ ଚିଠି ଡ଼ିରେକ୍‌ଟରଙ୍କୁ ଲେଖିଲେ ଓ ତାର ଏକ କିତା ନକଲ ମଧ୍ୟ କମିଶନରଙ୍କୁ ଦେଲେ । କମିଶନର ପୂର୍ବୋକ୍ତ ଆବେଦନ, ଇନ୍‌ସପେକ୍‌ଟରଙ୍କ ପରିବର୍ତ୍ତିତ ମତ ଓ ଓଡ଼ିଶାର ତିନି ଜିଲ୍ଲାର କଲେକ୍‌ଟରଙ୍କ ଅଭିମତକୁ ବିଚାରକୁ ନେଇ ସେ ବର୍ଷର ମେ' ମାସରେ ନିଜର ସୁଚିନ୍ତିତ ଅଭିମତ ବଙ୍ଗସରକାରଙ୍କୁ ଜଣାଇ ଦେଇଥିଲେ । ସେ ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନର ଦୃଢ ବିରୋଧ ଓ ଓଡ଼ିଆ ଭାଷା ପ୍ରଚଳନର ଦୃଢ ସମର୍ଥନ କରିଥିଲେ । ବଙ୍ଗସରକାର କମିଶନରଙ୍କ ଏଇ ସୁଚିନ୍ତିତ ଅଭିମତ ଡ଼ିରେକ୍‌ଟରଙ୍କୁ ଜଣାଇ ପୁଣି ଥରେ ତାଙ୍କ ମତାମତ ଆହ୍ୱାନ କଲେ । ଏଇପରି ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟର ପରିସମାପ୍ତି ଘଟେ ।

ଏହା ପରେ ଓଡ଼ିଶାକୁ ପ୍ରନ୍ତତ୍ତ୍ୱ ଅନୁସନ୍ଧାନରେ ଆସିଥିବା ରାଜେନ୍ଦ୍ରଲାଲ ମିତ୍ର ଏଇ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ପ୍ରତିକ୍ରିୟାରେ ଓଡ଼ିଆ ଭାଷାବିରୋଧୀ ଏକ ପ୍ରତି-ଆନ୍ଦୋଳନ ଗଢି ତୋଳିବାର ଉଦ୍ୟମ କରନ୍ତି । ଏଇ ପ୍ରତି-ଆନ୍ଦୋଳନର ପ୍ରଥମ ପଦକ୍ଷେପ ସ୍ୱରୂପ ସେଇ ୧୮୬୮ର ଡ଼ିସେମ୍ବର ମାସରେ କଟକ ଡ଼ିବେଟିଂ କ୍ଲବରେ ପଠିତ 'ଦେଶପ୍ରେମ' (Partotism) ବିଷୟକ ପ୍ରବନ୍ଧ ଉପରେ ମତାମତ ଦେବାକୁ ଯାଇ ସେ କହିଥିଲେ ଯେ ଓଡ଼ିଆମାନେ ସେମାନଙ୍କ ପ୍ରାଦେଶିକ ବୋଲି ବା ଉପଭାଷା ପ୍ରତି ମୋହ ହେତୁ ତାହାକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ଦେବାକୁ

ଇଚ୍ଛାକରି ନିଜର ଅନିଷ୍ଟ ସାଧନ କରୁଛନ୍ତି ( "......... the injury which are being inflicted on the. Uriya race by their attachment to a provincial patois which they wish to exalt into a distinct language." See Beames, 1870, P-20) । ତେଣୁ ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ, ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗଭାଷା ପ୍ରଚଳ କରିବାର ଚେଷ୍ଟା କରିବେ, କାରଣ ତାହାଙ୍କ ମତରେ ଯେତେକାଳ ଉତ୍କଳଭାଷା ଉଠିଯାଇ ନାହିଁ ତେତେକାଳ ଏ ଦେଶର ଉନ୍ନତି ହେବା ଅସମ୍ଭବ ।" (ଉତ୍କଳ ଦୀପିକା, ୧୩ । ୩ । ୧୮୬୯, ଦ୍ର: ପଟ୍ଟନାୟକ, ସୁଧାକର, ୧୯୭୨, ପୃ–୫୩୧) । ଓଡ଼ିଶାର ହୃତପିଣ୍ଡ ସ୍ୱରୂପ କଟକରେ ରାଜେନ୍ଦ୍ର ଲାଲଙ୍କ ଏହି ସ୍ୱର୍ବିତ ଘୋଷଣା ଓ ତାଙ୍କ ନେତୃତ୍ୱରେ ଏକ ପ୍ରତି ଆନ୍ଦୋଳନ ଠିଆ କରାଇବା ଉଦ୍ୟମର ପ୍ରତିକ୍ରିୟାରେ ସ୍ତିମିତ ହୋଇ ପଡ଼ିଥିବା ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ ହେଲା । 'ଉତ୍କଳ ଦୀପିକା'ର ୧୩ । ୩ । ୧୮୬୯ ଓ ୨୦ । ୩ । ୧୮୬୯ର ସଂଖ୍ୟା ଦୁଇଟିରେ ରାଜେନ୍ଦ୍ରଲାଲଙ୍କ ବକ୍ତବ୍ୟର ତୀବ୍ର ସମାଲୋଚନାତ୍ମକ ପ୍ରତିବାଦ ପ୍ରକାଶିତ ହେଲା (ଅଧିକ ବିବରଣୀ ପାଇଁ ଦ୍ରଷ୍ଟବ୍ୟ :- ଦାଶ, ଗଗନେନ୍ଦ୍ର ନାଥ, ୧୯୮୬, ୧୯୮୮, ୧୯୮୯ ଓ ୧୯୯୦) ।

ଏଇ ପରିସ୍ଥିତିରେ, ଏଇ ଉତପ୍ତ ବାୟୁମଣ୍ଡଳ ମଧ୍ୟରେ ୧୮୬୯ର ବୋଧହୁଏ ମାର୍ଚ୍ଚ ବା ଏପ୍ରିଲ ମାସରେ ଫକୀରମୋହନଙ୍କ 'ଭାରତବର୍ଷର ଇତିହାସ' (୧ମ ଭାଗ) ପ୍ରକାଶ ପାଇଲା । ଏ ପୁସ୍ତକରେ ବଙ୍ଗଭାଷାର ପ୍ରଭାବ ଅପ୍ରତିହତ ଓ ଅବ୍ୟାହତ ଥିଲା ବୋଲି 'ଉତ୍କଳ ଦୀପିକା'ର ୧୦ । ୪ । ୧୮୬୯ ର ସଂଖ୍ୟାରେ ପ୍ରକାଶିତ ଏକ ସମୀକ୍ଷାରୁ ଜଣାଯାଏ । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ନେତୃତ୍ୱ ଦେଉଥିବା 'ଉତ୍କଳ ଦୀପିକା' ସ୍ତମ୍ଭରେ ପ୍ରକାଶିତ ଏଇ ସମୀକ୍ଷାରେ ଫକୀରମୋହନଙ୍କ ଭାଷାକୁ ତୀବ୍ର ସମାଲୋଚନା କରି କୁହାଯାଇଥିଲା, 'ନୂତନ ପୁସ୍ତକମାନ ମୁଦ୍ରିତ ଓ ପ୍ରଚାର ହେବାର ଦେଖି ବଡ଼ ଆନନ୍ଦ ବୋଧ ହୁଅଇ ; କିନ୍ତୁ ପକ୍ଷାନ୍ତରେ ଏ ସମସ୍ତ ପୁସ୍ତକ ରଚନା ପାଠକରି ଅତ୍ରତ୍ୟ ଲୋକମାନେ କ୍ରମେ ଉତ୍କଳ ଭାଷାକୁ ପାସୋରି ଏକ ବିଜାତୀୟ ବଙ୍ଗୋତ୍କଳ ମିଶ୍ରିତ ଭାଷା ଶିକ୍ଷା କରିବେ–– ଏହା ମନେ ପଡ଼ିବାରୁ ଅପାର ଦୁଃଖ ଜାତ ହୁଅଇ । ଫଳତଃ ବାବୁ ଫକୀରମୋହନ ସେନାପତିଙ୍କ ପୁସ୍ତକ ପଠନ ଦ୍ୱାରା ଏ ଦୁଇ

ପରସ୍ପର ବିରୋଧୀ ଭାବ ଆମ୍ଭମାନଙ୍କ ଚିତ୍ତରେ ଜନ୍ମିବାରୁ କାତର ହୋଇଅଛୁଁ । ... ... ଗ୍ରନ୍ଥକର୍ତ୍ତା ବହୁ ଯତ୍ନ ଓ ପରିଶ୍ରମ ସହକାରେ ଏ ଗ୍ରନ୍ଥର ବିଷୟମାନ ସଙ୍କଳନ କରିଅଛନ୍ତି ... ... ବିଶେଷରେ ଉତ୍କଳ ଭାଷା ରଚିତ ଇତିହାସର ଏଇ ଖଣ୍ଡି ଆଦ୍ୟ ଆଦ୍ୟ ପୁସ୍ତକ ଓ ଏଥିପାଇଁ ଗ୍ରନ୍ଥକର୍ତ୍ତା ଆମ୍ଭମାନଙ୍କର କୃତଜ୍ଞତାର ଭାଜନ ହୋଇ ଅଛନ୍ତି ; କିନ୍ତୁ ଗ୍ରନ୍ଥର ରଚନା ପ୍ରତି ଦୃଷ୍ଟି ଦେଲେ, ସ୍ପଷ୍ଟ ପ୍ରତୀତ ହେଉଅଛି ଯେ, ଗ୍ରନ୍ଥକର୍ତ୍ତା ବିଷମୟ ମିଷ୍ଟାନ୍ନ ପ୍ରସ୍ତୁତ କରି ଉତ୍କଳ ଭାଷାର ବିନାଶ ସାଧନ ପକ୍ଷରେ ଯେ ରୂପ ଦୃଢ଼ ପ୍ରତିଜ୍ଞ ହୋଇ ଅଛନ୍ତି ତହିଁରେ ତାହାଙ୍କୁ କପଟବନ୍ଧୁ ଭିନ୍ନ ଆଉ କି ଜ୍ଞାନ କରିବୁ । ବାସ୍ତବରେ ଉତ୍କଳ ଭାଷାର ଶିକ୍ଷା ନିମିତ୍ତ ଏହି ଭାଷାର ପୁସ୍ତକମାନ ପ୍ରୟୋଜନ ହୋଇଅଛି ଯେବେ ସେ ପୁସ୍ତକମାନଙ୍କରେ ଭାଷାର ନିୟମମାନ ନ ରହିଲା ଓ ଗ୍ରନ୍ଥକର୍ତ୍ତାମାନେ ... ... ସ୍ୱେଚ୍ଛାପୂର୍ବକ ଅନ୍ୟାନ୍ୟ ଭାଷାର ଭାବଭଙ୍ଗୀ ଏଥିରେ ନିୟୋଜିତ କଲେ, ତେବେ ଉତ୍କଳ ପୁସ୍ତକ ରଚନାର କି ଫଳ ହେଲା ? ... ... କୌଣସି ବିଷୟର ପୁସ୍ତକ ରଚନା କଲାବେଳେ ଭାଷା ପ୍ରତି ଯଥୋଚିତ ଦୃଷ୍ଟି ରଖିବା ଅଗ୍ରେ କର୍ତ୍ତବ୍ୟ ; କିନ୍ତୁ ଗ୍ରନ୍ଥକର୍ତ୍ତା ଏ ପକ୍ଷରେ କିଛି ମାତ୍ର ବିଚାର କରି ନାହାନ୍ତି । ପୁସ୍ତକ ମଧ୍ୟରେ ଅନେକ ଶବ୍ଦ ଏ ରୂପ ଅଛି କି ଯାହା ଉତ୍କଳରେ ଶୁଣା ନାହିଁ ।" (ଉତ୍କଳ ଦୀପିକା, ୧୦ । ୪ । ୧୮୬୯) । ଏହି ମନ୍ତବ୍ୟର ପୋଷକତାରେ ପୁସ୍ତକର ଏକାଧିକ ଅଂଶ ଉଦ୍ଧାର କରଯାଇଥିଲା । ସେ ମଧ୍ୟରେ 'ଅବଶେଷରେ' ଓ 'ଫଳରେ' ପରିବର୍ତ୍ତେ ଯଥାକ୍ରମେ 'ଅବଶେଷେ' ଓ 'ଫଳେ' ତଥା 'ନ ଥିଲା' ବା 'ନ ଥିଲେ' ପରିବର୍ତ୍ତେ ଯଥାକ୍ରମେ 'ଥିଲା ନାହିଁ' ଓ 'ଥିଲେ ନାହିଁ' ପରି ବ୍ୟବହାର ବଙ୍ଗଭାଷା ପ୍ରଭାବର ଫଳ ।

ପ୍ରସଙ୍ଗକ୍ରମେ କହି ରଖିବା ଉଚିତ ହେବ ଯେ ୧୮୬୬ରେ ପ୍ରକାଶିତ ଫକୀରମୋହନଙ୍କ 'ଜୀବନ ଚରିତ' (ଚରିତାବଳୀ ?) ବଙ୍ଗଭାଷାରୁ ଅନୂଦିତ ପୁସ୍ତକ ହୋଇଥିବା ବେଳେ ତାଙ୍କ 'ଭାରତ ବର୍ଷର ଇତିହାସ' (୧ମ ଭାଗ) ଥିଲା ସଂପୂର୍ଣ୍ଣ ଭାବରେ ଓଡ଼ିଆ ଭାଷାରେ ରଚିତ ଏକ ମୌଳିକ ପୁସ୍ତକ । ଏଥିରୁ ମନେ ହୁଏ କେବଳ ବଙ୍ଗଭାଷାରୁ ଅନୁବାଦ କରିବା ପ୍ରସଙ୍ଗରେ ନୁହେଁ ଓଡ଼ିଆ ଭାଷାରେ ମୌଳିକ ପୁସ୍ତକ ରଚନା ପ୍ରସଙ୍ଗରେ ମଧ୍ୟ ଫକୀରମୋହନ—ସଚେତନ ବା ଅଜ୍ଞାତ ଭାବରେ— ବଙ୍ଗଭାଷା ଓ ଶୈଳୀର ଅନୁସରଣ, ଏପରି କି ଅନୁକରଣ କରିଯାଉଥିଲେ । ଏହା ଫକୀରମୋହନଙ୍କ ତତ୍କାଳୀନ ଗଦ୍ୟରୀତିରେ ଥିବା ଦୁର୍ବଳତାର ସୂଚନା ପ୍ରଦାନ କରେ । ଏଥିରୁ ଜଣାଯାଏ ପୂର୍ବେ ତାଙ୍କ 'ଜୀବନ

ଚରିତ' (ଚରିତାବଳୀ) ଉପରେ 'ଉତ୍କଳ ଦୀପିକା' ପୃଷ୍ଠାରେ ହୋଇଥିବା ସମାଲୋଚନାର କୌଣସି ପ୍ରଭାବ ତାଙ୍କ ଉପରେ ପଡ଼ି ନଥିଲା । ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ ଏଇ 'ଜୀବନ ଚରିତ' (ଚରିତାବଳୀ) ଉପରେ ହୋଇଥିବା ସମାଲୋଚନା ଭିତର ଦେଇ 'ଉତ୍କଳଦୀପିକା' ଓଡ଼ିଆଭାଷାର ଶୁଦ୍ଧତା ସଂରକ୍ଷଣ/ରକ୍ଷା ଆଭିମୁଖ୍ୟ ପ୍ରକାଶ କରି ସାରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ, ବିଶେଷ ଭାବରେ ଏତିକି ବେଳେ କଟକରେ ରାଜେନ୍ଦ୍ରଲାଲଙ୍କ ସ୍ପର୍ଦ୍ଧିତ ଘୋଷଣାର ପ୍ରତିକ୍ରିୟା ଜନିତ ଏଇ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ, ଏହି ଆଭିମୁଖ୍ୟକୁ ବହୁ ପରିମାଣରେ ଶାଣିତ ଓ ତୀବ୍ର କରିଥିଲା ଯାହାର ପ୍ରତିଫଳନ 'ଭାରତବର୍ଷର ଇତିହାସ'ର ସମୀକ୍ଷାରେ ପଡ଼ିଥିଲା ।

'ଉତ୍କଳ ଦୀପିକା'ରେ 'ଭାରତବର୍ଷର ଇତିହାସ' (୧ମ ଭାଗ)ର ସେଇ ସମୀକ୍ଷା ପ୍ରସଙ୍ଗରେ ଫକୀରମୋହନଙ୍କ ଓଡ଼ିଆ ଭାଷାପ୍ରୀତିକୁ ସ୍ୱୀକୃତି ଦିଆଯାଇ କୁହାଯାଇଥିଲା, "... ... ଗ୍ରନ୍ଥକର୍ତ୍ତା ଉତ୍କଳର ଜଣେ ପ୍ରକୃତ ହିତସାଧକ ଅଟନ୍ତି ବିଶେଷରେ ଉତ୍କଳ ଭାଷାର ଉନ୍ନତି କାରଣ ସେ ଯଥାସାଧ୍ୟ ଧନବ୍ୟୟ ଓ ପରିଶ୍ରମ କରିବାକୁ ତ୍ରୁଟି କରୁନାହାନ୍ତି ।" (ତତ୍ରୈବ) । ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥିରୁ ଅନୁମାନ କରାଯାଇପାରେ ଯେ ଓଡ଼ିଆଭାଷା-ପ୍ରୀତି ସମ୍ପନ୍ନ ଫକୀରମୋହନ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଅନ୍ତର୍ଗତ ଘଟଣାବଳୀ ସହ ଅନ୍ତତଃ କିଛି ପରିମାଣରେ ପରିଚିତ ଥିବେ ବା ସେ ସମ୍ପର୍କୀୟ ଖବର ରଖିଥିବେ ; କଟକରେ ରାଜେନ୍ଦ୍ରଲାଲଙ୍କ ସ୍ପର୍ଦ୍ଧିତ ଘୋଷଣାର ଖବର ମଧ୍ୟ ରଖିଥିବେ ବା ପାଇଥିବେ ଓ ତାହା ତାଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିବ । ଏଇ ପରିପ୍ରେକ୍ଷୀରେ 'ଉତ୍କଳ ଦୀପିକା' ପୃଷ୍ଠାରେ ପ୍ରକାଶିତ ତାଙ୍କ ପୁସ୍ତକର ସମୀକ୍ଷା ଓ ସେ ପ୍ରସଙ୍ଗରେ ତାଙ୍କ ଭାଷା ଓ ଶୈଳୀର ତୀବ୍ର ସମାଲୋଚନା ଯେତେଦୂର ସମ୍ଭବ ତାଙ୍କ ଦୃଷ୍ଟି ଆକର୍ଷଣ କରିଥିବ ଓ ତାଙ୍କ ମନରେ ଅଧିକ ପ୍ରତିକ୍ରିୟା ସୃଷ୍ଟି କରିଥିବ । ଆହୁରି ମଧ୍ୟ ଅନୁମାନ କରାଯାଇପାରେ ଯେ ତାଙ୍କ ମନରେ ସୃଷ୍ଟ ପ୍ରତିକ୍ରିୟାର ସ୍ୱରୂପ ଥିବ ଭବିଷ୍ୟତରେ ବଙ୍ଗଭାଷା ଓ ଶୈଳୀ ପ୍ରଭାବରୁ ତାଙ୍କ ଭାଷା ଓ ଶୈଳୀକୁ ମୁକ୍ତ କରିବାର ଇଚ୍ଛା ।

୪ . ୩ . ଏହା ପରେ ପରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଆହୁରି ତୀବ୍ର ହେଲା ; 'ଉତ୍କଳ ଦୀପିକା' ଓ 'ଉତ୍କଳ ହିତୈଷିଣୀ' ପତ୍ରିକାଦ୍ୱୟ ଯଥାକ୍ରମେ ଓଡ଼ିଆ ଭାଷାର ସମର୍ଥନ ଓ ବିରୋଧ ଭିତର ଦେଇ ତୀବ୍ର ମସୀଯୁଦ୍ଧରେ

ଲିପ୍ତ ହେଲେ ; 'ଉତ୍କଳ ଦୀପିକା'ର ଶାଣିତ ବିଦ୍ରୂପ ଓ କଟୁ ଶ୍ଳେଷ ଓଡ଼ିଆ ବିରୋଧୀମାନଙ୍କୁ ପ୍ରଚଣ୍ଡ ଆଘାତ ଦେଲା ଓ ଅବଶେଷରେ ବିଦ୍ୱେଷର ବହ୍ନି ଜଳିଉଠିଲା ଓ ବିଦ୍ୱେଷର ତରଙ୍ଗ କୋର୍ଟ କଚେରୀକୁ ମଧ୍ୟ ସ୍ପର୍ଶ କଲା । ଏହି ସମୟରେ କଲିକତାରୁ ପ୍ରକାଶିତ ବ୍ରାହ୍ମମାନଙ୍କର ମୁଖପତ୍ର 'Indian Mirror' ମଧ୍ୟ ଓଡ଼ିଆ ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ଏ ମଧ୍ୟରେ ଶିକ୍ଷା ବିଭାଗର ଡ଼ିରେକ୍ଟର ମଧ୍ୟ କମିଶନର ରେଭେନ୍‌ସାଙ୍କ ସୁଚିନ୍ତିତ ଅଭିମତ ଉପରେ ପ୍ରତିକୂଳ ମନ୍ତବ୍ୟ ଦେଇ ଅର୍ଥାତ୍ ଓଡ଼ିଶାର ବିଦ୍ୟାଳୟରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଭାଷା ପ୍ରସାରକୁ ଦୃଢ଼ ଭାବରେ ସୁପାରିଶ କରି ବଙ୍ଗସରକାରଙ୍କୁ ଚିଠି ଲେଖିଲେ । କିନ୍ତୁ ୮ । ୧୧ । ୧୮୬୯ରେ ବଙ୍ଗସରକାର ଡ଼ିରେକ୍ଟରଙ୍କୁ ଚିଠି ଲେଖି ଓଡ଼ିଶାର ବିଦ୍ୟାଳୟର ସମସ୍ତ ଶ୍ରେଣୀରେ କେବଳ ଓଡ଼ିଆ ପଢାଯିବାର ଉପଯୋଗିତା ସ୍ୱୀକାର କଲେ । ଅବଶ୍ୟ ଓଡ଼ିଶାର ବିଦ୍ୟାଳୟରେ ପୂର୍ବରୁ ବଙ୍ଗଭାଷାର ଆସନ ଦୃଢ଼ ହୋଇସାରିଥିବାରୁ ତଥା ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ହେତୁ ମଧ୍ୟମ ଶ୍ରେଣୀ ଓ ଉଚ୍ଚ ଶ୍ରେଣୀରେ ବଙ୍ଗଭାଷାର ଅଧ୍ୟୟନ କିଛିକାଳ ପାଇଁ ଅବ୍ୟାହତ ରହିବ ବୋଲି ନିଷ୍ପତ୍ତି ନେଲେ ।

ବଙ୍ଗସରକାରଙ୍କ ଏଇ ଆଦେଶ ବା ଭାଷା ନିଷ୍ପତ୍ତିର ପ୍ରତିବାଦରେ ୧୮୭୦ର ଜାନୁଆରୀ ମାସରେ ପ୍ରକାଶ ପାଇଲା କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକ । ଏଇ ପୁସ୍ତକର ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅସ୍ୱୀକାର କରି ତାହାକୁ ବଙ୍ଗଭାଷାର ଏକ ଉପଭାଷା, ଏପରି କି ବିକୃତ ରୂପ ବୋଲି ପ୍ରତିପାଦନ କରିବା । ଏହି ପୁସ୍ତକ ସମଗ୍ର ଓଡ଼ିଶାର ଶିକ୍ଷିତ ଲୋକମାନଙ୍କର ତଥା ଫକୀରମୋହନଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା ବୋଲି ଫକୀରମୋହନଙ୍କ "ଆତ୍ମଜୀବନ ଚରିତ"ର 'ଓଡ଼ିଆ ଭାଷାର ସଙ୍କଟ' ନାମକ ୧୭ଶ ଅଧ୍ୟାୟ, ସେ ସମୟର 'ଉତ୍କଳ ଦୀପିକା'ର ବିଭିନ୍ନ ସଂଖ୍ୟା ଓ କଲିକତାସ୍ଥ Asiatic Society of Bengalର ଏକ ଅଧିବେଶନରେ ପଠିତ ଜନ୍ ବୀମ୍‌ସ୍‌ଙ୍କ ଏକ ପ୍ରବନ୍ଧରୁ ଜଣାଯାଏ । ଆଉ ଏଇ ପୁସ୍ତକର ପ୍ରତିକ୍ରିୟାରେ ହିଁ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ତୃତୀୟ ପର୍ଯ୍ୟାୟର ଆରମ୍ଭ ହୋଇଥିଲା । ଆନ୍ଦୋଳନର ଏହି ତୃତୀୟ ପର୍ଯ୍ୟାୟରେ ଫକୀରମୋହନ ସକ୍ରିୟ ଅଂଶ ଗ୍ରହଣ କରିଥିବାର ଦାବୀ ତାଙ୍କ ଆତ୍ମଜୀବନୀରେ କରିଛନ୍ତି ଓ ତାହା ସତ୍ୟ ହୋଇଥିବାର ଯଥେଷ୍ଟ ସମ୍ଭାବନା ମଧ୍ୟ ରହିଛି (ଦ୍ରଷ୍ଟବ୍ୟ :- ଦାଶ, ଗଗନେନ୍ଦ୍ର ନାଥ, ୧୯୯୦,

ପୃ–୧୭୦ ଓ ପୃ–୨୩୫-୩୬) । କାନ୍ତିଚନ୍ଦ୍ର ତାଙ୍କ ବକ୍ତବ୍ୟର ସମର୍ଥନରେ ଫକୀରମୋହନଙ୍କ ଅନୂଦିତ 'ଜୀବନ ଚରିତ'ର ଭୂମିକାରୁ ତାଙ୍କ (ଅର୍ଥାତ୍ ଫକୀର-ମୋହନଙ୍କ) ଉକ୍ତି, "ଏ କଥା ଯଥାର୍ଥ ଅଟେ ଯେ କେବଳ କ୍ରିୟାମାତ୍ର ପରିବର୍ତ୍ତନ କରିଦେଲେ ବାଙ୍ଗାଲା ଓଡ଼ିଆ ହୋଇଯାଏ" ଉଦ୍ଧାର କରିଥିଲେ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ମୂଳ ବଙ୍ଗଳା 'ଜୀବନ ଚରିତ'ର ଭାଷା ସହ ଫକୀରମୋହନଙ୍କ ଅନୂଦିତ 'ଜୀବନ ଚରିତ'ର ଭାଷାକୁ ତୁଳନା କରି ଉଭୟ ମଧ୍ୟରେ ବହୁ ସାମଞ୍ଜସ୍ୟ ଥିବା ଦର୍ଶାଇଥିଲେ ।

ବୋଲଟନ କହନ୍ତି, ଅନୂଦିତ 'ଜୀବନ ଚରିତ'ର ଭୂମିକାରେ "ଓଡ଼ିଆ-ବଙ୍ଗଳା ମଧ୍ୟରେ ଖୁବ୍ ଅଳ୍ପ ତଫାତ ଅଛି" ଓ "ମୁଷ୍ଟିମେୟ ବିଭକ୍ତି ଓ ପ୍ରତ୍ୟୟ ବଦଳାଇ ଦେଲେ ବଙ୍ଗଳା ଓଡ଼ିଆ ହୋଇଯାଏ" ବୋଲି କହିଥିବାରୁ ଫକୀର-ମୋହନଙ୍କର ଅନୁତାପ ହୋଇଥିବ (ବୋଲ୍ଟନ, ଜେ: ଭି:, ୧୯୭୬, ପୃ–୧୦) । ଏହା ସତ୍ୟ, କିନ୍ତୁ ମାତ୍ର ଆଂଶିକ ଭାବରେ । କାରଣ କେବଳ ଅସତର୍କ ଭାବରେ ଏପରି ଉକ୍ତି କରିପକାଇଥିବାରୁ ନୁହେଁ, ବଙ୍ଗଭାଷା ପ୍ରଭାବିତ ଭାଷା ଓ ଶୈଳୀର ଉପଯୋଗ କରିଥିବାରୁ ମଧ୍ୟ ଫକୀରମୋହନଙ୍କ ମନରେ ଅଧିକ ଲଜ୍ଜା, ଦୁଃଖ, ଆତ୍ମଗ୍ଲାନି ଓ ଅନୁତାପ ହୋଇଥିବ କାହିଁକି ନା କାନ୍ତିଚନ୍ଦ୍ର କେବଳ ତାଙ୍କ ଉକ୍ତିଟି ଉଦ୍ଧାର କରିନଥିଲେ, ତାଙ୍କ ଭାଷାକୁ ମଧ୍ୟ ଉଦାହରଣ ସ୍ୱରୂପ ଉପସ୍ଥାପନ କରି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ମୂଳ ବଙ୍ଗଳା 'ଜୀବନ ଚରିତ'ର ଭାଷା ସହ ତାର ସାମଞ୍ଜସ୍ୟ ଦର୍ଶାଇଥିଲେ । ପୁଣି କେବଳ ସେତିକି ନୁହେଁ କାନ୍ତିଚନ୍ଦ୍ରଙ୍କ ପୁସ୍ତକ ସମଗ୍ର ଓଡ଼ିଶାର ଓ ଏପରି କି ଜନ୍ ବୀମ୍ସଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିବାରୁ ସେ ସ୍ୱାଭାବିକ କାରଣରୁ ଆହୁରି ଅଧିକ ଦୁଃଖିତ, ଲଜ୍ଜିତ, ଆତ୍ମଗ୍ଲାନି-ଜର୍ଜ୍ଜର ଓ ଅନୁତପ୍ତ ହୋଇଥିବେ କାରଣ ସେ ପ୍ରକୃତ ପକ୍ଷେ ଉତ୍କଳଭାଷା ପ୍ରତି ପ୍ରୀତିସମ୍ପନ୍ନ ଥିଲେ ଓ ଯେଥିପାଇଁ ଓଡ଼ିଶାର ତତ୍କାଳୀନ ବିଦଗ୍ଧ ସମାଜର ସ୍ୱୀକୃତି ମଧ୍ୟ ପାଇସାରିଥିଲେ । (ହୁଏ ତ ଏ ସମ୍ପର୍କୀୟ ଆତ୍ମଗ୍ଲାନି ଓ ଅପରାଧ ବୋଧ ହେତୁ ସେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ତୃତୀୟ ପର୍ଯ୍ୟାୟରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ) ଏଇ ଦୁଃଖ, ଲଜ୍ଜା, କ୍ଷୋଭ, ଆତ୍ମଗ୍ଲାନି, ଅପରାଧ ବୋଧ ଓ ଅନୁତାପ ତାଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିବ ଯାହାର ସ୍ୱରୂପ ଥିବ ଭବିଷ୍ୟତର ସାହିତ୍ୟ ସାଧନାରେ ବଙ୍ଗଭାଷା ଓ ଶୈଳୀର ପ୍ରଭାବରୁ ତାଙ୍କ ଭାଷା ଓ ଶୈଳୀକୁ ମୁକ୍ତ ରଖିବାର ଇଚ୍ଛା । ଆଠମାସ ପୂର୍ବେ ତାଙ୍କ 'ଭାରତ ବର୍ଷର

ଇତିହାସ' (୧ମ ଭାଗ) ଉପରେ 'ଉତ୍କଳ ଦୀପିକା' ପୃଷ୍ଠାରେ ହୋଇଥିବା ତୀବ୍ର ସମାଲୋଚନାର ପ୍ରତିକ୍ରିୟାରେ ପ୍ରଥମେ ତାଙ୍କ ମନରେ ଯେଉଁ ଇଚ୍ଛା ରୂପ ପରିଗ୍ରହ କରିଥିବ ତା ବର୍ତ୍ତମାନ କାନ୍ତିଚନ୍ଦ୍ରଙ୍କ ପୁସ୍ତକ ପ୍ରକାଶ ପରବର୍ତ୍ତୀ ଦୁଃଖ, ଲଜ୍ଜା, ଆତ୍ମଗ୍ଲାନି, ଅପରାଧବୋଧ ଓ ଅନୁତାପରୁ ସୃଷ୍ଟ ପ୍ରତିକ୍ରିୟାର ସମବାୟରେ ଏକ ଦୃଢ଼ୀଭୂତ ସଙ୍କଳ୍ପର ରୂପ ଧାରଣ କରିବା ଅତ୍ୟନ୍ତ ସ୍ୱାଭାବିକ ଥିଲା ।

୪ . ୪ . ବଙ୍ଗଭାଷା ଓ ଶୈଳୀର ପ୍ରଭାବରୁ ତାଙ୍କ ଭବିଷ୍ୟତର ସାହିତ୍ୟ ସାଧନାର ଭାଷା ଓ ଶୈଳୀକୁ ମୁକ୍ତ ରଖିବାର ଏ ଯେଉଁ ଦୃଢ଼ୀଭୂତ ସଙ୍କଳ୍ପ ତାଙ୍କ ମନରେ ରୂପ ନେଇଥିବ ତାର ଅନ୍ୟ ଦିଗଟି ହେଉଛି ବଙ୍ଗଭାଷା ଓ ଶୈଳୀ-ବିମୁକ୍ତ ଏକ ନୂତନ ଭାଷା ଓ ଶୈଳୀର ଅନୁସନ୍ଧାନ ବା ଅନ୍ୱେଷଣ । ତେଣୁ ଏହାପରେ ଫକୀରମୋହନ ସଚେତନ ଭାବରେ ନ ହେଲେ ମଧ୍ୟ ମନର ଅବଚେତନ ସ୍ତରରେ ବଙ୍ଗଭାଷା ଓ ଶୈଳୀ ବିମୁକ୍ତ ଏକ ନୂତନ ବା ସ୍ୱତନ୍ତ୍ର ଭାଷା ଓ ଶୈଳୀର ଅନୁସନ୍ଧାନ ବା ଅନ୍ୱେଷଣରେ ପ୍ରବୃତ୍ତ ହୋଇଥିବା ଏକାନ୍ତ ଭାବରେ ସ୍ୱାଭାବିକ ଥିଲା । ୧୮୬୭ରେ 'ଉତ୍କଳ ଦୀପିକା'ର ପୃଷ୍ଠାରେ ପ୍ରକାଶିତ ପ୍ରେରିତ ପତ୍ରରେ ତାଙ୍କ ଦ୍ୱାରା ଅନୂଦିତ 'ଜୀବନ ଚରିତ' (ଚରିତାବଳୀ ?) ର ଭାଷାକୁ ତୀବ୍ର ପ୍ରତିକୂଳ ସମାଲୋଚନା ଓ ସେ ପ୍ରସଙ୍ଗରେ ବ୍ୟକ୍ତ, "ନଗରରେ ନାନାଜାତୀୟ ଓ ନାନା ଧର୍ମାବଲମ୍ବୀ ଲୋକମାନଙ୍କ ସମାଗମ ଥିବାରୁ ସେହି ସ୍ଥାନରେ ଏକ ପ୍ରକାର ମିଶ୍ରିତ ଭାଷା ହୋଇଯାଏ ଓ ଗ୍ରାମରେ ଯଥାର୍ଥ ଭାଷା ପ୍ରଚଳିତ ଥାଏ" ଉକ୍ତି ସେତେବେଳେ ଅର୍ଥାତ୍ ୧୮୬୭ରେ ତାଙ୍କ ମନରେ ରେଖାପାତ କରିପାରି ନଥିଲା କି କୌଣସି ପ୍ରଭାବ ବିସ୍ତାର କରିପାରି ନଥିଲା । କିନ୍ତୁ ସେ ଉକ୍ତି ବର୍ତ୍ତମାନ ଅର୍ଥାତ୍ ୧୮୭୦ରେ ହୁଏତ ସ୍ମୃତିପଥାରୂଢ଼ ହୋଇ ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାଷା ଓ ଶୈଳୀର ଦିଗ୍‌ଦର୍ଶନ--- ହୁଏତ ପୂର୍ଣ୍ଣ ବା ଅତ୍ୟନ୍ତ ଅସ୍ପଷ୍ଟ ଭାବରେ--- ଦେବାରେ ଆଂଶିକ ସଫଳତା ଲାଭ କରିଥାଇ ପାରେ । କିନ୍ତୁ ଏହା କେବଳ ସମ୍ଭାବନା ମଧ୍ୟରେ ସୀମାବଦ୍ଧ ଓ ଏହାକୁ ଜୋର ଦେଇ କହିବା ଆଦୌ ସମ୍ଭବ ନୁହେଁ ।

୪ . ୫ . ତେବେ ଠିକ୍ ଏଇ ସମୟରେ ବାଲେଶ୍ୱରର ତତ୍‌କାଳୀନ କଲେକ୍ଟର ଜନ୍ ବୀମସ୍ କାନ୍ତିଚନ୍ଦ୍ରଙ୍କ ପୁସ୍ତକର ପ୍ରତିପାଦ୍ୟକୁ ଖଣ୍ଡନ କରି ଏକ ପ୍ରବନ୍ଧ ରଚନା କଲେ ଓ କଲିକତାର Asiatic Societyର ଏକ ଅଧିବେଶନରେ ଉପସ୍ଥାପନ କଲେ । ଏଇ ପ୍ରବନ୍ଧରେ ସେ ସ୍ପଷ୍ଟଭାବରେ କହିଥିଲେ,

"The fact that Sanskrit words so largely employed by pandits in Bengal and Orissa, are not living words at all, they are dead, dead ages ago, and only now galvanized into the semblance of life, they form no part of the working stock of words of the language. When they died ages ago, their sons inherited their place, and now their grandsons or great-grandsons hold it. In plain English such Sanskrit words as were used by the Uriyas and Bengalis twenty-five centuries ago, have since then undergone the usual fate of words and have been corrupted, abraded, and distorted, till they often bear no resemblance to the original word. And it is these corrupted, or as they are called Tadbhava words, that are the real living words of the language, the words that have worn into their present shape by long use in the mouths the people. These words our fastidious of writers reject, and when by going back to the Sanskrit for their words, they have composed a work to their taste, lo ! they say Uriya and Bengali are one language, for proof read such and such works. I would suggest rather, let them take a *chas'a* of Dacca and a *chas'a* of Gumsar, and see how much they understand of one another's talk." (Beames, J. 1870, P.194).

କେବଳ ସେତିକି ନୁହେଁ ୧୮୭୨ରେ ପ୍ରଥମ ଥର ପାଇଁ ପ୍ରକାଶିତ ହୁଏ ତାଙ୍କ A Comparative Grammar of the Modern Languages of India ପୁସ୍ତକର ପ୍ରଥମ ଖଣ୍ଡ ( Vol. I ) । ଏଥିରେ ସେ ଅତି ସ୍ପଷ୍ଟ ଭାବରେ କହିଥିଲେ, "In Bengali and Oriya it is not so. These languages delight in Tatsama words, and the learned in those provinces are proud of having such words in their language, being or pretending to be under the impression that they have always been in use and have come down to the present day unaffected by the laws of development to which all languages are subject. This is an obvious error. If the pandits' idea were true, these languages would be real phenomena, absolute linguistic

monstrosities." (Beames, J., 1966, Vol. I, P.34 ). ଏହି ପୁସ୍ତକର ଅନ୍ୟତ୍ର ସେ କହିଥିଲେ, "The exeessive number of Tatsamas in Bengali and Oriya, so far from indicating a high standard of preservation, points rather to great poverty in the language." (Ibid, P-35). ସେଇ ପୁସ୍ତକରେ ଅନ୍ୟତ୍ର ପୁଣି ସେ ବଙ୍ଗଳା ଓ ଓଡ଼ିଆ ଭାଷାରେ, ବିଶେଷ ଭାବରେ ବିଦ୍ୟାଳୟର ପାଠ୍ୟପୁସ୍ତକରେ, ତତ୍ସମ ଶବ୍ଦର ବହୁଳତା ଲକ୍ଷ୍ୟ କରି ଏଥିପାଇଁ ବ୍ରିଟିଶ ପ୍ରବର୍ତ୍ତିତ ଶିକ୍ଷାବ୍ୟବସ୍ଥା ଦାୟୀ ବୋଲି ସୂଚନା ଦେଇ କହିଥିଲେ, "Of course, in the matter of languages, the great Brahmanical theory was, and among the orthodox still to a great extent is, that Sanskrit, a divine invention, is the only true and correct Indian language, and that all deviations from Sanskrit observable in the conversations of the masses are corruptions arising from ignorance ; and that to purity and improve the vernacular— Bengali, for instance— every word should be restored to its original Sanskrit shape, and stream be made to run upwards to its source. Unfortunately for them, but fortunately for the world at large, this could not be done in the spoken language ; but it might at last be done in the books, especially in the numerous educational works which then the English then causing to be written. So completely did this idea prevail, that the honest old Tadbhavas were entirely banished from books, and a host of Tatsamas dug up from their graves and resuscitated for daily use. That the Sanskrit, like every other language, was subject to the laws of development, and that Bengali like every other language, was merely the natural result of those laws, never occurred to Carey, Yates, and their brethren ; and if such an idea had crossed their minds, it would have been banished as a heresy by the Pandits. Orissa at a later date followed the lead of Bengal, and from the causes above mentioned it has resulted that in both provinces the national speach has been banished from books, and now lives only in the mouths of the people ; and even they, as soon as they

get a little learning, begin to ape their betters and come out with the Tatsamas with which both languages are now completely flooded." (Ibid, P.37-38).

ବୀମସ୍‌ଙ୍କ ଅଭିମତ ଓ ଫକୀରମୋହନଙ୍କ ଉପରେ ତାର ପ୍ରଭାବ ସମ୍ପର୍କରେ ଅଧିକ ଆଲୋଚନା କରିବା ପୂର୍ବରୁ ଏଠାରେ କହିଦେବା ଉଚିତ ହେବ ଯେ ବୀମସ୍ ନବ୍ୟ ଭାରତୀୟ ଆର୍ଯ୍ୟ ଭାଷାରେ ଥିବା ଅଧିକାଂଶ ଦେଶଜ ଶବ୍ଦକୁ ତଦ୍ଭବ ଶବ୍ଦ ବୋଲି ବିଗ୍ରହ କରୁଥିଲେ (ତତ୍ରୈବ, ପୃ ୧୧-୧୩) । ତେଣୁ ତଦ୍ଭବ ଶବ୍ଦଗୁଡ଼ିକର ବ୍ୟବହାର ସମ୍ପର୍କରେ ତାଙ୍କର ଉଦ୍ଧୃତ ମନ୍ତବ୍ୟ ମଧ୍ୟ ଦେଶଜ ଶବ୍ଦର ବ୍ୟବହାର ପରି ପ୍ରଯୁଜ୍ୟ ବୋଲି ଗ୍ରହଣ କରିନେବାକୁ ହେବ । ତା ପରେ ବୀମସ୍‌ଙ୍କ ଉପରୋକ୍ତ ପୁସ୍ତକ ୧୮୭୨ରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ପରିସମାପ୍ତି ପରେ ପ୍ରକାଶିତ ହୋଇଥିଲେ ହେଁ ଏଇ ଆନ୍ଦୋଳନର ବିରୁଦ୍ଧରେ ହୋଇଥିବା ପ୍ରତି-ଆନ୍ଦୋଳନର, ବିଶେଷ ଭାବରେ ରାଜେନ୍ଦ୍ରଲାଲଙ୍କ ଅନୁଗାମୀ କାନ୍ତିଚନ୍ଦ୍ରଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକ ପ୍ରକାଶ ଜନିତ ପ୍ରତିକ୍ରିୟାର, ପ୍ରତିଫଳନକୁ ବି ଏଥିରେ ଆବିଷ୍କାର କରାଯାଇପାରେ (ଦ୍ରଷ୍ଟବ୍ୟ :- ତତ୍ରୈବ, ପୃ. ୧୧୭-୨୯) । ପୁନଶ୍ଚ ବୀମସ୍‌ଙ୍କ ଏଇ ପୁସ୍ତକ ପ୍ରକାଶ ପାଇବା ପରେ ୧୮୭୩ରେ ହିଁ ବଙ୍ଗଭାଷା ଓଡ଼ିଶାର ବିଦ୍ୟାଳୟରୁ ସମ୍ପୂର୍ଣ୍ଣ ରୂପେ ବିଦା ହେଲା ଓ ଓଡ଼ିଆଭାଷା ଅପରନ୍ତ୍ ଅଧିକାର ଲାଭ କଲା । ତେଣୁ ବୀମସ୍‌ଙ୍କ ଉପରୋକ୍ତ ପୁସ୍ତକରେ ବ୍ୟକ୍ତ ମତାମତକୁ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ସହ ଓ ସେ ପୂର୍ବେ Asiatic Societyରେ ପାଠ କରିଥିବା ପ୍ରବନ୍ଧ ସହ ସମ୍ପର୍କାନ୍ୱିତ କରିବା ସମ୍ପୂର୍ଣ୍ଣ ଭାବରେ ଯଥାର୍ଥ ।

ଏଠାରେ ପ୍ରଶ୍ନ କରାଯାଇପାରେ ଫକୀରମୋହନ କଣ ବୀମସ୍‌ଙ୍କ ଉପରୋକ୍ତ ପ୍ରବନ୍ଧ ଓ ପୁସ୍ତକ ପଢିଥିଲେ ? ସେ କଣ ସେପରି ସୁଯୋଗ ପାଇଥିଲେ ? ଫକୀରମୋହନ ବୀମସ୍‌ଙ୍କ ପ୍ରବନ୍ଧ ଓ ପୁସ୍ତକ ପଢିବାର ସୁଯୋଗ ପାଇଥିଲେ କି ନାହିଁ ଓ ପାଇଥିଲେ ପଢିଥିଲେ କି ନାହିଁ ତାହା କହିବା ଆଦୌ ସମ୍ଭବ ନୁହେଁ । ତେବେ ବୀମସ୍‌ଙ୍କ ସହ ଫକୀରମୋହନଙ୍କର କେବଳ ବିଶେଷ ଯୋଗାଯୋଗ ନ ଥିଲା ; ଥିଲା ନିବିଡ଼ ବ୍ୟକ୍ତିଗତ ଓ ବୌଦ୍ଧିକ ସମ୍ପର୍କ । ତେଣୁ ମନେ ହୁଏ ଫକୀରମୋହନ ବୀମସ୍‌ଙ୍କ ପ୍ରବନ୍ଧ ଓ ପୁସ୍ତକ ଅଧ୍ୟୟନ କରି ନଥିଲେ ମଧ୍ୟ ସେଥିରେ ବ୍ୟକ୍ତ ଦୃଷ୍ଟିକୋଣ, ବିଗ୍ରହଧାରା ଓ ମତବାଦ ସହ ବିଶେଷ ଭାବରେ

ପରିଚିତ ହେବାର ସୁଯୋଗ ପାଇଥିଲେ । କିନ୍ତୁ କେବଳ ଯେତିକି ନୁହେଁ ବୀମସ୍‌ଙ୍କ ସହ ଫକୀରମୋହନଙ୍କ ସମ୍ପର୍କ ମୂଳତଃ ଭାବଗତ (emotional) ସମ୍ପର୍କରେ ପରିଣତ ହୋଇପଡ଼ିଥିଲା । ବୀମ୍‌ସ୍ ଫକୀରମୋହନଙ୍କ ପ୍ରଥମ ସହାୟକର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ, ପୁଣି ଥିଲେ ତାଙ୍କର ପ୍ରଥମ ଆଦର୍ଶ ପୁରୁଷ, ତାଙ୍କର ପ୍ରୀତି ଓ ଭକ୍ତି ଅର୍ଘ୍ୟ ନିବେଦନର ସ୍ଥଳ । ତେଣୁ ବୀମସ୍‌ଙ୍କ ମତବାଦ ଦ୍ୱାରା ଫକୀରମୋହନ ବିଶେଷ ଭାବରେ ପ୍ରଭାବିତ ହୋଇପଡ଼ିଥିବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ବିଷୟର ସହଜ ଅବବୋଧ ପାଇଁ ନିମ୍ନରେ ବୀମସ୍‌ଙ୍କ ସହ ଫକୀରମୋହନଙ୍କ ସମ୍ପର୍କର ଆଉ ଟିକିଏ ଅଧିକ ଅନୁଶୀଳନ କରାଯାଉଛି ।

ପ୍ରଥମତଃ ବୀମସ୍ ୧୮୬୯ରେ ବାଲେଶ୍ୱରର କଲେକ୍ଟର ହୋଇ ଆସିବା ପୂର୍ବରୁ ଫକୀରମୋହନ ଓଡ଼ିଆ ଭାଷାଚର୍ଚ୍ଚାରେ ଆଗ୍ରହ ପ୍ରକାଶ କରିସାରି-ଥିଲେ । ୧୮୬୭ରେ ତାଙ୍କର 'ସରଳ ବ୍ୟାକରଣ' ପ୍ରକାଶିତ ହୋଇସାରିଥିଲା (ମହାପାତ୍ର, ଶିଶିର, ୧୯୮୬, ପୃ–୧୦୮୬-୮୭) । ଏହା ପାଠ୍ୟପୁସ୍ତକ ହୋଇ ଥିଲେ ମଧ୍ୟ ପାଠ୍ୟପୁସ୍ତକ ଭାବରେ ଗୋଟିଏ ବ୍ୟାକରଣ ପୁସ୍ତକକୁ ରଚନା କରିବା ଭିତର ଦେଇ ଭାଷାଚର୍ଚ୍ଚାରେ ଫକୀରମୋହନଙ୍କ ଆଗ୍ରହର ପରୋକ୍ଷ ପ୍ରତିଫଳନ ପଡ଼ିଥିଲା । ପୁଣି କଥିତ ସମୟରେ ସେ ଓଡ଼ିଆ ଭାଷାଚର୍ଚ୍ଚା ତଥା ଅନ୍ୟାନ୍ୟ ବୌଦ୍ଧିକ ଆଲୋଚନାରେ ରେଭରେଣ୍ଡ ଇ. ସି. ବି. ହଲାମ (E. C. B. Hallam) ଓ ବୀମସ୍‌ଙ୍କୁ ସହାୟତା ଓ ସହଯୋଗ କରିଥିଲେ ବୋଲି ତାଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି (ସେନାପତି, ଫକୀରମୋହନ, ୧୯୬୩, ପୃ. ୨୭-୨୮) । ହଲାମ ମଧ୍ୟ ତାଙ୍କ ବ୍ୟାକରଣର ଭୂମିକା (Preface)ରେ ଫକୀରମୋହନଙ୍କ ସହାୟତାକୁ ସ୍ୱୀକାର କରି କହନ୍ତି, "The thanks of the author are also due to Babu P. M. Senaputty and Babu G. C. Patnaik, both of Balasore, for specimen of prose, poetry, and Cutchery Oriya.' (Hallam, 1874, Preface, P. vii) । ଏଣୁ ମନେ ହୁଏ ହଲାମ ଓ ବୀମସ୍‌ଙ୍କ ଭାଷାଚର୍ଚ୍ଚା ତଥା ଅନ୍ୟାନ୍ୟ ବୌଦ୍ଧିକ କାର୍ଯ୍ୟକଳାପରେ ଫକୀରମୋହନ ସହଯୋଗ ଓ ସହାୟତା କରିଥିବା କଥାଟି ସତ୍ୟ । ଅନ୍ୟ ପକ୍ଷରେ ବୀମସ୍ ମଧ୍ୟ ଫକୀରମୋହନଙ୍କ ନିବିଡ଼ ବ୍ୟକ୍ତିଗତ ସମ୍ପର୍କରେ ଆସିଥିଲେ ଓ ତାଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ ଥିଲେ । ସେଥିପାଇଁ ସେ ତାଙ୍କୁ "the best specimen of an Oriah" ବୋଲି

ଅଭିହିତ କରିଥିଲେ । ବୀମସ୍ ଓ ଫକୀରମୋହନଙ୍କ ମଧ୍ୟରେ ଥିବା ବୌଦ୍ଧିକ ଓ ନିବିଡ଼ ବ୍ୟକ୍ତିଗତ ସମ୍ପର୍କ ଦୃଷ୍ଟେ ମନେହୁଏ ବୀମସ୍‌ଙ୍କ ଓଡ଼ିଆ ଭାଷା ସମ୍ପର୍କୀୟ ଦୃଷ୍ଟିକୋଣ, ବିଗ୍ରହଧାର ଓ ମତବାଦ ସହ ଫକୀରମୋହନ ବିଶେଷ ଭାବରେ ପରିଚିତ ହେବାର ସୁଯୋଗ ପାଇଥିଲେ ଓ ପରିଚିତ ମଧ୍ୟ ହୋଇଥିଲେ ।

ତା ପରେ ବୀମସ୍ ଫକୀରମୋହନଙ୍କ ପରମ ହିତୈଷୀ ଓ ପରମ ସହାୟକ ଥିଲେ ବୋଲି ସେ (ଫକୀରମୋହନ) ତାଙ୍କ "ଆତ୍ମଜୀବନ ଚରିତ"ରେ କେବଳ ସ୍ୱୀକାର କରିନାହାନ୍ତି ବରଂ ସ୍ୱତଃ ପ୍ରବୃତ୍ତ ଭାବରେ—ଓ ହୁଏତ କିଛିଟା ଉଚ୍ଛ୍ୱସିତ ତଥା ଅନାବଶ୍ୟକ ଭାବରେ—ବାରମ୍ବାର ଘୋଷଣା କରିଛନ୍ତି (ଦ୍ରଷ୍ଟବ୍ୟ :- ସେନାପତି, ଫକୀରମୋହନ, ୧୯୬୩, ପୃ-୨୮, ୬୮-୬୯, ୭୫ ଓ ୭୭) । ସେ ମଧ୍ୟରୁ ଫକୀରମୋହନଙ୍କ ଗୋଟିଏ ବକ୍ତବ୍ୟ ହେଉଛି, "ସାହେବ ମହୋଦୟ ମୋତେ ଅନେକ ଥର ଅନେକ ପ୍ରକାର ବିପଦରୁ ରକ୍ଷା କରିଅଛନ୍ତି । ଗୋଟିଏ ମାତ୍ର କଥା କହିଲେ ଯଥେଷ୍ଟ ହେବ, ସାହେବ ମହୋଦୟ ମୋର ପରମ ସହାୟ ଓ ହିତୈଷୀ ଥିଲେ । ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍ ବୀମସ୍ । ମୋର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ପବିତ୍ର ନାମ ସ୍ମରଣ କରିବି । ତାଙ୍କ ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମନ୍ତେ ମୁଁ ପ୍ରତିଦିନ ସକାଳ ସନ୍ଧ୍ୟା ଦୁଇଥର ଉପାସନା ସମୟରେ ପ୍ରଭୁ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରିଥାଏଁ ।" (ତତ୍ରୈବ, ପୃ-୨୮) । ଏଥିରୁ ବୀମସ୍‌ଙ୍କ ପ୍ରତି ତାଙ୍କ ମନୋଭାବ ଓ ତାର ମୂଳରେ ଥିବା କୃତଜ୍ଞତାବୋଧ-ଜନିତ ଭାବପ୍ରବଣତାର ସ୍ପଷ୍ଟ ସୂଚନା ମିଳେ ।

ଏହି କୃତଜ୍ଞତାବୋଧ-ଜନିତ ଭାବପ୍ରବଣତା ବ୍ୟତୀତ ବୀମସ୍‌ଙ୍କ ବ୍ୟକ୍ତିତ୍ୱ, ମହାନୁଭବତା, ନ୍ୟାୟପରାୟଣତା, ପ୍ରଶାସନ-ଦକ୍ଷତା ପ୍ରଭୃତି ଗୁଣ ତଥା ବିଦ୍‌ବତ୍ତା ଓ ପାଣ୍ଡିତ୍ୟ ଫକୀରମୋହନଙ୍କୁ ଗଭୀର ଭାବରେ ଅଭିଭୂତ କରିଥିଲା । ତେଣୁ ସେ ତାଙ୍କ "ଆତ୍ମଜୀବନ ଚରିତ"ରେ ଏକାଧିକ ସ୍ଥାନରେ ତାର ଉଲ୍ଲେଖ ତ କରିଛନ୍ତି । ବାରମ୍ବାର ବୀମ୍‌ସ୍‌ଙ୍କୁ 'ମହାତ୍ମା' ବୋଲି ଅଭିହିତ କରିବା ପାଇଁ କୁଣ୍ଠିତ ମଧ୍ୟ ହୋଇ ନାହାନ୍ତି (ତତ୍ରୈବ, ପୃ: ୨୮, ୭୪-୭୬, ୮୨, ଓ ୧୧୪) । ପୁଣି ବୀମ୍‌ସ୍ ଓଡ଼ିଆ ଭାଷା ପ୍ରତି ସହାନୁଭୂତିଶୀଳ ଥିବା ହେତୁ ଓ ଓଡ଼ିଆମାନଙ୍କ ତଥା ଓଡ଼ିଆ ଭାଷାର ଉନ୍ନତି ବିଧାନ ପାଇଁ ଉଦ୍ୟମ କରିଥିବା ହେତୁ ଓଡ଼ିଆ ଭାଷା ପ୍ରତି ପ୍ରୀତିସମ୍ପନ୍ନ ଫକୀରମୋହନ ବୀମ୍‌ସ୍‌ଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନର ନିଦର୍ଶନ

ସ୍ୱରୂପ ତାଙ୍କ 'ରାମାୟଣ'ର ବାଳକାଣ୍ଡ ମଧ୍ୟ ବୀମ୍‌ସ୍‌ଙ୍କୁ ଉତ୍ସର୍ଗ କରିଥିଲେ (ତତ୍ରୈବ, ପୃ. ୧୦୬) ।

ବୀମ୍‌ସ୍‌ଙ୍କ ପ୍ରତି ଫକୀରମୋହନଙ୍କ ମନୋଭାବ ମୂଳରେ ଥିବା ବ୍ୟକ୍ତିଗତ କୃତଜ୍ଞତାବୋଧ-ଜନିତ ଭାବପ୍ରବଣତା ତଥା ତାଙ୍କର ବିଭିନ୍ନ ଗୁଣ, ବିଦ୍ୱତ୍ତା ଓ ଓଡ଼ିଆଭାଷା-ପ୍ରୀତି ପ୍ରତି ଗଭୀର ସମ୍ମାନବୋଧ-ଜନିତ ଭାବପ୍ରବଣତା ଦୃଷ୍ଟେ ଫକୀରମୋହନଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦ ବୀମ୍‌ସ୍‌ଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦ ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ପ୍ରଭାବିତ ଓ ଆଚ୍ଛନ୍ନ ବା ଆଚ୍ଛାଦିତ ହୋଇପଡ଼ିଥିବ ବୋଲି— ଅନ୍ତତଃ ମନର ଅବଚେତନ ସ୍ତରରେ— ଅନୁମାନ କରିବା ଆଦୌ ଅସଙ୍ଗତ ବା ଅସମ୍ଭବ ବୋଧହୁଏ ନାହିଁ । ବରଂ ତାହା ଏକାନ୍ତ ଭାବରେ ସ୍ୱାଭାବିକ ଥିଲା ।

ସଂକ୍ଷେପରେ ବୀମସ୍‌ଙ୍କ ମତ ଥିଲା, ପଣ୍ଡିତିଆ ଓଡ଼ିଆ ଭାଷାରେ ବ୍ୟବହୃତ ତତ୍ସମ ଶବ୍ଦଗୁଡ଼ିକ ଜୀବନ୍ତ ଓଡ଼ିଆ ଭାଷାର ଶବ୍ଦ ନୁହେଁ ; ଏକ ମୃତଭାଷା ସଂସ୍କୃତର ବହୁପୂର୍ବେ ମୃତ ଶବ୍ଦ ("The fact that Sanskrit words so largely employed by pandits in Bengal and Orissa, are not living words at all, they are dead, dead ages ago, ... ...") । ସେହି ତତ୍ସମ ଶବ୍ଦଗୁଡ଼ିକର ସନ୍ତାନସନ୍ତତି ଅନ୍ୟ କଥାରେ ସେଥିରୁ ଉଦ୍ଭୂତ— ତଦ୍‌ଭବ— ଶବ୍ଦଗୁଡ଼ିକର ମୂଳ ଶବ୍ଦ ସହ କୌଣସି ଆପାତ ସାମଞ୍ଜସ୍ୟ ନଥିଲେ ମଧ୍ୟ ସେଗୁଡ଼ିକ ଓଡ଼ିଆଭାଷା ପକ୍ଷରେ ପ୍ରକୃତ ଜୀବନ୍ତ ଶବ୍ଦ ("And it is these corrupted, or as they are called Tadbhava words, that are the real living words of the language ... ...") । ତେଣୁ ପୁସ୍ତକରୁ ନିର୍ବାସିତ ହୋଇ ପ୍ରକୃତ ଜାତୀୟ ଓଡ଼ିଆଭାଷା ବଞ୍ଚି ରହିଛି ଗାଁ ଗହଳର ଲୋକମାନଙ୍କ ମୁଖରେ (" ... ... the living national speech has been banished from books, and now lives only in the mouths of the people ... ..,") । ବ୍ରିଟିଶ ପ୍ରବର୍ତ୍ତିତ ଶିକ୍ଷା ବ୍ୟବସ୍ଥାରେ ହିଁ ବିଦ୍ୟାଳୟର ପାଠ୍ୟପୁସ୍ତକରେ ପ୍ରକୃତ ଜୀବନ୍ତ ତଦ୍‌ଭବ ଶବ୍ଦ ପରିବର୍ତ୍ତେ ମୃତ ତତ୍ସମ ଶବ୍ଦଗୁଡ଼ିକର ଅନୁପ୍ରବେଶ ଘଟିଛି ( "... ...the honest old Tabdhavas were entirely banished from books, a host of Tatsames dug from the graves, and resuscitated to daily use." ) ଏହା ନଦୀର ସ୍ରୋତକୁ ତାର

ଉପତ୍ତିସ୍ଥଳ ଅଭିମୁଖରେ ଭଟାଣି ବୁହାଇବାର ବା ଓଲଟା ଦିଗ ବା ପ୍ରତିସ୍ରୋତରେ ଗତି କରାଇବା ବ୍ୟତୀତ ଅନ୍ୟ କିଛି ନ ହୋଇ ପାରେ ( "... ... the stream be made to run upward to its source." ) । ସେ ପୁଣି କହି-ଥିଲେ ଯେ ଉଭୟ ବଙ୍ଗଳା ଓ ଓଡ଼ିଆ ପାଠ୍ୟପୁସ୍ତକର ଭାଷା ସଂସ୍କୃତମୁଖୀ ବା ତତ୍ସମଶବ୍ଦ ବହୁଳ ହୋଇଥିବାରୁ ଉଭୟ ଭାଷା ମଧ୍ୟରେ ଥିବା ପ୍ରକୃତ ପାର୍ଥକ୍ୟକୁ ସହଜରେ ଉପଲବ୍ଧି କରାଯାଇପାରୁ ନାହିଁ ଓ ଉଭୟ ମଧ୍ୟରେ ଥିବା କୃତ୍ରିମ ସାମଞ୍ଜସ୍ୟ ହିଁ ସହଜରେ ଦୃଷ୍ଟି ଆକର୍ଷଣ କରିପାରୁଛି (ଯାହା କାନ୍ତିଚନ୍ଦ୍ର ଦର୍ଶାଇଥିଲେ) । ଫଳରେ ଓଡ଼ିଆ ଭାଷାକୁ ବଙ୍ଗଭାଷାର ଉପଭାଷା ବୋଲି ଦାବୀ କରାଯାଇ ପାରୁଛି । କିନ୍ତୁ ଢାକାର ଜଣେ ଚଷା ଓ ଘୁମୁସରର ଜଣେ ଚଷା ମୁହଁର ଭାଷାକୁ ତୁଳନା କଲେ ଉଭୟ ଭାଷା ମଧ୍ୟରେ ଥିବା ପାର୍ଥକ୍ୟଟା ସହଜରେ ଧରା ପଡ଼ିବ । (ଏଠାରେ ଆଉ ଥରେ ସ୍ମରଣ କରାଇଦେବା ଉଚିତ ହେବ ଯେ ବୀମସ୍‌ଙ୍କ ବିଚାରରେ ଅଧିକାଂଶ ଦେଶଜ ଶବ୍ଦ ପ୍ରକୃତ ପକ୍ଷେ ତଦ୍ଭବ ଶବ୍ଦ । ତେଣୁ ତାଙ୍କ ଅଭିବ୍ୟକ୍ତି/ଉକ୍ତିରେ ଥିବା 'ତଦ୍ଭବ' ଶବ୍ଦ ଉଭୟ ତଦ୍ଭବ ଓ ଦେଶଜ ଶବ୍ଦକୁ ବୁଝାଉଥିଲା ବା ଉଭୟ ତଦ୍ଭବ ଓ ଦେଶଜ ଶବ୍ଦ ଅର୍ଥରେ ପ୍ରୟୋଗ କରାଯାଉଥିଲା । )

ପ୍ୟାରୀଚାନ୍ଦ ମିତ୍ର ବା ଟେକଚାନ୍ଦ ଠାକୁରଙ୍କ "ଆଲାଲେର ଘରେର ଦୁଲାଲ" ଉପନ୍ୟାସକୁ ଜନ୍ ବୀମ୍‌ସ୍ ଉଚ୍ଛ୍ୱସିତ ପ୍ରଶଂସା କରି କହିଥିଲେ, "... might fairly claim to be ranked with some of the best comic novels in our own language." ( ଦ୍ରଷ୍ଟବ୍ୟ :– ମହାନ୍ତି, ସୁରେନ୍ଦ୍ର, ୧୯୮୧, ପୃ. ୫୦ । ଏ ସମ୍ପର୍କରେ ଫକୀରମୋହନ ଅବହିତ ଥିଲେ କି ନାହିଁ ଓ ଏହା ତାଙ୍କ ମନ ଉପରେ କିଛି ପ୍ରଭାବ ପକାଇଥିଲା କି ନାହିଁ, କହିବା ସହଜ ନୁହେଁ ଯଦିଓ ତାର କିଛି ସମ୍ଭାବନା ରହିଛି । )

ବୀମ୍‌ସ୍‌ଙ୍କ ଏଇ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦ ଫକୀର-ମୋହନଙ୍କ ମନକୁ ଗଭୀର ଭାବରେ ରେଖାପାତ କରିଥିବାର, ତାଙ୍କ ବିଶେଷ ଭାବରେ ପ୍ରଭାବିତ କରିଥିବାର ଐତିହାସିକ ମନସ୍ତାତ୍ତ୍ୱିକ କାରଣଗୁଡ଼ିକର ସୂଚନା ପୂର୍ବେ ଦିଆଯାଇଛି । ନିମ୍ନରେ ସଂକ୍ଷେପରେ ଆଉ ଥରେ ତାର ବ୍ୟାଖ୍ୟା କରାଯାଉଛି ।

୧୮୬୯ର ଏପ୍ରିଲ ମାସରେ 'ଉତ୍କଳ ଦୀପିକା' ପୃଷ୍ଠାରେ ତାଙ୍କ 'ଭାରତବର୍ଷର ଇତିହାସ' (୧ମ ଭାଗ)ର 'ବଙ୍ଗୋତ୍କଳ ମିଶ୍ରିତ' ଭାଷା ବା ବଙ୍ଗଭାଷା ପ୍ରଭାବିତ ଓଡ଼ିଆ ଭାଷାକୁ କରଯାଇଥିବା ତୀବ୍ର ସମାଲୋଚନା ଫକୀରମୋହନଙ୍କ ମନରେ ତୀବ୍ର ପ୍ରତିକ୍ରିୟା ଓ ବିକ୍ଷୋଭ ସୃଷ୍ଟି କରି ଭବିଷ୍ୟତରେ ବଙ୍ଗଭାଷା ପ୍ରଭାବ ବିମୁକ୍ତ ଓଡ଼ିଆ ଭାଷାରେ ସାହିତ୍ୟ ସାଧନା କରିବା ପାଇଁ ପ୍ରେରଣା ଯୋଗାଇ ଥିବ । ତାର ମାତ୍ର ଆଠମାସ ପରେ ୧୮୭୦ର ଜାନୁଆରୀ ମାସରେ ତାଙ୍କ ଉକ୍ତିକୁ ଉଦ୍ଧାର କରି ତଥା ପୂର୍ବେ ତାଙ୍କ ଦ୍ୱାରା ଅନୂଦିତ 'ଜୀବନ ଚରିତ'ର ଭାଷାକୁ ଉଦାହରଣ ସ୍ୱରୂପ ଉପସ୍ଥାପନ କରି ଓଡ଼ିଆକୁ ବଙ୍ଗଭାଷାର ଉପଭାଷା ରୂପେ ପ୍ରମାଣ କରିବା ପାଇଁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଉଦ୍ୟମ ତାଙ୍କୁ ଅପ୍ରସ୍ତୁତ ବା ଲଜ୍ଜିତ କରଇ ଓ ତାଙ୍କ ମନରେ ପୁଣି ଥରେ ଆତ୍ମଗ୍ଲାନି ଓ ତୀବ୍ର ପ୍ରତିକ୍ରିୟା ସୃଷ୍ଟିକରି ଭବିଷ୍ୟତରେ ଭାଷା ବ୍ୟବହାରରେ ଅଧିକ ସତର୍କ ହେବା ପାଇଁ ତଥା ବଙ୍ଗଭଷା ବିମୁକ୍ତ ଓଡ଼ିଆ ଭାଷାରେ ସାହିତ୍ୟ ସାଧନା ପାଇଁ ଅଧିକ ପ୍ରେରଣା ଯୋଗାଇ ଥିବ ଆଉ ମନର ଅବଚେତନ ସ୍ତରରେ ସେ ତାର ଉପାୟ ଅନ୍ୱେଷଣରେ ଅର୍ଥାତ୍ ସେପରି ଓଡ଼ିଆ ଭାଷାର ସ୍ୱରୂପ ନିର୍ଦ୍ଧାରଣରେ ବ୍ୟସ୍ତ ଥିବେ । ଠିକ୍ ଏଇ ସମୟରେ ଅର୍ଥାତ୍ ବୀମ୍ସଙ୍କ ମତବାଦକୁ ଗ୍ରହଣ କରିବା ପାଇଁ ତାଙ୍କ ମନ ଯେତେବେଳେ ସମ୍ପୂର୍ଣ୍ଣ ଭାବରେ ପ୍ରସ୍ତୁତ ଥିବ ସେତେବେଳେ ସେ ବୀମସ୍ଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦର ସଂସ୍ପର୍ଶରେ ଆସିଥିବେ ଆଉ ତାହା ତାଙ୍କ ମନରେ—ଅନ୍ତତଃ ମନର ଅବଚେତନ ସ୍ତରରେ—ଗଭୀର ଭାବରେ ରେଖାପାତ କରିଥିବ କାରଣ ସେ ସମ୍ମୁଖୀନ ହୋଇଥିବା ପ୍ରତିକ୍ରିୟା, ବିକ୍ଷୋଭ ଓ ସମସ୍ୟାର ଉତ୍ତର ଓ ସମାଧାନ ତା ଭିତରେ ଥିଲା ; ତା ଭିତରେ ଥିଲା ବଙ୍ଗଭଷା ପ୍ରଭାବ ବିମୁକ୍ତ ଜୀବନ୍ତ ଓଡ଼ିଆ ଭାଷାରେ ସାହିତ୍ୟ ସାଧନା କରିବାର ସ୍ପଷ୍ଟ, ନିର୍ଦ୍ଦିଷ୍ଟ ଓ ବଳିଷ୍ଠ ଦିଗ୍‌ଦର୍ଶନ । ବୀମ୍ସ୍‌ଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦ ମଧ୍ୟରେ ସେ ପାଇଥିବେ ଓଡ଼ିଆ ଭାଷାରୁ ତତ୍ସମ ଶବ୍ଦର ବ୍ୟବହାରକୁ ସାଧ୍ୟମତ୍ତାବକ ପରିହାର କରି, ତତ୍ସମ ଶବ୍ଦର ଆଧିପତ୍ୟରୁ ଓଡ଼ିଆ ଭାଷାକୁ ମୁକ୍ତ କରି ବଙ୍ଗଭଷା ସହ ଓଡ଼ିଆ ଭାଷାର କୃତ୍ରିମ ଓ ଆପାତ ସାମଞ୍ଜସ୍ୟକୁ ନିରାକରଣର ଓ ତା ଭିତର ଦେଇ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନର ଉପାୟ । ସେଥିରେ ପୁଣି ବୀମ୍ସ୍‌ଙ୍କ ସହ ତାଙ୍କ ସମ୍ପର୍କ ଥିଲା ମଳତଃ ଓ ମୁଖ୍ୟତଃ ଭାବଗତ (emotional) । ବୀମ୍ସ୍ ଥିଲେ ତାଙ୍କର

ପରମ ହିତୈଷୀ ଓ ପରମ ସହାୟକ ; ତାଙ୍କ ଦୃଷ୍ଟିରେ ବୀବସ୍ ଥିଲେ ଓଡ଼ିଆ ଭାଷାର ପରମ ହିତୈଷୀ ଓ ରକ୍ଷାକର୍ତ୍ତା ; ବୀମସ୍ ଥିଲେ ଅସାଧାରଣ ବିଦ୍ୱାନ ଓ ଶେଷରେ ବୀମସ୍ ଥିଲେ ଜଣେ ମହାନ ବ୍ୟକ୍ତି ଓ ଏପରି କି ମହାତ୍ମା । ତେଣୁ ଏଇ ବୀମସ୍‌ଙ୍କ ଦୃଷ୍ଟିକୋଣ, ବିଗ୍ରହଧାର ଓ ମତବାଦ ତାଙ୍କୁ ଓ ତାଙ୍କ ଦୃଷ୍ଟକୋଣ, ବିଗ୍ରହଧାର ଓ ମତବାଦକୁ ବିଶେଷ ଭାବରେ, ହୁଏତ ବା ସମ୍ପୂର୍ଣ୍ଣ ଭାବରେ ପ୍ରଭାବିତ କରିଥିବା ଅତ୍ୟନ୍ତ ସ୍ୱାଭାବିକ ଥିଲା ।

ବୀମସ୍ ବୁଝିଥିଲେ ଯେ ପ୍ରକୃତ ଓ ଜୀବନ୍ତ ଓଡ଼ିଆ ଭାଷାର ସନ୍ଧାନ ପାଇବା ପାଇଁ ଜଣେ ଚଷା— ଘୁମୁସରର ଚଷା - ନିକଟକୁ ଯିବାର ଆବଶ୍ୟକତା । ପରବର୍ତ୍ତୀ କାଳରେ ଫକୀରମୋହନ "ଛ'ମାଣ ଆଠଗୁଣ୍ଠ" ପରି ଉପନ୍ୟାସ ଓ 'ରେବତୀ' ପରି ଗଳ୍ପ ରଚନା କରିବା ସମୟରେ ସେଥିରେ ଘୁମୁସରର ନ ହେଲେ ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଚଷାମାନଙ୍କ ମୁଖରେ ପ୍ରଚଳିତ ଭାଷାର— ଅନ୍ୟ କଥାରେ ଓଡ଼ିଶାର କୃଷି-ଭିତ୍ତିକ ସମାଜର ପ୍ରାୟ ସବୁ ଶ୍ରେଣୀର ଲୋକଙ୍କ ମୁଖ-ପ୍ରଚଳିତ ଭାଷାର— ବହୁଳ ବ୍ୟବହାର ମଧ୍ୟରେ ତାଙ୍କର ଏଇ ମାନସିକତାକୁ ଆବିଷ୍କାର କରାଯାଇପାରେ ।

୪ . ୬ . କେବଳ ସେତିକି ନୁହେଁ ସେ ସମୟରେ ବାଲେଶ୍ୱରରେ ଥିବା ଖ୍ରୀଷ୍ଟିଆନ ମିଶନାରୀ ରେଭରେଣ୍ଡ ହଲାମ (E. C. B. Hallam)ଙ୍କ ସହ ଫକୀରମୋହନଙ୍କ ସମ୍ପର୍କର ତଥା ତାଙ୍କ ଓଡ଼ିଆ ଭାଷାଚର୍ଚ୍ଚାରେ ଫକୀରମୋହନଙ୍କ ସହାୟକ ଭୂମିକାର କଥା କୁହାଯାଇଛି । ସେ ୧୮୭୪ରେ ପ୍ରକାଶିତ ତାଙ୍କ Oriya Grammar for English Studentsର ଭୂମିକା (Preface)ରେ କହିଥିଲେ, "It is probable that some ... ... may object to what will appear to them to be innovations. For instance, retentions of the pronouns in the true singular, which have been rejected by the modern pundits as "Inferior ; as also the true singular of the verb, which of course is also retained. It is hoped, however, that none whose ideas are progressive, and who have any claim to a philosophical knowledge of Oriya, and the beautiful language from which it is derived, will at all object to the matter or its arrangement. Should such an one happen to take up this book, he is referred to the table,

accompanying the chapter on Pronouns, and another in the appendix, which will clearly prove that the rejected pronouns, and the singular of the verb (both still in use among the peasants of Orissa), come in a direct line from the Prakrit. ... ... The pundits have so far succeeded in excluding the true singular, both of pronouns and verbs, from modern literary circles, as to render it absolutely necessary to retain their Modern Honorific Singular; and for the same reason, the Modern double Plural cannot be dispensed with; all therefore are retained, and this surely ought to satisfy the most fastidious." (Hallam, 1874, Preface, P. IV-V) ।

ଏହାକୁ ସରଳ ଭାବରେ ବୁଝାଇ କହିଲେ ହଲାମଙ୍କ ମତରେ ସେ ସମୟରେ ଶିକ୍ଷିତ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ଓଡ଼ିଆ ଭାଷାରେ ଅନ୍ୟକଥାରେ ପଣ୍ଡିତିଆ ଓଡ଼ିଆ ଭାଷାର 'ମୁଁ' ଓ 'ତୁ' ସର୍ବନାମ ଦୁଇଟିକୁ ତଥା ଏହି ଦୁଇଟି ସର୍ବନାମ ବାକ୍ୟର କର୍ତ୍ତା ହୋଇଥିଲେ ତା ସହ ସମ୍ପର୍କାନ୍ୱିତ ସମାପିକା କ୍ରିୟା-ପଦର ରୂପକୁ ଯଥା 'ମୁଁ' ସହ ସମ୍ପର୍କାନ୍ୱିତ 'ଖାଏ', 'ଖାଇଲି', 'ଖାଇବି', 'ଖାଆନ୍ତି' ଆଦି ପଦକୁ ଓ 'ତୁ' ସହ ସମ୍ପର୍କାନ୍ୱିତ 'ଖାଉ', 'ଖାଇଲୁ', 'ଖାଇବୁ', 'ଖାଆନ୍ତୁ', ଆଦି ପଦକୁ ଅଶୁଦ୍ଧ ବା ଗ୍ରାମ୍ୟ (inferior) ବୋଲି କୃତ୍ରିମ ଭାବରେ ନିର୍ବାସନ କରାଯାଉଥିଲା । କିନ୍ତୁ ଲୋକମୁଖରେ ବିଶେଷ ଭାବରେ ଚାଷୀମାନଙ୍କ ବ୍ୟବହୃତ ଜୀବନ୍ତ ଓଡ଼ିଆ ଭାଷାରେ ଏସବୁର ବ୍ୟବହାର ଥିବାରୁ ହଲାମ ତାହାକୁ ନିଜ ବ୍ୟାକରଣରେ ବିଗ୍ରହକୁ ନେଇଥିଲେ ଓ ସ୍ୱୀକୃତି ଦେଇଥିଲେ । ମୋଟ ଉପରେ ହଲାମ ସେତେବେଳର ଲିଖିତ ପଣ୍ଡିତିଆ ଓଡ଼ିଆ ଭାଷା ଅପେକ୍ଷା କୃଷିଭିତ୍ତିକ ସମାଜର ଲୋକମୁଖର ପ୍ରଚଳିତ ଜୀବନ୍ତ ଓଡ଼ିଆଭାଷା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ ଓ ତାହାକୁ ଓଡ଼ିଆ ଭାଷାର ପ୍ରକୃତ ସ୍ୱରୂପ ବୋଲି ଗ୍ରହଣ କରିଥିଲେ । ଏ ପ୍ରସଙ୍ଗରେ କହିରଖିବା ଉଚିତ ହେବ ଯେ ଲିଖିତ ବଙ୍ଗ ଭାଷାରୁ ଓଡ଼ିଆ 'ମୁଁ' ଓ 'ତୁ'ର ପ୍ରତିଶବ୍ଦ (ccunter part) ଯଥାକ୍ରମେ 'ମୁଇଁ' ଓ 'ତୁଇ'ର ବ୍ୟବହାର ପ୍ରାୟ ନିଷିଦ୍ଧ ହୋଇଯାଇଛି ଯାହାର ପ୍ରଭାବ ସେ ସମୟର ଲିଖିତ ଓଡ଼ିଆ ଉପରେ ପଡ଼ିଥିଲା । ବୋଧହୁଏ ସେହିପରି ଏକବଚନରେ ବଙ୍ଗଭାଷାରେ ବ୍ୟବହୃତ ହେଉଥିବା 'ଆମି' ଓ 'ତୁମି'ର ପ୍ରଭାବରେ ଯଥାକ୍ରମେ 'ମୁଁ' ଓ 'ତୁ' ପରିବର୍ତ୍ତେ 'ଆମେ' ଓ 'ତୁମେ'ର ବ୍ୟବହାର ସେ କାଳର ଲିଖିତ

ଓଡ଼ିଆ ଭାଷାରେ ଅନୁପ୍ରବେଶ କରିଥିଲ । ଏଥିରୁ ହଲ୍ଲାମଙ୍କ ମତ କେତେ ଗୁରୁତ୍ୱପୂର୍ଣ୍ଣ ଜଣାଯାଏ ।

ହଲ୍ଲାମଙ୍କ ଏଇ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦ ମୂଳରେ ବୀମ୍‌ସଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦର ବିଶେଷ ପ୍ରଭାବ ଥିବାର ସମ୍ଭାବନା ରହିଛି । ହଲ୍ଲାମଙ୍କ ଏଇ ବ୍ୟାକରଣ ରଚନାରେ ବୀମ୍‌ସ ଉପାଦାନ ଯୋଗାଇଦେଇ ତଥା ତାହାର ପ୍ରତ୍ୟେକ ପୃଷ୍ଠା ପଢ଼ି ଓ ତା ଉପରେ ନିଜର ସମାଲୋଚନାତ୍ମକ ମତାମତ ଦେଇ ତାଙ୍କୁ ବିଶେଷ ଭାବରେ ସାହାଯ୍ୟ କରିଥିଲେ ବୋଲି ହଲ୍ଲାମ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି (ତତ୍ରୈବ, ପୃ: iii) । ବୀମ୍‌ସ ମଧ୍ୟ ତା ସ୍ୱୀକାର କରିଛନ୍ତି (Beames 1961, PP. 193-94) । ତେଣୁ ବୀମ୍‌ସଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦର ପ୍ରଭାବ ହଲ୍ଲାମଙ୍କ ଉପରେ ପଡ଼ିଥିବାର ସମ୍ଭାବନାକୁ ଅସ୍ୱୀକାର କରାଯାଇ ପାରେନାହିଁ । ସେପରି କ୍ଷେତ୍ରରେ ଫକୀରମୋହନଙ୍କ ଉପରେ ବୀମ୍‌ସଙ୍କ ପ୍ରତ୍ୟକ୍ଷ ପ୍ରଭାବ ତ ପଡ଼ିଥିଲ, ପୁଣି ହଲ୍ଲାମଙ୍କ ବାଟଦେଇ ପରୋକ୍ଷ ପ୍ରଭାବ ମଧ୍ୟ ପଡ଼ିଥାଇ ପାରେ । ଅବଶ୍ୟ ହଲ୍ଲାମ ମିଶନାରୀ ଧର୍ମପ୍ରଚାରକ ଥିବାରୁ ଧର୍ମପ୍ରଚାର ଅବକାଶରେ ସାଧାରଣ ଲୋକଙ୍କ ସଂସ୍ପର୍ଶରେ ଆସୁଥିଲେ । ତେଣୁ ଏହା ତାଙ୍କ ସ୍ୱକୀୟ ଅନୁଭୂତି ଓ ଅଭିଜ୍ଞତା ପ୍ରସୂତ ମଧ୍ୟ ହୋଇଥାଇ ପାରିଥାଏ ।

ସେ ଯାହାହେଉ ହଲ୍ଲାମଙ୍କ ସହ ଫକୀରମୋହନଙ୍କ ସମ୍ପର୍କ ଦୃଷ୍ଟେ ଓ ତାଙ୍କ ଓଡ଼ିଆଭାଷା-ଚର୍ଚ୍ଚାରେ ଫକୀରମୋହନଙ୍କ ସଙ୍ଗଦାନ ଓ ସହାୟତା ଦୃଷ୍ଟେ ହଲ୍ଲାମଙ୍କ ଦୃଷ୍ଟିକୋଣ ଓ ମତବାଦ ଫକୀରମୋହନଙ୍କ ଉପରେ ପଡ଼ିଥିବା ବୀମ୍‌ସଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦର ପ୍ରଭାବକୁ ଆଦରି ଦୃଢ଼ୀଭୂତ ଓ ଘନୀଭୂତ କରିଥିବା ଏକାନ୍ତ ଭାବରେ ସ୍ୱାଭାବିକ ଥିଲ ;

୪ . ୭ . ବୀମ୍‌ସ ସୂଚାଇଥିଲେ ପ୍ରକୃତ ଓ ଜୀବନ୍ତ ଓଡ଼ିଆ ଭାଷାର ସନ୍ଧାନ ପାଇବା ପାଇଁ ଜଣେ ଚଷା–– ଘୁମୁସର ଚଷା–– ନିକଟକୁ ଯିବାର ଆବଶ୍ୟକତା । ହଲ୍ଲାମ ମଧ୍ୟ ଓଡ଼ିଶାର ଚଷାମାନଙ୍କ (the peasants of Orissa) ମୁଖରେ ପ୍ରକୃତ ଓଡ଼ିଆ ଭାଷା ବଞ୍ଚିରହିଛି ବୋଲି ସୂଚାଇଥିଲେ । ମୋଟ ଉପରେ ଉଭୟ ବୀମ୍‌ସ ଓ ହଲ୍ଲାମ ଓଡ଼ିଶାର ଚଷାମାନଙ୍କ ମୁଖରେ–– କୃଷିଭିତ୍ତିକ ସମାଜର ପ୍ରାୟ ସବୁଶ୍ରେଣୀର ଲୋକମାନଙ୍କ ମୁଖରେ–– ହିଁ ପ୍ରକୃତ ଓ

ଜୀବନ୍ତ ଓଡ଼ିଆ ଭାଷାର ଆବିଷ୍କାର କରିପାରିଥିଲେ । ସେମାନଙ୍କ ପ୍ରଭାବରେ ଫକୀରମୋହନ ମଧ୍ୟ ସର୍ଜନଶୀଳ ସାହିତ୍ୟର ମାଧ୍ୟମ ହେବା ପାଇଁ ଉପଯୁକ୍ତ ପ୍ରକୃତ ଓ ଜୀବନ୍ତ ଓଡ଼ିଆ ଭାଷାର ସନ୍ଧାନ ପାଇଲେ ଓଡ଼ିଶାର କୃଷିଭିତ୍ତିକ ସମାଜର ପ୍ରାୟ ସବୁ ଶ୍ରେଣୀର ଲୋକମାନଙ୍କ ମୁଖରେ ଓ ତାହାର ସଫଳ ପ୍ରୟୋଗ କଲେ । ବର୍ଣ୍ଣିତ ସମୟର ବିଭିନ୍ନତା ଜନିତ ଓ ପୃଷ୍ଠଭୂମିଗତ ବିଭିନ୍ନତା-ଜନିତ ଭାଷାର ବିଭିନ୍ନତା ସତ୍ତ୍ୱେ ଓ ଏପରିକି ଗୋଟିଏ ଉପନ୍ୟାସର ବିଭିନ୍ନ ଅଂଶରେ ଥିବା ପରିସ୍ଥିତି ଓ ପରିବେଶର ବିଭିନ୍ନତା-ଜନିତ ଭାଷାର ବିଭିନ୍ନତା ସତ୍ତ୍ୱେ ଏ ଉକ୍ତି ଫକୀରମୋହନଙ୍କ ଗ୍ରେଟିଯାକ ଉପନ୍ୟାସ ଓ ସବୁଗୁଡ଼ିକ ଗଳ୍ପ ପ୍ରତି ଊଣା ଅଧିକେ ପ୍ରଯୁଜ୍ୟ । ଏଠାରେ ସ୍ମରଣ କରାଯାଇପାରେ ଯେ ଆଦ୍ୟ ଜୀବନର ସାହିତ୍ୟ ସାଧନାରେ ସେ ତାଙ୍କ ଭାଷା ବ୍ୟବହାରଗତ ଦୁର୍ବଳତା ହେତୁ ତୀବ୍ର ସମାଲୋଚନାର ଶରବ୍ୟ ହୋଇଥିଲେ । ତେଣୁ ପରବର୍ତ୍ତୀ କାଳରୁ ସାହିତ୍ୟ ସାଧନାରେ ସେ ଏହି ଭାଷା ଉପରେ ସବୁଠାରୁ ଅଧିକ ଗୁରୁତ୍ୱ ଆରୋପ କରିଥିବା ଅତ୍ୟନ୍ତ ସ୍ୱାଭାବିକ ଥିଲା—ଅନ୍ତତଃ ମନର ଅବଚେତନ ସ୍ତରରେ । ସେ ଯେପରି ସ୍ଥିର କରିଥିଲେ "ବିଷମୟ ମିଷ୍ଟାନ୍ନ" ପରିବର୍ତ୍ତେ "ଅମୃତମୟ ମିଷ୍ଟାନ୍ନ" ପରିବେଷଣ କରି ତାଙ୍କ ଉଦ୍ଦେଶ୍ୟ ଉପରେ ଆରୋପିତ ଅମୂଳକ ସନ୍ଦେହକୁ ଦୂରୀଭୂତ କରିବା ପାଇଁ ସେ ଯେପରି ବଦ୍ଧପରିକର ହୋଇଥିଲେ ତାଙ୍କ ଉପରେ ହୋଇଥିବା ସମାଲୋଚନାର ଠିକଣା ଜବାବ ଦେବା ପାଇଁ । ଆଉ ବୀମ୍ସ ଓ ହଲାମଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ସେ ଏହି ଅମୃତର ପ୍ରକୃତ ଓ ଜୀବନ୍ତ ଓଡ଼ିଆ ଭାଷାର ସନ୍ଧାନ ପାଇଲେ ... ... ... ... କୃଷିଭିତ୍ତିକ ସମାଜର ଲୋକମାନଙ୍କ ମୁଖରେ ।

୫

ଓଡ଼ିଆ ଚଷାମାନଙ୍କର ବା ଅନ୍ୟକଥାରେ ଓଡ଼ିଶାର କୃଷିଭିତ୍ତିକ ସମାଜର ଲୋକମାନଙ୍କ ମୁଖର ଭାଷାକୁ ବ୍ୟବହାର କରି ଉଚ୍ଚମାନର ସର୍ଜନଶୀଳ ଗଦ୍ୟ ରଚନାର ଯେଉଁ ପରୀକ୍ଷା ଫକୀରମୋହନ କଲେ ତା ଯଥାର୍ଥରେ ଅଭୂତପୂର୍ବ । ବୀମ୍ସ (ଓ ହଲାମ)ଙ୍କ ଦୃଷ୍ଟିକୋଣ, ବିଚାରଧାରା ଓ ମତବାଦରୁ ପରିଚୟ ଲାଭ କରିବା ପରେ ଓ ଉଚ୍ଚମାନର ସର୍ଜନଶୀଳ ଗଦ୍ୟସାହିତ୍ୟ ରଚନାରେ ହାତଦେବା ପୂର୍ବରୁ ସେ ପ୍ରଶାସନ ସହ ଯୁକ୍ତହୋଇ ଓଡ଼ିଶାର ବିଭିନ୍ନ ସ୍ଥାନର ଗାଁ ଗହଳର ଚଷାମାନଙ୍କର—ବା ଅନ୍ୟ କଥାରେ କୃଷିଭିତ୍ତିକ ସମାଜର ପ୍ରାୟ ସବୁ

ଶ୍ରେଣୀର ଲୋକମାନଙ୍କର— ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ ଓ ସେମାନଙ୍କ ଭାଷାକୁ, ଅର୍ଥାତ୍ ଜୀବନ୍ତ ଓଡ଼ିଆ ଭାଷାକୁ, ଲକ୍ଷ୍ୟ କରିବା, ଅନୁଧ୍ୟାନ କରିବାର, ଭଲ ଭାବରେ ବୁଝିପାରିବାର ଓ ଏପରି କି ତାକୁ ନିଜର କରିନେବାର ପ୍ରଚୁର ସୁଯୋଗ ଲାଭ କରିଥିଲେ । (ଏହା ପୂର୍ବେ ନଟବର ସାମନ୍ତରାୟ ଦର୍ଶାଇଛନ୍ତି ।) ପ୍ରଶାସକ ଭାବରେ ତାଙ୍କ ପକ୍ଷରେ ତାହାର ବିଶେଷ ଆବଶ୍ୟକତା ମଧ୍ୟ ଥିଲା । ତେଣୁ ଜୀବନର ସାୟାହ୍ନରେ ସେ ଯେତେବେଳେ ଉଚ୍ଚମାନର ସର୍ଜନଶୀଳ ଗଦ୍ୟସାହିତ୍ୟ ରଚନାରେ ହାତ ଦେଲେ ସେତେବେଳେ ୧୯୦୦– ଶତାବ୍ଦୀ ପୂର୍ବର ତୀବ୍ର ପ୍ରତିକ୍ରିୟା ('ଉତ୍କଳ ଦୀପିକା'ର ସମାଲୋଚନାର ତଥା କାନ୍ତିଚନ୍ଦ୍ରଙ୍କ ଦାବୀ ଓ ତାଙ୍କ ପ୍ରଦତ୍ତ ଉଦ୍ଧୃତି ଓ ଉଦାହରଣର ପ୍ରତିକ୍ରିୟା ) ଓ ପ୍ରଭାବ (ବୀମ୍ସ ଓ ହାଲାମଙ୍କ ଦୃଷ୍ଟିକୋଣ ବିଗ୍ରହଧାରା ଓ ମତବାଦର ପ୍ରଭାବ) ଦ୍ୱାରା ଯେପରି କି ଅଜ୍ଞାତ ଭାବରେ ପରିଚାଳିତ ହୋଇ ସେଇ ଜୀବନ୍ତ ଓଡ଼ିଆ ଭାଷାର ଆଶ୍ରୟ ନେଲେ । ଆଉ ଓଡ଼ିଶାର କୃଷି-ଭିତ୍ତିକ ସମାଜର ପ୍ରାୟ ସବୁ ଶ୍ରେଣୀର ଲୋକମାନଙ୍କ ଭାଷାକୁ ଆଶ୍ରୟ ଓ ଅବଲମ୍ବନ କରିବାରୁ ତଥା ତାଙ୍କ ସାହିତ୍ୟ ସାଧନାରେ ତାକୁ ସବୁଠାରୁ ଅଧିକ ଗୁରୁତ୍ୱ ଦେବା ପ୍ରଚେଷ୍ଟାକୁ ସେଇ ଭାଷା ସହ ସେଇ ଭାଷାଭାଷୀମାନେ ଅର୍ଥାତ୍ ସେ ସମାଜର ପ୍ରାୟ ସବୁ ଶ୍ରେଣୀର ଚରିତ୍ରଗୁଡ଼ିକ ତାଙ୍କ ଗଳ୍ପ ଓ ଉପନ୍ୟାସ ଭିତରକୁ ପଶିଆସିଲେ ଆଉ ସେଇ ଚରିତ୍ରମାନଙ୍କ ସହ ସେଇ ସମାଜର ଦୁଃଖସୁଖ ଚିନ୍ତା ଓ ଚେତନା, ଜୀବନଯାତ୍ରା ଓ ସମସ୍ୟା ତାଙ୍କ ଉପନ୍ୟାସ ଓ ଗଳ୍ପରେ ବିଶେଷ ଭାବରେ ସ୍ଥାନ ପାଇଲା କାରଣ ଭାଷା ଓ ଭାଷାଭାଷୀ ଲୋକମାନଙ୍କ ମଧ୍ୟରେ, ଭାଷାଭାଷୀ ଲୋକଙ୍କ ସମାଜ, ଚଳଣି, ସଂସ୍କୃତି ଓ ସମସ୍ୟା ମଧ୍ୟରେ ଥାଏ ଏକ ନିବିଡ଼ ଓ ଅଚ୍ଛେଦ୍ୟ ସମ୍ପର୍କ ଯାହାକୁ ଛିନ୍ନ କରାଯାଇ ପାରେ ନାହିଁ । ଚଷାର ଭାଷାକୁ ଆଦରି ନେଇଥିବାରୁ ହିଁ ସେ ଚଷା ଜୀବନର ପ୍ରାଣକେନ୍ଦ୍ର ଜମିର ଗାଥା ଗାଇଲେ ତାଙ୍କ ପ୍ରଥମ ଉପନ୍ୟାସ "ଛ'ମାଣ ଆଠଗୁଣ୍ଠ"ରେ । ଏଇ ନାମକରଣରୁ ହିଁ ତାର ସ୍ପଷ୍ଟ ସୂଚନା ମିଳିଥାଏ । ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ମୋଟ ଉପରେ ଫକୀରମୋହନଙ୍କ ଭାଷା ହୋଇପଡ଼ିଛି ତାଙ୍କ ଉପନ୍ୟାସ ଓ ଗଳ୍ପର ନିୟନ୍ତା ବା ନିୟତି ।

ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପଗୁଡ଼ିକରେ ଭାଷାକୁ ଅବଲମ୍ବନ ଓ ଆଶ୍ରୟ କରି ଭାଷାଭାଷୀ ଚରିତ୍ରମାନଙ୍କର ଅଭ୍ୟୁଦୟ ହୋଇଥିବାରୁ ତାଙ୍କ ଉପନ୍ୟାସଗୁଡ଼ିକ ଓ କିଛି ପରିମାଣରେ ତାଙ୍କ ଗଳ୍ପଗୁଡ଼ିକ ଘଟଣା–ଓ/ବା–

ସମସ୍ୟା-ପ୍ରଧାନ ନ ହୋଇ ଚରିତ୍ର-ପ୍ରଧାନ ହୋଇପଡ଼ିଛି । ଫକୀରମୋହନଙ୍କ ଉପନ୍ୟାସ ସମ୍ପର୍କରେ ବିଶିଷ୍ଟ ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ କେତେକ ଉକ୍ତି ଏ ପ୍ରସଙ୍ଗରେ ତାତ୍ପର୍ଯ୍ୟପୂର୍ଣ୍ଣ ବୋଧହୁଏ । ସେ କହନ୍ତି, "ଫକୀରମୋହନଙ୍କ ଉପନ୍ୟାସ ଗୁଡ଼ିକୁ ଚରିତ୍ରଚିତ୍ରଶାଳା କହିଲେ ଅତ୍ୟୁକ୍ତି ହେବନାହିଁ । ଚରିତ୍ର ଚିତ୍ରଣ ହିଁ ଥିଲା ଔପନ୍ୟାସିକ ଫକୀରମୋହନଙ୍କର ଏକମାତ୍ର ଧ୍ୟାନ ।" (ମହାନ୍ତି, ସୁରେନ୍ଦ୍ର, ୧୯୮୧, ପୃ. ୪୩) । ସେ ଆହୁରି କହନ୍ତି, "ଫକୀରମୋହନଙ୍କ ଦୃଷ୍ଟିରେ ଚରିତ୍ର ଚିତ୍ରଣ ଏପରି ମୁଖ୍ୟ ଥିଲା ଯେ ଅନେକ କ୍ଷେତ୍ରରେ ଚରିତ୍ର ଚିତ୍ରଣ ପାଇଁ ସେ ପ୍ଲଟ ବା କଥାବସ୍ତୁ ନିୟନ୍ତ୍ରଣ କରି ଅଛନ୍ତି । ଚରିତ୍ର ପ୍ରଧାନ ଉପନ୍ୟାସର ତାହା ହିଁ ଲକ୍ଷଣ । ଗଳ୍ପ ଚରିତ୍ରକୁ ଅନୁସରଣ କରେ, ଐତିହାସିକ ବା ଘଟଣା ପ୍ରଧାନ ଉପନ୍ୟାସ ପରି ଚରିତ୍ର ଗଳ୍ପକୁ ଅନୁସରଣ କରେ ନାହିଁ ।" (ତତ୍ରୈବ, ପୃ. ୩୭) । ମୋଟ ଉପରେ ଭାଷାକୁ ଅବଲମ୍ବନ ଓ ଆଶ୍ରୟ କରି ଭାଷାଭାଷୀ ଚରିତ୍ରମାନଙ୍କର ଅଭ୍ୟୁଦୟ ହୋଇଥିବାରୁ ତାଙ୍କ ଉପନ୍ୟାସରେ କେତେକ ଚରିତ୍ରଙ୍କ ଆଗମନ କଥାବସ୍ତୁ ଦିଗରୁ ସ୍ୱାଭାବିକ ହୋଇଥିବା ବେଳେ ଆଉ କେତେକ ଚରିତ୍ର ଅକାରଣରେ ଅବାନ୍ତର ଭାବରେ ଅନୁପ୍ରବେଶ କରିଛନ୍ତି ବୋଲି ମଧ୍ୟ କୁହାଯାଇ-ପାରେ । (ସୁରେନ୍ଦ୍ର ମହାନ୍ତି ଏହି ଅବାନ୍ତର ଅନୁପ୍ରବେଶକୁ ମଧ୍ୟ ଲକ୍ଷ୍ୟ କରି ପାରିଛନ୍ତି । ଦ୍ରଷ୍ଟବ୍ୟ :- ତତ୍ରୈବ, ପୃ. ୪୧ ଓ ୫୯) । ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକରେ କଥାବସ୍ତୁଗତ ବା ଗଠନଗତ ଦୁର୍ବଳତାର ଏହା ହିଁ କାରଣ ।

ତେଣୁ ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପଗୁଡ଼ିକ ଅନୁଶୀଳନ ଓ ଅବବୋଧର ଅସଲ ଚାବିକାଠି ହେଉଛି ଫକୀରମୋହନ ପ୍ରବର୍ତ୍ତିତ ଅଭିନବ ଗଦ୍ୟରୀତି ବା ଅନ୍ୟ କଥାରେ କହିଲେ ତାଙ୍କ ଭାଷା । ଆଦ୍ୟ ଜୀବନର ସାହିତ୍ୟ ସାଧନାରେ ଏଇ ଭାଷାକୁ କେନ୍ଦ୍ର କରି ସମାଲୋଚିତ ହୋଇଥିବାରୁ ଭାଷାଉପରେ ଗୁରୁତ୍ୱ ଦେବା ତାଙ୍କ ପକ୍ଷରେ ସ୍ୱାଭାବିକ ଥିଲା । ଆଉ ଏଇ ଭାଷାକୁ କେନ୍ଦ୍ର କରି, ଅବଲମ୍ବନ ଓ ଆଶ୍ରୟ କରି ଭାଷାଭାଷୀ ଚରିତ୍ରମାନଙ୍କର, ସେମାନଙ୍କ ସୁଖଦୁଃଖର, ସେମାନଙ୍କ ଜୀବନ ଯାତ୍ରା ଓ ସମସ୍ୟାର, ଚଳଣି ଓ ରୀହାଣିର, ଚିନ୍ତା ଓ ଚେତନାର ଆବିର୍ଭାବ ଓ ଅବିକଳ ପ୍ରତିଫଳନ ଘଟିଛି ତାଙ୍କ ଉପନ୍ୟାସ ଓ ଗଳ୍ପ-ଗୁଡ଼ିକରେ । ଭାଷା କେବଳ ନିଜେ ଆସିନାହିଁ ସେ ସବୁକୁ ମଧ୍ୟ ସାଥିରେ ନେଇ ଆସିଛି ସେ ସବୁ ସହ ଭାଷାର– ପାର୍ବତୀଙ୍କ ସହ ପରମେଶ୍ୱରଙ୍କ ସମ୍ପର୍କ ପରି–

ନିବିଡ଼, ଆମ୍ଭିକ, ଅଙ୍ଗାଙ୍ଗୀ ଓ ଅବିଛେଦ୍ୟ ସମ୍ପର୍କ ଥିବାରୁ । ଆଉ ଏପରି ଭାଷା ପ୍ରୟୋଗର, ସର୍ଜନଶୀଳ ସାହିତ୍ୟରେ ଏପରି ଭାଷା ବ୍ୟବହାରର ମୂଳ ବା ପ୍ରେରଣାର ଉତ୍ସ ଥିଲା ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଭିତରେ ଓ ବିଶେଷ ଭାବରେ ବୀମ୍ସ (ଓ ହଲ୍ଲାମ )ଙ୍କ ଦୃଷ୍ଟିକୋଣ, ବିଗ୍ରହଧାରା ଓ ମତବାଦ ମଧ୍ୟରେ । ଏହା ବୁଝି ନ ପାରିଲେ ଫକୀରମୋହନଙ୍କ ଗଦ୍ୟ ସାହିତ୍ୟର ପ୍ରକୃତ ଓ ଗଭୀର ଅବବୋଧ ତଥା ମର୍ମୋଦ୍‌ଘାଟନ ସମ୍ଭବ ହୋଇ ପାରିବ ନାହିଁ ।

ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ ସାମାଜିକ ଓ ସାହିତ୍ୟିକ ରୁଚି ପରିବର୍ତ୍ତନ ହେତୁ ସାହିତ୍ୟ ବାସ୍ତବମୁଖୀ ହୋଇଥିଲା ; ସାହିତ୍ୟ ବାସ୍ତବମୁଖୀ ହେବାରୁ ଫକୀରମୋହନଙ୍କ ସାହିତ୍ୟର ବିଷୟବସ୍ତୁ, ଚରିତ୍ରଚିତ୍ରଣ ଆଦିରେ ମଧ୍ୟ ବାସ୍ତବବାଦର ପ୍ରତିଫଳନ ପଡ଼ିଲା ଓ ତାହା ସହ ସାମଞ୍ଜସ୍ୟ ରକ୍ଷାକରିବା ପାଇଁ ବାସ୍ତବବାଦର ପ୍ରଭାବରେ ସେ ଏପରି ଅଭିନବ ଗଦ୍ୟରୀତିର ପ୍ରବର୍ତ୍ତନ କଲେ ବା ଲୋକମୁଖର ଭାଷାରେ ଉପନ୍ୟାସ ଓ ଗଳ୍ପ ରଚନା କଲେ ପରି ଅଭିବ୍ୟକ୍ତି ଓ ଦୃଷ୍ଟିକୋଣ ଅତ୍ୟନ୍ତ ଉପରଠାଉରିଆ ଓ ତାର ଭିତ୍ତିଭୂମି ଦୁର୍ବଳ ହେତୁ ତାହା ଆଦୌ ଗ୍ରହଣୀୟ ନୁହେଁ । କାରଣ ଏ ବାସ୍ତବବାଦର ମୂଳ ବା ପ୍ରେରଣାର ଉତ୍ସ କେଉଁଠାରେ ଥିଲା, ତା କେବେ ଓ କିପରି ଆସିଲା, ତା ଫକୀରମୋହନଙ୍କୁ ଓ ତାଙ୍କ ସାହିତ୍ୟାଦର୍ଶକୁ କିପରି ଓ କାହିଁକି ପ୍ରଭାବିତ କଲା, ସେ ପ୍ରଭାବର ତୀବ୍ରତା କେତେ ଥିଲା, ଆଉ ଏ ବାସ୍ତବବାଦ ବନ୍ୟାର ତରଙ୍ଗ ଓଡ଼ିଶାକୁ ଆସି ରାଧାନାଥ, ମଧୁସୂଦନ ଓ ରମାଶଙ୍କର ଆଦି ସମସାମୟିକ ସାହିତ୍ୟିକମାନଙ୍କ ସାହିତ୍ୟକୁ ସ୍ପର୍ଶ ବି କରିପାରି ନଥିବା ବେଳେ କାହିଁକି ଓ କିପରି ଫକୀରମୋହନଙ୍କ ସାହିତ୍ୟକୁ ତଥା ତାଙ୍କ ଗଦ୍ୟରୀତିକୁ ସମ୍ପୂର୍ଣ୍ଣ ଭାବରେ ପରିପ୍ଲାବିତ କଲା, ଅଭିଭୂତ କଲା ଆଦି ପ୍ରଶ୍ନଗୁଡ଼ିକର କୌଣସି ସନ୍ତୋଷଜନକ ଉତ୍ତର ନାହିଁ ବା ଦିଆଯାଇନାହିଁ । ଇନ୍ଦ୍ରଧନୁ–ବିଜୁଳୀ ବିବାଦ ବା ଅନ୍ୟକଥାରେ ପ୍ରାଚୀନ-ଆଧୁନିକ ରୁଚି ସଂଘର୍ଷ ଜନିତ ପ୍ରତିକ୍ରିୟା ଫକୀରମୋହନ ସାହିତ୍ୟରେ ବାସ୍ତବବାଦର ମୂଳରେ ଥିଲାପରି ଉକ୍ତି ମଧ୍ୟ ପୂର୍ବୋକ୍ତ ପ୍ରଶ୍ନ ଗୁଡ଼ିକର ଏକ ଗଭୀରତାବିହୀନ ଉତ୍ତର ଓ ଯଥାର୍ଥ ଉତ୍ତର ନୁହେଁ । ଏ ପ୍ରଶ୍ନଗୁଡ଼ିକର ସନ୍ତୋଷଜନକ ବା ବିଶ୍ୱାସଯୋଗ୍ୟ ଉତ୍ତର ଦିଆଯାଇ ନଥିବାରୁ ଉପରୋକ୍ତ ଅଭିବ୍ୟକ୍ତି ଓ ଦୃଷ୍ଟିକୋଣକୁ ଅତ୍ୟନ୍ତ ଦୁର୍ବଳ-ଭିତ୍ତିଭୂମିସମ୍ପନ୍ନ ବୋଲି କୁହାଯାଇପାରେ । ଫକୀରମୋହନ ସାହିତ୍ୟରେ ପ୍ରତିଫଳିତ ବାସ୍ତବବାଦର ମୂଳ ରହିଛି ଫକୀରମୋହନଙ୍କ ଗଦ୍ୟରୀତି ଓ ଭାଷାରେ ।

ଭାଷାକୁ ଆଶ୍ରୟ କରି ହିଁ ଏ ବାସ୍ତବବାଦର ଅଭ୍ୟୁଦୟ ହୋଇଛି ବୋଲି ଗ୍ରହଣ କଲେ ଉପରୋକ୍ତ ସମସ୍ତ ପ୍ରଶ୍ନର ଉତ୍ତର ସହଜରେ ମିଳିଯିବ । ତେଣୁ ବାସ୍ତବବାଦର ପ୍ରଭାବରେ ଫକୀରମୋହନ ଲୋକମୁଖର ଭାଷାରେ ସର୍ଜନାତ୍ମକ ସାହିତ୍ୟ ରଚନା କରିଥିଲେ ବୋଲି କହିବା ଭୁଲହେବ । ବରଂ ଫକୀରମୋହନ ଲୋକମୁଖର ଭାଷାରେ ସର୍ଜନାତ୍ମକ ସାହିତ୍ୟ ରଚନା କରିବା ପ୍ରଚେଷ୍ଟାକୁ ତାଙ୍କ ସାହିତ୍ୟରେ ବାସ୍ତବବାଦର ଅଭ୍ୟୁଦୟ ହୋଇଥିଲା ବୋଲି କହିବା ଆଜି ଯଥାର୍ଥ ହେବ । ଗତାନୁଗତିକ ପନ୍ଥାରେ ଗତି କରିବାରେ ଅଭ୍ୟସ୍ତ ଅନେକଙ୍କୁ ଏହା ଆଜି ଅଡୁଆ ଲାଗିପାରେ, କିନ୍ତୁ ଏହା ହିଁ ସତ୍ୟ ।

ଏଠାରେ ପ୍ରଶ୍ନ କରଯାଇପାରେ ଯେ ପରବର୍ତ୍ତୀ କାଳରେ ରଚିତ ଫକୀରମୋହନଙ୍କ କେତେକ ଗଦ୍ୟରଚନାରେ ତତ୍ସମ ଶବ୍ଦର ବହୁଳତା କାହିଁକି ଦୃଷ୍ଟି ଗୋଚର ହୁଏ ? ତାହା ଉପରୋକ୍ତ ସିଦ୍ଧାନ୍ତର ପ୍ରତିକୂଳାଚରଣ କରେ ନାହିଁ କି ? ଏହାର ଉତ୍ତର ନିମ୍ନ ଭାବରେ ଦିଆଯାଇପାରେ । ପ୍ରଥମରେ ପରିସ୍ଥିତି ଓ ପରିବେଶଗତ ବିଭିନ୍ନତା ହେତୁ ଫକୀରମୋହନଙ୍କ କେତେକ ଉପନ୍ୟାସରେ କେତେକ ଗୁରୁଗମ୍ଭୀର ପରିବେଶରେ ତତ୍ସମ ବହୁଳ ଗଦ୍ୟର ବ୍ୟବହାର କରଯାଇଛି ଯାହାର ଆବଶ୍ୟକତା ଥିଲା ଓ ସେ କ୍ଷେତ୍ରରେ ଫକୀରମୋହନଙ୍କ ସ୍ୱାଧୀନତା ନ ଥିଲା । ଦ୍ୱିତୀୟରେ ଏପରି ଗଦ୍ୟର ପରିମାଣ ସ୍ୱଳ୍ପ । ଫକୀରମୋହନଙ୍କ ସାହିତ୍ୟରେ ବ୍ୟବହୃତ ବିଭିନ୍ନ ପ୍ରକାର ଶବ୍ଦଗୁଡ଼ିକର ପରିସଂଖ୍ୟାନଭିତ୍ତିକ ଅନୁଶୀଳନ ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ । କିନ୍ତୁ ଗ୍ରନ୍ଥାବଳୀର ପୃଷ୍ଠା ସଂଖ୍ୟାକୁ ବିଚାରକୁ ନେଲେ ଦେଖାଯିବ ଯେ ଏପରି ଗଦ୍ୟର ପରିମାଣ କମ ; ତାଙ୍କ ସମସ୍ତ ଗଦ୍ୟରଚନାର ପ୍ରାୟ ଏକଦଶମାଂଶ ହେବ । ଏ ସବୁ ଗଦ୍ୟ ମୁଖ୍ୟତଃ ପ୍ରବନ୍ଧ । ଏଥିରେ ଉଚ୍ଚ ଚିନ୍ତା ଓ ଗୁରୁଗମ୍ଭୀର ଭାବର ସୁସ୍ପଷ୍ଟ ପରିପ୍ରକାଶ ପାଇଁ ଫକୀରମୋହନ ବହୁ ତତ୍ସମ ଶବ୍ଦ ବ୍ୟବହାର କରିବାକୁ ବାଧ୍ୟ ହୋଇଛନ୍ତି କାରଣ ସବୁ ତତ୍ସମ ଶବ୍ଦର ଦେଶଜ, ଏପରି କି ତଦ୍ଭବ ପ୍ରତିଶବ୍ଦ ଓଡ଼ିଆ ଭାଷାରେ ନ ମିଳିପାରେ । ଏହାର ଉଦାହରଣ "ଯୋଗଶାସ୍ତ୍ର" ଶୀର୍ଷକ ଦୀର୍ଘ ପ୍ରବନ୍ଧ । କିନ୍ତୁ "ସିରାଜ ଉଦ୍ଦୌଲାଙ୍କ ଘଟଶାଳୀ ଏବଂ ଗୁରୁଦକ୍ଷିଣା" ଓ "ଉତ୍କଳ ସାହିତ୍ୟର ପ୍ରାଣପ୍ରତିଷ୍ଠା" ପ୍ରବନ୍ଧ ଦୁଇଟିର ଭାଷାରେ ତତ୍ସମ ଶବ୍ଦର ବ୍ୟବହାର ଅପେକ୍ଷାକୃତ କମ୍ । ଆଉ 'ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି' ଛଦ୍ମନାମରେ ରଚିତ "ନନାଙ୍କ ପାଞ୍ଜି" ସମ୍ପୂର୍ଣ୍ଣ ଭାବରେ "ଯୋଗଶାସ୍ତ୍ର"ର ବିପରୀତଧର୍ମୀ ଗଦ୍ୟ । ଏହା ଓଡ଼ିଶା

ସାହିତ୍ୟରେ ଲୋକପ୍ରଚଳିତ ଭାଷା ଓ ସରଳ ତରଳ ଲଘୁ ହାସ୍ୟରସାତ୍ମକ ଶୈଳୀର ପ୍ରବନ୍ଧ ରଚନାରେ ନୂତନ ଦିଗ୍‌ଦର୍ଶନ ଦେଇ ଲଳିତନିବନ୍ଧ ରଚନାର ଆଦ୍ୟ ସୂଚନା କରିଥିଲେ ବୋଲି କୁହାଯାଇପାରେ । ମୋଟ ଉପରେ ତତ୍ସମଶବ୍ଦ ବହୁଳ ଗଦ୍ୟରଚନାକୁ ଫକୀରମୋହନଙ୍କ ଗଦ୍ୟରୀତିର ବ୍ୟତିକ୍ରମ ବୋଲି ଧରିନେବା ଉଚିତ ହେବ ।

୭

ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଫକୀରମୋହନଙ୍କ ଗଦ୍ୟରୀତିର ମୂଳ ବା ପ୍ରେରଣାଉତ୍ସ ହୋଇ ତାଙ୍କ ସାହିତ୍ୟର ଅନ୍ୟାନ୍ୟ ବିଭାଗକୁ ମଧ୍ୟ କିପରି ପ୍ରଭାବିତ କରିପାରିଥିଲା ତାହାକୁ ଉପରେ କରାଯାଇଥିବା ଆଲୋଚନା ମାଧ୍ୟମରେ ଦେଖାଇ ଦିଆଗଲା । ଏଇଥିରୁ ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶରେ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ କିଛି ପରିମାଣରେ କଳନା କରାଯାଇପାରେ । ଏହାର ପୁଣି ଆହୁରି ଏକ ସୁଦୂରପ୍ରସାରୀ ଦିଗ ରହିଛି । କାରଣ ପରବର୍ତ୍ତୀ କାଳର ବହୁ ସାହିତ୍ୟିକ ଫକୀରମୋହନଙ୍କ ଗଦ୍ୟରୀତିରେ, ଅର୍ଥାତ୍ ଲୋକପ୍ରଚଳିତ ଭାଷାରେ ଉଚ୍ଚମାନର ସର୍ଜନାତ୍ମକ-ସାହିତ୍ୟ-ସୃଷ୍ଟିର ସଫଳ ପରୀକ୍ଷାରେ, ଅନୁପ୍ରେରିତ ହୋଇ, ଅନୁପ୍ରାଣିତ ହୋଇ ଓ ପ୍ରଭାବିତ ହୋଇ ସେପରି ଶୈଳୀକୁ ଅନୁସରଣ ଓ ଅନୁକରଣ କରିବାର ଚେଷ୍ଟା ତ କରିଥିଲେ, ପୁଣି କେତେକ ପରିମାଣରେ ସଫଳତା ମଧ୍ୟ ହାସଲ କରିଥିଲେ । କେବଳ ସେତିକି ନୁହେଁ ଫକୀରମୋହନଙ୍କ ଅନୁସରଣରେ ତାଙ୍କ ପ୍ରବର୍ତ୍ତିତ ବାସ୍ତବବାଦୀ ଆଭିମୁଖ୍ୟ ମଧ୍ୟ ପରବର୍ତ୍ତୀ କାଳର ବହୁ ସାହିତ୍ୟକୃତିରେ ସ୍ଥାନ ପାଇଛି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ଗୁରୁତ୍ୱପୂର୍ଣ୍ଣ ଓ ବିଶେଷ ଭୂମିକାକୁ ଆଜି ଆଉ ଅସ୍ୱୀକାର କରାଯାଇ ପାରିବ କି ?

୭

ଓଡ଼ିଶାର ଶିକ୍ଷାବ୍ୟବସ୍ଥାରେ ଓଡ଼ିଆ ଭାଷାକୁ ଅତି ଉଚ୍ଚ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇ ତାର ସଂରକ୍ଷଣ, ତାର ପ୍ରସାର ତଥା ସେ ଭାଷାରେ ଉଚ୍ଚମାନର ଆଧୁନିକ ସର୍ଜନାତ୍ମକ ସାହିତ୍ୟର ଉନ୍ମେଷ ଓ ବିକାଶରେ ଇଂରେଜ ପ୍ରଶାସନ ରେଭେନ୍‌ସା (T. E. Ravenshaw)ଙ୍କର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅବଦାନ

ରହିଅଛି । ୧୮୬୫ରୁ ୧୮୭୩ ପର୍ଯ୍ୟନ୍ତ ସେ ଦିଗରେ ଧାରବାହିକ ଉଦ୍ୟମ ଅବ୍ୟାହତ ରଖି ଓ ସେ ଉଦ୍ୟମରେ ସଫଳ ହୋଇ ସେ ଓଡ଼ିଆମାନଙ୍କର ପରମ ସ୍ମରଣୀୟ ହୋଇ ପାରିଛନ୍ତି (ଅଧିକ ବିବରଣୀ ପାଇଁ ଦ୍ରଷ୍ଟବ୍ୟ :- ଦାଶ, ଗଗନେନ୍ଦ୍ର ନାଥ, ୧୮୮୬, ୧୯୮୯ ଓ ୯୯୯୦) । ସେ କ୍ଷେତ୍ରରେ ଆଉ ଜଣେ ଇଂରଜ ପ୍ରଶାସକ ଜନ୍ ବୀମ୍ସଙ୍କର ମଧ୍ୟ କିଛି ଅବଦାନ ରହିଛି । ତେବେ ଆଧୁନିକ ଓଡ଼ିଆ ଗଦ୍ୟରୀତିର ଏକ ବଳିଷ୍ଠ ଧାରର ଉନ୍ମେଷ ଓ ବିକାଶରେ ଜନ୍ ବୀମ୍ସଙ୍କର ଏ ପର୍ଯ୍ୟନ୍ତ ଅନାବିଷ୍କୃତ ଓ ଅଜ୍ଞାତ ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ଯାହାକୁ ଉପେକ୍ଷା କରିବା ଆଜି ଆଉ ଉଚିତ ହେବ ନାହିଁ ।

## ଉପାଦାନ ପଞ୍ଜିକା


ଦାଶ, ଗଗନେନ୍ଦ୍ର ନାଥ, ୧୯୮୬, ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ : ଏକ ସିଂହାବଲୋକନ, ଝଙ୍କାର ୩୮/୮ (ପୃ. ୭୭୮-୭୫) ୩୮/୯ (ପୃ. ୮୪୭-୫୭)

୧୯୮୮, ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ : ଏକ ଦୃଷ୍ଟିପାତ, ମୂଲ୍ୟାୟନ–୨୨, ୪/୬ (ପୃ. ୧-୧୯)

୧୯୮୯, ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ : ପୁନ-ର୍ସିଂହାବଲୋକନ, ଝଙ୍କାର ୪୧/୫ (ପୃ. ୪୧୮-୩୧)
୪୧/୬ (ପୃ. ୪୮୯-୯୮)
୪୧/୭ (ପୃ. ୬୮୮-୯୨)
୪୧/୮ (ପୃ. ୭୧୯-୨୩)
୪୧/୯ (ପୃ. ୮୦୯-୧୬)

ଦାଶ, ଗଗନେନ୍ଦ୍ର ନାଥ, ୧୯୯୦, ଓଡ଼ିଆ ଭଷା-ସୁରକ୍ଷା ଆନ୍ଦୋଳନ : ପୁନଃ ସିଂହାବଲୋକନ, ଝଙ୍କାର, ୪୧/୧୦ (ପୃ. ୮୮୧-୮୯)
୪୧/୧୧ (ପୃ. ୯୭୫-୮୩)
୪୨/୧୨ (ପୃ. ୧୦୫୩-୬୦)
୪୨/୨ (ପୃ. ୧୬୩-୭୦)
୪୨/୩ (ପୃ. ୨୩୫-୪୨)
ଦାସ, ସର୍ବେଶ୍ୱର, ୧୯୭୨, ଯୁଗସ୍ରଷ୍ଟା ଫକୀରମୋହନ (୫ମ ସଂସ୍କରଣ) ।
ପଟ୍ଟନାୟକ, ସୁଧାକର, ୧୯୭୭, ସମ୍ବାଦପତ୍ରରୁ ଓଡ଼ିଶାର କଥା ।
ବୋଲଟନ, କେ. ଭି., ୧୯୭୬, ଦେଶ, କାଳ. ପାତ୍ର ଓ ମନୀଷୀ ଫକୀରମୋହନ ।
ଭଟ୍ଟାଚାର୍ଯ୍ୟ, କାନ୍ତିଚନ୍ଦ୍ର, ୧୮୭୦, ଉଡ଼ିୟା ସ୍ୱତନ୍ତ୍ର ଭଷା ନହେ ।
ମହାନ୍ତି, ବଂଶୀଧର, ୧୯୮୯, ଓଡ଼ିଆ ଭଷା ଆନ୍ଦୋଳନ ।
ମହାନ୍ତି, ସୁରେନ୍ଦ୍ର, ୧୯୮୧, ଫକୀରମୋହନ ସମୀକ୍ଷା (୩ୟ ସଂସ୍କରଣ) ।
ମହାପାତ୍ର, ଶିଶିର, ୧୯୮୬, ଫକୀରମୋହନଙ୍କ ବ୍ୟାକରଣ ପୁସ୍ତକ । ଝଙ୍କାର, ୩୨/୧୨, (ପୃ. ୧୦୮୫-୮୭)
ମିଶ୍ର, ଶ୍ରୀନିବାସ, ୧୯୭୮, ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ।
ସାମନ୍ତରାୟ, ନଟବର, ୧୯୬୪, ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ।
୧୯୭୨, ବ୍ୟାସକବି ଫକୀରମୋହନ । (୨ୟ ସଂସ୍କରଣ)
ସେନାପତି, ଫକୀରମୋହନ, ୧୯୬୩, ଫକୀରମୋହନ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ (୨ୟ ସଂସ୍କରଣ), ଦ୍ୱିତୀୟ ଖଣ୍ଡ (୨ୟ ସଂସ୍କରଣ)
Beames, John, 1870, On the Relation of the Uriya to the other Modern Aryan Languages, Proceedings of the Asiatic Society, Bengal, June, (PP. 192-216)
1961, Memoirs of a Bengal Civilian.
1966, A Comparative Grammar of the Modern Aryan Languages of India. (Books I, II and III in one volume).
ଉତ୍କଳ ଦୀପିକା, ୧୮୬୯ ଓ ୧୮୭୦ ।

●

ପ୍ରଫେସର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ।

# ଫକୀରମୋହନ : ନିଜସ୍ୱ କବିତାର ଦର୍ପଣରେ ନିଜେ

ବ୍ରଜନାଥ ରଥ

କବି ଚିରକାଳ ନିଜସ୍ୱ କବିତାର ଦର୍ପଣରେ ହିଁ ନିଜେ ପ୍ରତିଭାତ ହୋଇଥାଏ । ବିମ୍ବିତ ହୋଇଥାଏ ତାର ଜୀବନ ଓ ଜଗତ୍, ସମୟ ଓ ସମାଜ । ଏହା କେତେବେଳେ ପ୍ରତ୍ୟକ୍ଷ ବା କେତେବେଳେ ପରୋକ୍ଷ । ଯେତେବେଳେ ଜଣେ ମୁଗ୍ଧ ପାଠକ ସମାଲୋଚକର ରହସ୍ୟଭେଦୀ ଦୃଷ୍ଟିକୋଣ ନେଇ, ଅନୁସନ୍ଧିତ୍ସୁ ମନର ଅନ୍ତର୍ଭେଦୀ ରଞ୍ଜନ-ରଶ୍ମି ପକାଇ କବି ସୃଷ୍ଟିର ସେହି ରହସ୍ୟ ଭେଦ କରିବାକୁ ଚେଷ୍ଟାକରେ ସେତେବେଳେ ତା' ଆଗରେ ଉଦ୍‌ଘାଟିତ ହୁଏ କବି ଜୀବନର ବହୁ ଜ୍ଞାତ-ଅଜ୍ଞାତ ବିଚିତ୍ର ତଥ୍ୟ, ଯାହା ତା' ସୃଷ୍ଟିର ସ୍ତରେ ସ୍ତରେ ସ୍ୱର୍ଣ୍ଣରେଣୁ ଭଳି ଲୁକ୍‌କାୟିତ ଥାଏ । ରହସ୍ୟ-ଘନ ଅକ୍ଷର ଭିତରେ ବନ୍ଦୀ ହୋଇଥିବା କବିସତ୍ତାଟିକୁ ଖୋଜୁ ଖୋଜୁ ବିମୁଗ୍ଧ ବିସ୍ମୟରେ ଦେଖେ କେଉଁଠି ତାହା ଆନନ୍ଦମୟ କଳ୍ପଲୋକର ସନ୍ଧାନୀ ତ, କେଉଁଠି ଦାରୁଣ ମର୍ମଦାହରେ ଜର୍ଜରିତ ; କେଉଁଠି ଅଦ୍ଭୁତ ଆଶା-ଆଲୋକରେ ଉଦ୍‌ଭାସିତ ତ, କେଉଁଠି ନିରାଶାର ଘନାନ୍ଧକାରରେ ନିମଜ୍ଜିତ ; ପୁଣି କେଉଁଠି ପ୍ରେମ ଓ ଜୀବନର ବିଚିତ୍ର ଉଦ୍‌ଗାତା ତ, କେଉଁଠି ମୃତ୍ୟୁ-ଦେବତାର ସ୍ୱାଗତଗୀତିର ମୁଗ୍ଧ ଗାୟକ । ଜୀବନର ବିଚିତ୍ରବର୍ଣ୍ଣା ଅନୁଭୂତି ଭିତରେ କବି ଯାହା ସୃଷ୍ଟିକରେ, ଯାହା ରୂପଦିଏ ସେହି ଅନୁପମ ସୃଜନ କଳା ଭିତରେ ସେ କେତେବେଳେ ନେପଥ୍ୟ-ନାୟକ ଭାବରେ ଲୁଚି ରହିଯାଇଥାଏ ତାହା ସେ ନିଜେ ହୁଏ ତ ଜାଣିପାରେ ନାହିଁ, କିନ୍ତୁ ଉତ୍ସାହୀ ପାଠକ ବା ସନ୍ଧାନୀ ସମାଲୋଚକର ଆଣବୀକ୍ଷଣିକ ଦୃଷ୍ଟିର ଯବକାଚ ଭିତରେ ସେ ଧରାପଡ଼ିଥାଏ ଏବଂ ତାର ନିଜସ୍ୱ ରୂପର ଆତ୍ମିକ ପ୍ରତିବିମ୍ବ ଅତି ଅଦ୍ଭୁତ ଭାବରେ ଝଲସି ଉଠେ । ବହୁବର୍ଷ ଅତିକ୍ରାନ୍ତ ହେଲା ପରେ ବି ଆମେ ସେହି କବିତାର ଦର୍ପଣରେ

ପ୍ରତିବିମ୍ବିତ କବିଟିକୁ ଭଲକରି ଚିହ୍ନିପାରୁଁ, ଶୁଣିପାରୁଁ ଏକଦା ତା' ଜୀବନର ସୁଖ-ଦୁଃଖ, ଆଶା-ନିରଶାର କାହାଣୀ ଏବଂ ଖୁବ୍ ଅନ୍ତରଙ୍ଗ ଭାବେ ଅନୁଭବ କରିପାରୁଁ ତା' ଅନୁଭୂତି ଲବ୍ଧ ଜୀବନର ସମ୍ପୂର୍ଣ୍ଣ ମର୍ମବାଣୀ । ଏହି ପରିପ୍ରେକ୍ଷୀରେ ଆଜି ଫକୀରମୋହନଙ୍କ ମୃତ୍ୟୁର ଚଉସ୍ତରୀ ବର୍ଷପରେ ଆମେ ଯଦି ତାଙ୍କର ଗୁରୋଟି ପ୍ରମୁଖ କବିତା ସଙ୍କଳନ 'ପୁଷ୍ପମାଳା', 'ଉପହାର' "ଅବସର ବାସରେ" ଓ 'ପୂଜାଫୁଲ' ଗ୍ରନ୍ଥର ପୃଷ୍ଠାପରେ ପୃଷ୍ଠା ଓଲଟାଉଁ ତା ହେଲେ ଆମ ଆଖିରେ ପଡ଼ିବେ ଏଭଳି କେତେକ କବିତା, ଯାହା ଭିତରେ ଆପାତ ପ୍ରଚ୍ଛନ୍ନ ଭାବରେ ରହିଛି କବିଙ୍କ ବ୍ୟକ୍ତିଗତ ଭାବସତ୍ତା । ଏହି ବ୍ୟକ୍ତିଗତ କବିସତ୍ତାର ରୂପ ଖୁବ୍ ନିଃସଙ୍ଗ, ଖୁବ୍ ଦୁଃଖୀ, ଖୁବ୍ କରୁଣ ଅଥଚ ଏକ ଅଦ୍ଭୁତ ଆତ୍ମ-ପ୍ରତ୍ୟୟରେ ଭାସ୍ୱର । କଥା ସମ୍ରାଟ ଫକୀରମୋହନ ଓ ବ୍ୟାସକବି ଫକୀରମୋହନଙ୍କ ଭିତରେ ତଫାତ୍ ଏଇଠି । କଥା ଓ କବିତା, ଉଭୟର ସ୍ରଷ୍ଟା ଜଣେ ହେଲେବି, ମନେ ହୁଅନ୍ତି ଯେମିତି ଦୁଇଟି ଚେତନା-ଜଗତର ଅଧିବାସୀ । କଥାକାର ଫକୀର-ମୋହନଙ୍କ ଦୃଷ୍ଟିକୋଣ ତୀର୍ଯ୍ୟକ୍, ଭାଷା ଶାଣିତ, କଥନଭଙ୍ଗୀ ଲଘୁ ଓ ବକ୍ର ଏବଂ ସେ ଏକାନ୍ତଭାବେ ସମାଜମୁଖୀ । କିନ୍ତୁ କବି ଫକୀରମୋହନଙ୍କ ଦୃଷ୍ଟିଭଙ୍ଗୀ ଏକାନ୍ତ କରୁଣ, ଭାଷା ପ୍ରାଞ୍ଜଳ, କଥନଶୈଳୀ ସରଳ ଓ ଋଜୁ ଏବଂ ସେ ସର୍ବୋତ-ଭାବେ ଅନ୍ତର୍ମୁଖୀ । ଯେଉଁ କାବ୍ୟପୁରୁଷଟିକୁ ଆମେ ଏହି ଗୁରୋଟି ପ୍ରମୁଖ କବିତା ଗ୍ରନ୍ଥ ଭିତରେ ଭେଟୁଁ ସେ ଏକ ଦୁଃଖୀ ମଣିଷ, ଏକ ରଣକ୍ଲାନ୍ତ ସୈନିକ । ଦୀର୍ଘକାଳ ଧରି ତା' ହୃଦୟ-କନ୍ଦରରେ ଗୁପିହୋଇ ରହିଥିବା ରାଶି ରାଶି ଦୁଃଖର ଅଲଂଘ୍ୟ ଅଚଳାୟତନକୁ ଘୁଞ୍ଚାଇବାକୁ ଚେଷ୍ଟାକରି ସେ ଯେମିତି ଅମୃତ-ପ୍ଲାବିନୀ କବିତା-ନିର୍ଝରିଣୀର ଉତ୍ସ ସନ୍ଧାନ କରିଛି ଏବଂ ତାର ବିମଳ-ଶୀତଳ ଜଳରାଶିରେ ଆକଣ୍ଠ ଅବଗାହନ କରି ଅପାର ଆନନ୍ଦଲାଭ କରିଛି ।

ଏହି କବିତା ସଙ୍କଳନଗୁଡ଼ିକର ପ୍ରକାଶକାଳ ୧୮୯୪ରୁ ୧୯୧୨ ମସିହା ମଧ୍ୟରେ । ୧୮୯୪ ମସିହା ଭାଦ୍ର ଶୁକ୍ଳ ଦଶମୀରେ ଫକୀରମୋହନଙ୍କ ପ୍ରାଣପ୍ରିୟା ଦ୍ୱିତୀୟାପତ୍ନୀ, କବିଙ୍କ କହିବାନୁଯାୟୀ, ତାଙ୍କ ଗୃହ ପ୍ରାଙ୍ଗଣରେ ଲବଙ୍ଗଲତା, ଜୀବନର ଦାରୁଣ ନିଦାଘରେ ପୁଣ୍ୟତୋୟା ତରଙ୍ଗିଣୀ ଏବଂ ଯାହାକୁ ଦେଖି ତାଙ୍କ ନେତ୍ରଦ୍ୱୋଳ ତୃପ୍ତ ହେଉଥିଲ, ସେହି କୃଷ୍ଣକୁମାରୀଙ୍କର ୩୪ ବର୍ଷ ବୟସରେ ଅକାଳ ବିୟୋଗ ଘଟିଥିଲ । ଏହି ଦାରୁଣ ବିୟୋଗ ଜନିତ ଦୁଃଖରେ ଭାଙ୍ଗି-ପଡ଼ିଲେ କବି । ସେତେବେଳକୁ ତାଙ୍କ ବୟସ ୫୨ ବର୍ଷ ଏବଂ ସେ ବାର୍ଦ୍ଧକ୍ୟର

ମୁଖଶାଳାରେ ଉପସ୍ଥିତ । ଏହା ପରେ ପରେ ଡୋମପଡ଼ା ରଜାଙ୍କ ଦ୍ୱାରା ଭୁଲ ବୁଝାମଣାର ପଦଚ୍ୟୁତ ହୋଇ ସେ ଆସି କିଛିକାଳ ଅବସ୍ଥାନ କଲେ କଟକରେ । ବ୍ୟାଧି ଓ ଅର୍ଥାଭାବ ଲାଗି ରହିଥାଏ । ଏକମାତ୍ର ପୁତ୍ର ମୋହିନୀମୋହନଙ୍କ ସହ ମନୋମାଳିନ୍ୟ ତାଙ୍କୁ କ୍ରମଶଃ ଅସହ୍ୟ ବୋଧ ହେଉଥାଏ । ଏହିଭଳି ଏକ ଦୁଃଖାବହ ଅବସ୍ଥାରେ ସେ ବାଲେଶ୍ୱର ଫେରିଆସି ୧୯୧୮ ଜୁନ୍ ୧୪ ତାରିଖରେ ପୃଥିବୀରୁ ବିଦାୟ ନେବା ପର୍ଯ୍ୟନ୍ତ ଦୀର୍ଘ ୧୩ ବର୍ଷ କାଳ ଏକାକୀ ନିଃସଙ୍ଗ ଜୀବନ ଯାପନ କଲେ । ସେ ଲେଖିଛନ୍ତି "ଏକାକୀ ରହିବା ମୋ ଭାଗ୍ୟଲିପିରେ ଲେଖା ଅଛି । × × × ଏକାକୀ ଥିବାରୁ ଚିନ୍ତା କରିବାକୁ ଯଥେଷ୍ଟ ସମୟ ପାଏଁ । ମୁଁ ଚିରଦିନ ରୋଗୀ ଥିବାରୁ କର୍ମପଟୁ ନୁହେଁ । ମାତ୍ର ବ୍ୟାଧିବିପଦ ସମୟରେ ମୋହର ଲେଖା ଟିକିଏ ଭଲ ହୁଏ ।" ତେଣୁ ୧୮୯୪ରେ ପ୍ରକାଶିତ ପ୍ରଥମ କବିତା ସଞ୍ଚୟନ 'ପୁଷ୍ପମାଳା' ଠାରୁ ୧୯୧୨ ମସିହାରେ ପ୍ରକାଶିତ 'ପୂଜାଫୁଲ' ପର୍ଯ୍ୟନ୍ତ ବିଭିନ୍ନ କବିତା-ସଙ୍କଳନ ଗୁଡ଼ିକରେ ଏକ ପତ୍ନୀହରା, ନିଃସଙ୍ଗନିବାସୀ, ବିଷର୍ଣ୍ଣମନା, ଦୁଃଖୀ ଓ ଜରାଗ୍ରସ୍ତ କବିର ହୃଦୟାବେଗ ପ୍ରକାଶ ପାଇବା ସ୍ୱାଭାବିକ ।

'ଆତ୍ମ-ଜୀବନ ଚରିତ'ର ଅନ୍ୟତ୍ର ସେ ଲେଖିଛନ୍ତି– "କେନ୍ଦ୍ରାପଡ଼ାରୁ ଆସିଲା ବେଳେ ମୋର ବୟଃକ୍ରମ ୫୭ ବର୍ଷ ହୋଇଥିଲା । ଏହାପରେ ମୁଁ ଆଉ କାହାରି ଅଧୀନରେ କର୍ମଗ୍ରହଣ କରିନାହିଁ । ବର୍ତ୍ତମାନ ମୋର କଟକ ବାଖରାବାଦ ଘରେ ରହିଲି । × × × ଏହି ଘରେ ମୋର ଶେଷ-ଜୀବନର ଅନେକଗୁଡ଼ିଏ କବିତା ଲେଖା ହୋଇଥିଲା । × × ଅନେକ ମାସ ପର୍ଯ୍ୟନ୍ତ ମନଦେଇ ଦେଖିଛି, ପ୍ରତିଦିନ ସକାଳ ଠିକ୍ ୯ଟା ସମୟରେ ଯୋଡ଼ିଏ ହଳଦୀ ବସନ୍ତ ଆସି, ପୁଷ୍ପୋ-ଦ୍ୟାନ ମଧ୍ୟରେ କ୍ରୀଡ଼ାରେ ରତ ଥାନ୍ତି । ସେ ବିଷୟରେ ଗୋଟିଏ କବିତା ଲେଖିଲି । ଯୋଡ଼ିଏ କପୋତ ଆକାଶରେ କିପରି ଲଗାଲଗି ଭାବରେ ଉଡ଼ିଗଲେ, ସେ ବିଷୟରେ ଗୋଟିଏ କବିତା, ସନ୍ଧ୍ୟା ସମୟରେ କାଠଯୋଡ଼ି କୂଳ ପଥରବନ୍ଧ ଉପରେ ବସିଛି, ମନରେ ଯେଉଁ ଭାବ ଉଦୟ ହେଲା, ତାହା ଗୋଟିଏ କବିତାରେ ଲିପିବଦ୍ଧ କଲି ।" "× × ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ଥିଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦଜନକ କବିତା ଲେଖୁଥିଲି ।" ଫକୀରମୋହନଙ୍କ ବାଲେଶ୍ୱରରେ ଶିକ୍ଷକତା ସମୟ ୧୮୬୪ ରୁ ୧୮୭୧– ପ୍ରାୟ

ସାତବର୍ଷ । ତା'ପରେ ସେ ନୀଳଗିରିର ଦେବାନ୍ ହୋଇ ଚାଲିଗଲେ । ଆତ୍ମଚରିତରେ ସେ ପୁନଶ୍ଚ ଲେଖିଛନ୍ତି, "ମୁଁ ବାଲେଶ୍ୱରରୁ ଚାଲିଆସି ଯେତେବେଳେ ଗଡ଼ଜାତମାନଙ୍କରେ କର୍ମକରିବାକୁ ଗଲି, ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ ହୋଇଗଲା, ଆଠ-ଦଶବର୍ଷ କାଳ ମୁଁ ଲେଖା ଛାଡ଼ିଦେଲି । ଢେଙ୍କାନାଳରେ ଥିବା ସମୟରେ ମୋର ସ୍ତ୍ରୀକୁ ସାନ୍ତ୍ୱନା ଦେବା ପାଇଁ ରାମାୟଣ, ମହାଭାରତ ଅନୁବାଦ ଆରମ୍ଭ କଲି । × × × ମୁଁ ଡ଼ୋମପଡାରେ ଦ୍ୱିତୀୟବାର କର୍ମ କରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣକୁମାରୀ ପରଲୋକ ଗମନ କଲେ । ମୋର ସେ ସମୟରେ ଯେଉଁ କଷ୍ଟ ଉପସ୍ଥିତ ହୋଇଥିଲା, ତାହାହିଁ ମୁଁ 'ପୁଷ୍ପମାଳା' ଓ 'ଉପହାର' ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।"

ଫକୀରମୋହନ ବାଲେଶ୍ୱରରେ ଶିକ୍ଷକତା କରୁଥିବା ବେଳେ ଯେଉଁ "ଆମୋଦଜନକ" କବିତା ଲେଖି ପତ୍ରିକାରେ ପ୍ରକାଶ କରିଥିଲେ ତାହାର ଭାଗ୍ୟ କଣ ହେଲା ଜଣାଯାଏ ନାହିଁ । କାରଣ ଉକ୍ତ କବିତା ସଙ୍କଳନ ଗୁଡ଼ିକରେ ସେଭଳି କୌଣସି "ଆମୋଦଜନକ" କବିତା ଥିବାର ପାଠକେ ଲକ୍ଷ୍ୟ କରିପାରିବେ ନାହିଁ । ବରଂ ସ୍ତ୍ରୀଙ୍କ ମୃତ୍ୟୁ ଯୋଗୁଁ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା ତାହା ହିଁ 'ପୁଷ୍ପମାଳା' ଓ 'ଉପହାର' ପୁସ୍ତକ ଦୁଇଟିରେ ବ୍ୟକ୍ତ ହୋଇଅଛି । ଏପରିକି ଏହି 'ଦାରୁଣ କଷ୍ଟ'ର କରୁଣ ସ୍ୱର 'ପୁଷ୍ପମାଳା'ରୁ ଆରମ୍ଭ ହୋଇ 'ଉପହାର' ଓ 'ଅବସର ବାସରେ' ବାଟଦେଇ ଲମ୍ବି ଯାଇଛି 'ପୂଜାଫୁଲ' ପର୍ଯ୍ୟନ୍ତ ଯାହା ପାଠକର ହୃଦୟକୁ ମଧ୍ୟ ବେଳେବେଳେ ବିଚଳିତ ଓ ବିଗଳିତ କରିଦିଏ । ଯେଉଁ "ଯୋଡ଼ିଏ ହଳଦୀବସନ୍ତ"ଙ୍କୁ ଦେଖି ସେ କବିତା ଲେଖିଥିଲେ ବୋଲି ଉଲ୍ଲେଖ କରିଛନ୍ତି, ତାହା "ଅବସର ବାସରେ" କାବ୍ୟଗ୍ରନ୍ଥରେ "ବିରହୀ ହଳଦୀବସନ୍ତ" ନାମରେ ପତ୍ରସ୍ଥ । ଏଥିରେ ଯେଉଁ ଯୋଡ଼ିଏ ହଳଦୀବସନ୍ତଙ୍କୁ ପାଠକ ଭେଟେ ସେ ଦୁହେଁ କବିଦମ୍ପତି ନା ଅନ୍ୟ କେହି ? "କ୍ଷୁଦ୍ର ସେ ବିହଙ୍ଗମ ତୀର୍ଯ୍ୟକଂଶ ଜାତି/କାହୁଁ ଶିଖିଲା ଜାୟା-ପ୍ରେମ ଏ ନୀତି ?" କହିବା ଭିତରେ ନିଜର ପରଲୋକଗତା ଜାୟା ପ୍ରତି ଐକାନ୍ତିକ ପ୍ରୀତି ହିଁ ପ୍ରଦର୍ଶନ କରିଛନ୍ତି କବି ଫକୀରମୋହନ । ଏଠି ଆମେ ଯେଉଁ କାବ୍ୟପୁରୁଷଙ୍କୁ ଭେଟୁଁ ସେ ହଳଦୀବସନ୍ତର ପ୍ରତୀକ ଭିତରେ ହିଁ ଆତ୍ମପ୍ରକାଶ କରିଛନ୍ତି । ଏଠାରେ କାବ୍ୟରୂପ ଅପ୍ରତ୍ୟକ୍ଷ ହେଲେ ବି ପାଠକଙ୍କୁ ବୁଝିବାକୁ କଷ୍ଟ ହୁଏନା ଯୋଡ଼ିଏ ହଳଦୀବସନ୍ତ କିଏ ?

ସେମିତି "ସାହାଡ଼ା ଗଛର କ୍ରନ୍ଦନ" କବିତାରେ "ଲଜ୍ଜକୁଳୀ ଲତାଟିଏ ଥିଲା ମୋର ପାଖେ/କାଟୁଥାଉଁ ଦୁହେଁ ଦିନ ମନର ଭଲ'ସେ ।"/ × × "ଲଜ୍ଜକୁଳୀ ପଡ଼ିଥାଏ ମୋର ଗୋଡ଼ ତଳେ/ଗୋଲ ଗୋଲ ଦୁଇଗୋଟି ଫୁଲଧରି କୋଳେ ।" × × "ପ୍ରବଳ ପବନ ବେଗେ ଗଲା ନାହିଁ ଉଡ଼ି/ସାନ ସାନ ଫୁଲ ଦୁଇ ଛନ୍ତି ତଳେ ପଡ଼ି । × × "ଗୁଲିଗଲା ନ କହିଲା ମୋତେ ପଦେ କଥା/ଆହା ମୋର କାହିଁଗଲା ଲଜ୍ଜକୁଳୀଲତା !" ଭିତରେ ଯେଉଁ ପ୍ରତୀକାତ୍ମକ ରୂପ ପରୋକ୍ଷ ଭାବରେ ସ୍ପଷ୍ଟ ତାହା ଫକୀରମୋହନ ନା ଅନ୍ୟ କେହି ? ଲଜକୁଳୀ ଲତା ନିଶ୍ଚିତ ଭାବେ "କୃଷ୍ଣକୁମାରୀ" ଏବଂ "ସାନ ସାନ ଫୁଲ ଦୁଇଟି" କବିଙ୍କ ଦୁଇ ପୁତ୍ରକନ୍ୟା–ମୋହିନୀମୋହନ ଓ ସରୋଜିନୀ ।

"ଚକୁଆ-ଚକୋଇ କଥା"ରେ ଯେଉଁଠି କବି ଲେଖିଛନ୍ତି– "କେ ତାର ପିତା ମାତା ସେ ଜାଣେ ନାହିଁ/ପିଲାକାଳରୁ ଯାଇ ଅଛନ୍ତି କାହିଁ ;/ଥିଲା ଏକ ଚକୋଇ ବୁଢୀ ସେଠାରେ/ବଞ୍ଚାଇ ରଖିଥିଲା ଡ଼ାଙ୍କି ଡେଣାରେ ।/ କେତେଦିନର ବୁଢ଼ୀ ଚକୋଇ ମଲା/ପିଲା ଚକୁଆ ଆଶା ଭରସା ଗଲା ।" ସେହି ବୁଢୀ ଚକୋଇ ପିତୃ-ମାତୃହୀନ ଅନାଥ ଫକୀରମୋହନଙ୍କ ପିଲାଦିନର ଏକମାତ୍ର ଆଶା ଭରସାର ସ୍ଥଳୀ ପିତାମହୀ କୋଚିଲା ଦେଈ ବ୍ୟତୀତ ଆଉ କିଏ ହୋଇପାରନ୍ତି ? ପୁଣି "କେତେକାଳରେ ଦିନେ ଦଇବବଶେ/କାହୁଁ ଚକୋଇ ଏକ ମିଳିଲା ପାଶେ/ × × × ବାନ୍ଧିଲେ ବସା ଦୁହେଁ ଯତନ କରି/ମଣି ତାହାକୁ ସ୍ୱର୍ଗ ଭୁବନ ସରି ।" କହିବା ବେଳେ ଯେଉଁ 'ସ୍ୱର୍ଗଭୁବନ' ସୃଷ୍ଟିକାରିଣୀ ଚକୋଇକୁ ଭେଟୁଁ ସେ ନିଶ୍ଚିତ ଭାବେ କୃଷ୍ଣକୁମାରୀ ।

'କପୋତ-ସଂଗୀତ' କବିତାରେ ଯେଉଁ 'କପୋତ ଦମ୍ପତି'ର ଅବତାରଣା, ତହିଁରେ ପ୍ରତିବିମ୍ବିତ ଫକୀରମୋହନଙ୍କ ଆତ୍ମରୂପ । "କାଳ-ଭୁଜଙ୍ଗ-ଆସି କାହୁଁ ସେ ସ୍ଥାନ,/ସଂହାର କଲା ସେହି କପୋତୀ ପ୍ରାଣ ।/ବୃଦ୍ଧ କପୋତ ତହୁଁ ବିକଳ ମନେ/ପାଳେ ଶାବକ ବେନି ପ୍ରାଣେ ଯତନେ ।/ଥୋକେ ଦିନାନ୍ତେ ବେନି ଶାବକ ବଢି/ନରଖି ମାୟା ଗଲେ ଦୂରକୁ ଉଡ଼ି ।/ଥାଏ କପୋତ ଏକା ପଡ଼ି ନୀଡ଼ରେ/ବିକଳେ କାଟେ ଦିନ ଶୂନ୍ୟ ମନରେ ।" ଏଠାରେ 'କାଳଭୁଜଙ୍ଗ–ମୃତ୍ୟୁ, 'କପୋତୀ'–କୃଷ୍ଣକୁମାରୀ, 'ବୃଦ୍ଧ କପୋତ'–ନିଜେ ଫକୀରମୋହନ, 'ଶାବକ ବେନି'– କବିଙ୍କ ପୁତ୍ରକନ୍ୟା ମୋହିନୀମୋହନ ଓ ସରୋଜିନୀ ରୂପରେ ପରୋକ୍ଷ ଭାବେ ବିମ୍ବିତ ହୋଇଛନ୍ତି । ଶାବକ ବେନି ବଢି ମାୟା ନ ରଖି ଦୂରକୁ

ଉଡ଼ିଯିବା, ମୋହିନୀମୋହନଙ୍କ କାର୍ଯ୍ୟୋପଲକ୍ଷେ ଅନ୍ୟତ୍ର ବାସ ଏବଂ ସରୋଜିନୀଙ୍କ ବିବାହ ହିଁ ସୂଚୀତ କରେ ।

ଫକୀରମୋହନଙ୍କ ଆଉ ଏକ କବିତା 'ବୁଢ଼ା ପଳାଶ' । ଏହା ଭିତରେ ବି ମୂର୍ତ୍ତ ହୋଇଛି କବିଙ୍କ ପ୍ରତିରୂପ । ନିଜକୁ 'ବୁଢ଼ା ପଳାଶ' କହିବା ଭିତରେ ନିହିତ ରହିଛି ନିଜ ପ୍ରତି ଏକ ଅସହାୟ ତୁଚ୍ଛତାବୋଧ । ତଥାପି 'ଏକ ମାଲୁଣୀ ଝିଅ'ର୍ ଆଗମନ ଏବଂ 'ଗଛର ଘଟା'କୁ ଝାଡ଼ିଝୁଡ଼ି ଦେଇ, ସ୍ନେହରେ ହାତ ବୁଲାଇ ବୁଢାଗଛ ମୂଳେ ପାଣି ଢାଳିବା, ଏବଂ ତାର ସେବା ପାଇ 'ବୁଢୀ ପଳାଶ'ର 'ଡ଼ାଳ ପତର' ଗଜାଇବା ଓ 'ଫୁଲ ଢାଳିଦେବା'ର ବର୍ଣ୍ଣନା ବେଶ୍ ଚମତ୍କାର । ଏହି 'ବୁଢା ପଳାଶ' ଓ 'ମାଲୁଣୀ ଝିଅ' କିଏ ବୁଝିବାକୁ ପାଠକଙ୍କୁ ଖୁବ୍ କଷ୍ଟ କରିବାକୁ ପଡ଼େ ନାହିଁ । 'ଫୁଲ ଢାଳିଦେବା' ଭଳି ଇଙ୍ଗିତଧର୍ମୀ ଶବ୍ଦର ଅର୍ଥ ମଧ୍ୟ ସୁସ୍ପଷ୍ଟ ।

"ମୋ କ୍ଷୁଦ୍ରତାରା" କବିତାରେ 'ଜ୍ୟୋତିର୍ମୟୀ, ଅପୂର୍ବ ସୁନ୍ଦରୀ' । ସେହି ତାରାଟି କିଏ ଯାହାର 'ହୃଦୟ ଉଲ୍ଲାସକାରୀ' କିରଣକୁ ଚାହିଁ କବି 'ପୃଥିବୀରେ ବିଚରଣ' କରୁଥିଲେ ଏବଂ ଯିଏ ହଜିଗଲା ପରେ "ଅନ୍ଧପରି ଘୂରିଲେ ବି ଜୀବନଟା ସାର" କହି "ତାର ହାଟ, ତାର ନାଟ ବସିଛି ଗଗନେ/ସେପରି ତାର ତ ଆଉ ନ ଦେଖେ ନୟନେ,/ଥାଆନ୍ତୁ ପଛକେ ତାରା କୋଟିଏ କୋଟିଏ/ମାତ୍ର ମୋର ବୋଲିବାକୁ ନାହିଁ ତ ଗୋଟିଏ ।" ବୋଲି ବିଳପି ଉଠିଛନ୍ତି ? ଏହି କବିତାର ଦର୍ପଣରେ କଣ ବିମ୍ବିତ ହୋଇନାହିଁ ବୃଦ୍ଧ ଫକୀରମୋହନଙ୍କ ବିରହୀ ହୃଦୟର ଚିତ୍ର ରୂପ ?

"ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ" କବିଙ୍କର ଏକ ଅନବଦ୍ୟ କବିତା । ନିଜକୁ 'ଜୀର୍ଣ୍ଣ ପଲ୍ଲବ'ର ଆସନରେ ବସାଇ 'ନବପତ୍ର' ଦଳଙ୍କୁ 'ଆଶୀର୍ବାଦ' କରିବାର ପ୍ରତୀକ ଭିତରେ ପ୍ରବୀଣ କବି ଫକୀରମୋହନ ଭବିଷ୍ୟତ ଆଶା-ଭରସାର ସ୍ଥଳ ଆଗନ୍ତୁକ ତରୁଣ ଦଳଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇବା ଏବଂ "ଆଶୀର୍ବାଦ, ଆଶୀର୍ବାଦ ନବପତ୍ର ଦଳ/ଛାୟାଦାନେ ହୁଅ ପାନ୍ଥ-ପାଦପ ସଫଳ ।" ବୋଲି କହିବା ତାଙ୍କ ଅକପଟ ଉଦାର ହୃଦୟର ସ୍ୱଚ୍ଛ ଚିତ୍ର ବହନ କରେ । ଏ ଉକ୍ତିର ସତ୍ୟତା ତଥା ଆନ୍ତରିକତାର ପ୍ରମାଣ ପାଇବାକୁ ହେଲେ ଆମକୁ କାନ୍ତକବିଙ୍କ ସ୍ୱ-ଅନୁଭୂତି ସମ୍ପନ୍ନ ରମ୍ୟରଚନା "ମୋ ଜୀବନ ଉପରେ ଦାଢିର

ପ୍ରଭବ" ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ତରୁଣ ଜୀବନରେ ଫକୀର-ମୋହନଙ୍କ ସହ ସମ୍ପର୍କର ସ୍ମୃତିକଥାକୁ ଭିତ୍ତି କରିବାକୁ ପଡ଼ିବ ।

'ମୁଁ ହାଟବାହୁଡ଼ା' ଏକ ଭିନ୍ନ ସ୍ୱାଦର କବିତା । ଅନ୍ୟାନ୍ୟ ବ୍ୟକ୍ତି-ଧର୍ମୀ କବିତା ଠାରୁ ଏହାର ଆବେଦନ ସ୍ୱତନ୍ତ୍ର । ଏଠି ଆମେ ଯେଉଁ ଫକୀର-ମୋହନଙ୍କୁ ଭେଟୁଁ ସେ ଏକ ଭିନ୍ନ ଫକୀରମୋହନ । ବିରହୀ, ପତ୍ନୀହରା ଫକୀରମୋହନ ନୁହଁନ୍ତି । ସେ ସଂସାର ହାଟର ଜଣେ ହାଟୁଆ । ଏହି କବିତାରେ ତାଙ୍କ ସମାଜମୁଖୀ ଦୃଷ୍ଟିକୋଣ ଓ କଟାକ୍ଷ ଖୁବ୍ ତୀର୍ଯ୍ୟକ୍ ଓ ତୀବ୍ର । ସେ ଏ କବିତାର ମୁଖ୍ୟ ନାୟକ । ହାଟର ସେ କେବଳ ଜଣେ ଗ୍ରାହକ ନୁହନ୍ତି, ଜଣେ ଦୋକାନୀ ମଧ୍ୟ । ପ୍ରଥମେ ଗ୍ରାହକ ଓ ପରେ ଦୋକାନୀ ହେବାର ବିଚିତ୍ର ଅନୁଭୂତି ଓ ଅଭିଜ୍ଞତାରେ ପୁଷ୍ଟ ଏ କବିତା । "ହାଟେ ବୁଲି ବୁଲି ଜନ୍ମିଲ ଜ୍ଞାନ/ମୁଁ ମଧ୍ୟ ଦେଖିଲି ଗୋଟେ ଦୋକାନ ।/ଝାଡ଼ିଝୁଡ଼ି ଦେଇ ଦୋକାନ ଗୃହ/ଗୋଦାମେ ଭରିଲି ସାହିତ୍ୟ ମାଲ ।/ବିଲାତି ମାଲକୁ ନାହିଁ ତ ପୁଞ୍ଜି/ଦେଶୀ ମାଲ ଦେଲି ଗୋଦାମେ ଗୁଞ୍ଜି ।/ଦେଶୀ ସାହିତ୍ୟ ଯେ ବଣିଜ କଲ/ଜାଣିଥିବ ସେହି ଲୋକଟି ମଲ ।" ଏହି ପଙ୍‌କ୍ତିଗୁଡ଼ିକ ଭିତରେ ଲେଖକ ଫକୀରମୋହନଙ୍କ ବ୍ୟର୍ଥ ବ୍ୟବସାୟୀ ଜୀବନର କରୁଣ ଚିତ୍ର ଫୁଟି ଉଠି ନାହିଁକି ? ଦେଶୀ ସାହିତ୍ୟର ବଣିଜ କରୁଥିବା ଲୋକଟି ଆଜି ମଧ୍ୟ ମଲା ଭଳି ପଡ଼ି ନାହିଁକି ?

ପରୋକ୍ଷ ଭାବେ ବିମ୍ବିତ ହୋଇଥିବା ଫକୀରମୋହନଙ୍କ ଜୀବନର ଚିତ୍ରରୂପ ତାଙ୍କ କବିତାରେ କେତେବେଳେ 'ହଳଦୀବସନ୍ତ', 'ଦାହାଡ଼ା ଗଛ' 'ଚକୁଆ-ଚକୋଇ', 'କପୋତ-କପୋତୀ', 'ବୁଢା ପଳାଶ', 'କ୍ଷୁଦ୍ର ତାରା', 'ଜୀର୍ଣ୍ଣ ପଲ୍ଲବ' ବା ହାଟ ବାହୁଡ଼ା' ବାଟୋଇ ଇତ୍ୟାଦି ନାନା ପ୍ରତୀକ ମାଧ୍ୟମରେ ପ୍ରକାଶ ପାଇଥିଲେ ବି ବହୁ ସ୍ଥଳରେ ପ୍ରତ୍ୟକ୍ଷ ଭାବେ ସେ ଆପଣାକୁ ବ୍ୟକ୍ତ କରିଛନ୍ତି । ତାଙ୍କର ସେହି ବ୍ୟକ୍ତ ବକ୍ତବ୍ୟ ଭିତରେ ଅଙ୍କିତ ହୋଇଯାଇଛି ତାଙ୍କ ମନୋଗତ ଭାବ ଓ ଅନୁଭବ ଯାହା ଏକାନ୍ତ ଭାବେ ଆପଣାର । 'ଭବ-ଭାବନା' କବିତାଟି ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । "ଥିଲି ଯେବେ ଉପଯୁକ୍ତ ଅର୍ଥ ଉପାର୍ଜନେ/ବେଢିଥିଲେ ଚଉପାଶେ ପ୍ରିୟ ପରିଜନେ ।/ଆନନ୍ଦ ଉତ୍ସବ ପୂର୍ଣ୍ଣ ଥିଲା ମୋ ଆଳୟ/ଶିଶୁପୁତ୍ର-କନ୍ୟା ମିଷ୍ଟଭାଷୀ ସୁଧାମୟ/" ବୋଲି ସ୍ୱୀକାର କରୁଥିବା କବି ଜରାଜୀର୍ଣ୍ଣ ଅବସ୍ଥାରେ ଅସହାୟ ଭାବରେ କହୁଛନ୍ତି– "ସୁଧାମୟଭାଷୀ ଥିଲେ ଯେଉଁ

ଶିଶମାନେ/ପୂରିତ ବଦନ ଏବେ କବିତା ବଚନେ।/ପ୍ରେମାଳାପେ ବନ୍ଧୁଗଣେ ବସୁଥିଲେ ପାଶେ/ଛେଡ଼ିଲେ ହେଁ ସେମାନଙ୍କୁ ଦେଖେ ନାହିଁ ବାସେ।" ପୁନଶ୍ଚ 'ମିଷ୍ଟକଥା' କବିତାରେ କବିଙ୍କ ଏ ଭାବନା ଆହୁରି ସ୍ପଷ୍ଟ ଓ ତୀବ୍ର ଭାବେ ପ୍ରକାଶିତ। ଯେତେବେଳେ ସେ ଅତି ଦୁଃଖର ସହିତ କହନ୍ତି– "ଯାହା ପାଇଁ କରିଛି ମୁଁ ଅସାଧ୍ୟ ସାଧନା/ଦିବାନିଶି କରେ ଯା'ର ଉନ୍ନତି କାମନା ;/ଧିକ ! ଧିକ ! ସେହି ମୋତେ କହେ କଟୁ କଥା/ମୋ ଜୀବନେ ନାହିଁ ତାର ମାୟା ବା ମମତା।" ଏ ଖେଦୋକ୍ତି କାହା ପାଇଁ ପ୍ରଯୁଜ୍ୟ ? କାହା ଉଦ୍ଦେଶ୍ୟରେ ପତ୍ନୀହରା, ନିଃସଙ୍ଗ, ବୃଦ୍ଧ ଫକୀରମୋହନଙ୍କ ଏ ବାକ୍ୟବାଣ ? ତାଙ୍କ ଶେଷ-ଜୀବନ ସମ୍ପର୍କରେ ଅବହିତ ପ୍ରତ୍ୟେକ ପାଠକ ଏଥିରୁ ଅନୁମାନ କରିପାରିବେ ପିତା-ପୁତ୍ରଙ୍କ ମଧ୍ୟରେ ସମ୍ପର୍କ କିଭଳି ତିକ୍ତ ଥିଲା।

କିନ୍ତୁ ଅପର ପକ୍ଷରେ ନିଜର ଏକମାତ୍ର ପୁତ୍ରବଧୂ ହିରଣ୍ପ୍ରଭାଙ୍କ ଉପରେ ଥିଲା ତାଙ୍କର ଅଗାଧ ସ୍ନେହ ଓ ଅତ୍ୟନ୍ତ ବିଶ୍ୱାସ। ସେ ତାଙ୍କ ଶେଷ ଇଚ୍ଛାପତ୍ର (will)ରେ ପୁତ୍ର ମୋହିନୀମୋହନଙ୍କୁ ତ୍ୟଜ୍ୟପୁତ୍ର ବୋଲି ଘୋଷଣା କରି ପୁତ୍ରବଧୂଙ୍କୁ ନିଜର ସମସ୍ତ ସ୍ଥାବରାସ୍ଥାବର ସମ୍ପତ୍ତିର ଅଧିକାରିଣୀ କରାଇଯାଇଥିଲେ। 'ଅବସର ବାସରେ' ଗ୍ରନ୍ଥର ଶେଷ କବିତା 'ଆଦେଶ' ଯେ ଏହି ପୁତ୍ରବଧୂଙ୍କ ପ୍ରତି ଉଦ୍ଦିଷ୍ଟ ଏହା ସୁସ୍ପଷ୍ଟ। ଅତି କରୁଣ ଭାବରେ ଅସହାୟ ଫକୀରମୋହନ ଲେଖିଛନ୍ତି– "ଅୟି ବତ୍ସେ ! ଦେଖୁଛ ତ ଜଗତକୁ ଚାହିଁ/ତୋର ବିନା ଦ୍ୱିତୀୟ ମୋ ସାହା କେହି ନାହିଁ।/ଦୟେବତି ! ଗୁଣବତି ! ଭକ୍ତିପରାୟଣା,/ଏକମାତ୍ର ତୁହି ମୋର ଜୀବନ ସାନ୍ତ୍ୱନା।" ଏହା କହିବା ସଙ୍ଗେ ସଙ୍ଗେ 'ଆଦେଶ' ଛଳରେ ବିକଳ ଅନୁରୋଧ କରିଛନ୍ତି– "ଭିନ୍ନ ଭିନ୍ନ ହେଲେ ମୋର ଜରାଜୀର୍ଣ୍ଣ ଅଙ୍ଗ/ଅନ୍ଧକାରେ ଗଲେ ଉଡ଼ି ଜୀବନ-ପତଙ୍ଗ/× × × ବତ୍ସରେ ବା ବତ୍ସରାନ୍ତେ କେବେ ହେଲେ ଥରେ/ସ୍ମରଣ କରିବୁ ମୋତେ ଭକ୍ତିଭରେ ମନରେ।/ନିଦର୍ଶନ ରଖିବୁରେ ସେ ପବିତ୍ର ସ୍ଥାନେ/ଏ ସଙ୍କେତ କଥା ବତ୍ସେ ବୁଝ ଅନୁମାନେ।" ଏହି କାବ୍ୟ ପଙ୍କ୍ତି ଭିତରେ ପୁତ୍ରବଧୂଙ୍କୁ "ଏକମାତ୍ର ତୁହି ମୋର ଜୀବନ ସାନ୍ତ୍ୱନା" ବୋଲି ସମ୍ବୋଧନ କରି "ନିଦର୍ଶନ ରଖିବୁରେ ସେ ପବିତ୍ର ସ୍ଥାନେ"ର ଆଦେଶ (?) ଦେବା ରହସ୍ୟପୂର୍ଣ୍ଣ। ଏଠାରେ ଯେଉଁ "ପବିତ୍ର ସ୍ଥାନ" କଥା କୁହାଯାଇଛି ତାହା ନିଶ୍ଚୟ 'ଶ୍ମଶାନ' ଏବଂ ନିଦର୍ଶନ ରଖିବାର ଅର୍ଥ 'ସମାଧି ନିର୍ମାଣ' କରିବାର ସଙ୍କେତ ସୂଚିତ। କିନ୍ତୁ ଫକୀରମୋହନଙ୍କ ମୃତ୍ୟୁପରେ ତାଙ୍କ "ଦୟାବତୀ, ଗୁଣବତୀ ଓ

ଭକ୍ତିପରାୟଣା" ପ୍ରଭୃତିରୁ କୌଣସି 'ନିଦର୍ଶନ' ରଖିଥିବାର ପ୍ରମାଣ ମିଳି ନାହିଁ । ବରଂ ଅଳ୍ପ କେତେ ବର୍ଷ ତଳେ ବାଲେଶ୍ୱରର 'ଫକୀରମୋହନ ସାହିତ୍ୟ ପରିଷଦ' ପକ୍ଷରୁ ମଲ୍ଲିକାଶପୁରର କେତେଜଣ ବୟୋବୃଦ୍ଧ ବ୍ୟକ୍ତିଙ୍କ ସହାୟତାରେ କବିଙ୍କ ପବିତ୍ର ପାଦସ୍ଥଳୀ ନିର୍ଣ୍ଣୟ କରାଯାଇ କ୍ଷୁଦ୍ର ସମାଧିଟିଏ ନିର୍ମାଣ କରାଯାଇଛି ।

କୌଣସି ସତ୍ ଓ ମହତ୍ କବି କେବେ 'ଯଶପ୍ରାର୍ଥୀ' ହୋଇ କାବ୍ୟ-ରଚନା କରନ୍ତି ନାହିଁ । ତାହା କେବଳ 'ମନ୍ଦକବି' ପକ୍ଷରେ ସମ୍ଭବ । ନିଜକୁ ପ୍ରକାଶ କରିବାର ଏବଂ ନିଜ ଭିତର ଦେଇ ନିଜର ସମୟ ଓ ଜଗତ୍‌କୁ ପ୍ରକାଶ କରିବାର ଦୁର୍ବାର ଓ ଅଦମ୍ୟ ଇଚ୍ଛା ଜଣକୁ କବି କରିଥାଏ । ଫକୀରମୋହନ ସେହିଭଳି ଜଣେ କବି, ଯିଏ କବି ହେବା ପାଇଁ କବିତା ଲେଖି ନଥିଲେ ବା ଯଶପ୍ରାର୍ଥୀ ହୋଇ କବିତା ଲେଖି ନଥିଲେ, ବରଂ ନିଷ୍ପାପର ଭାବରେ ଆତ୍ମପ୍ରକାଶର ସ୍ପୃହା ନେଇ ସେ ନିଜର ବହୁ-ବର୍ଣ୍ଣିଳ ଅନୁଭୂତିଗୁଡ଼ିକୁ ଯେଉଁ କାବ୍ୟରୂପ ଦେଲେ, ତାହା ହିଁ ତାଙ୍କୁ ଜଣେ କବି ଭାବରେ ପ୍ରତିଷ୍ଠିତ କରିପାରିଛି । କିନ୍ତୁ ଆଧୁନିକ ଓଡ଼ିଶା କାବ୍ୟ-ମନ୍ଦାକିନୀର ଭଗିରଥ ଭାବରେ ରାଧାନାଥଙ୍କୁ ଯେତେବେଳେ ସ୍ମରଣ କରାଯାଏ, ସେତେବେଳେ ଫକୀରମୋହନଙ୍କୁ ଉପଯୁକ୍ତ ମୂଲ୍ୟ ଦିଆଯାଏ ନାହିଁ । ତାଙ୍କୁ କଥାସମ୍ରାଟ ବା ଓଡ଼ିଆ କଥା ସାହିତ୍ୟର ଜନକ କହି ଆମେ ସମ୍ମାନ ଦେଉଁ । କିନ୍ତୁ ଜଣେ କଥାକାର ଭିତରେ ଲୁଚି ବସିଥିବା ନିଛକ କବିଟିର କଥା ଭୁଲିଥାଉଁ । ସେଥିପାଇଁ ଖୁବ୍ ଦୁଃଖର ସହିତ କବି ଫକୀରମୋହନ 'ମୋ ଗୀତର ଭଣିତା'ରେ ଲେଖିଛନ୍ତି– "ଅପଣା ମନକୁ ପାଏଁ, ଗାଇବା ଅଭ୍ୟାସ/ଶୁଣୁବା ନ ଶୁଣୁ କେହି ନାହିଁ ଚିନ୍ତାଲେଶ ।/ × × × ସମସ୍ତେ ଗାଆନ୍ତି ଗୀତ, ମୁଁ ତ ଅଛି ଗାଇ/ଏଥିରେ ତ କ୍ଷତି-ବୃଦ୍ଧି ଦେଖେ ନାହିଁ ଭାଇ ।/ × × × ଗୀତ ଗାଇବାକୁ ଇଚ୍ଛା କରେ ଯେଉଁ ଜନ/କେ ଲୋକ କରିବା କିଆଁ ତାକୁ ନିବାରଣ ?/ମୋ ବିଶ୍ୱାସ ଜଗତରେ କବି ସର୍ବଲୋକ/କେହି ବା ବିଶେଷ କେହି ଅଳପ ମାତ୍ରକ ।/ଯେତେକାଳ ଥାଏ ମୋର ଥିବ ପିଣ୍ଡେ ପ୍ରାଣ/ଇଚ୍ଛା ବସି ବସି କରୁଥିବି ଗୀତ ଗାନ ।/ଯଦ୍ୟପି ଗାଇବ ମୋହ ଗୀତ କେହି ଲୋକ,/ମଣିବି ଅବଶ୍ୟ ଶ୍ରମ-ଜୀବନ ସାର୍ଥକ ।" ହଁ– କବି ଫକୀରମୋହନଙ୍କ ଜୀବନ ସାର୍ଥକ ତ ନିଶ୍ଚୟ । ଅସାର୍ଥକ ବୋଲି କିଏ କହିବ ? ତା' ହୋଇଥିଲେ ଦୀର୍ଘ ୧୫୦ ବର୍ଷ ପରେ ବି ସେ ଆମ ସ୍ମରଣକୁ ଆସନ୍ତେ କାହିଁକି ? ତାଙ୍କ ସମୟର କେତେଜଣ ଲୋକ ବା କାଳର ପରଦା ଟେକି ଆମ

ସ୍ମୃତିର କୋଠରୀ ଭିତରକୁ ଫଶିଆସି ପାରୁଛନ୍ତି ? କବିଗୁରୁ ରବୀନ୍ଦ୍ରନାଥ ଯେତେବେଳେ ଲେଖିଥିଲେ– "ଆଜିଠାରୁ ଶହେବର୍ଷ ପରେ/କିଏ ତୁମେ ପଢ ବସି ଏ ମୋର କବିତା/କୌତୂହଳ ଭରେ ?" ସେ ହୁଏ ତ ଜାଣିଥିଲେ ତାଙ୍କ କବିତା ଶହେବର୍ଷ ପରେ ବି କାହାରି ଦ୍ୱାରା ପଠିତ ହେବ ଏବଂ ଶହେ ବର୍ଷ ତଳର ଜଣେ ତରୁଣ କବିର 'ବସନ୍ତୀ ଗୀତ' 'ଆନନ୍ଦର ଅଭିବାଦନ' ନେଇ 'ଭ୍ରମରର ଗୁଞ୍ଜନ' ଓ 'ପଲ୍ଲବର ମର୍ମର' ଭିତରେ ଶହେବର୍ଷ ପରେ ବି ହୃଦୟେ ହୃଦୟେ ସ୍ପନ୍ଦିତ ହେବ । କିନ୍ତୁ କବି ଫକୀରମୋହନଙ୍କ ଜଣସ୍ୱର ସଂଶୟାଛନ୍ନ । ସେଥିପାଇଁ ସେ 'ଯଦ୍ୟପି' ଶବ୍ଦ ବ୍ୟବହାର କରିଛନ୍ତି । ଅଥଚ ସମଧର୍ମୀ ଅନ୍ୟ ଏକ କବିତା "କବିର ସାନ୍ତ୍ୱନା"ରେ ସେ କିଞ୍ଚିତ୍ ଆଶାବାଦୀ । ସେଥିପାଇଁ ସେ ଲେଖିଛନ୍ତି– "ନଥାଉ ମୋହର କିଛି ପାର୍ଥିବ ସମ୍ପତ୍ତି/ସ୍ୱର୍ଗୀୟ ପଦାର୍ଥ ଦେଇଛନ୍ତି ବିଶ୍ୱଗତି ।/କଳ୍ପନା-ରାଜ୍ୟରେ ଯେବେ କରେ ମୁଁ ଭ୍ରମଣ/ଅନୁଭବେ ଜଗତର ସର୍ବ ତୁଚ୍ଛ ଧନ ।/× × × ସେବା କରୁଅଛି ବସି ମୁହିଁ ମାତୃଭାଷା/ସାନ୍ତ୍ୱନା ଲଭଇ ମନେ ବହି ଏହି ଆଶା ;/ ନହେବ କୃତଘ୍ନ ମୁହିଁ ଆହେ ବିଶ୍ୱପତି/ଦେଇଛ ତ ଯାଚି ମୋତେ ଅତୁଳ ସମ୍ପତ୍ତି ।/ ଜନ୍ମି କେବା ଛନ୍ତି କୋଟି ଭ୍ରାତା ମଧ୍ୟେ ଜଣେ ;/କେବେହେଲେ କେହି ମୋତେ ପକାଇବେ ମନେ । ରଚିତ କବିତାଗୁଡ଼ି କନ୍ୟା ସ୍ୱରୂପିଣୀ/ ଉନ୍ନତରି ଥାନ୍ତି ପଢେ ଚିତ୍ତବିନୋଦିନୀ । ଉତ୍କଳ-ଜଗତେ ମୁହିଁ ତେଜିବି ଜୀବନ/କରିବେ ଏ କନ୍ୟାଗୁଡ଼ି ପିତୃ-ତରପଣ ।" ଅଧୁନା ଫକୀରମୋହନଙ୍କ ଶ୍ରାଦ୍ଧ ତିଥିରେ ତାଙ୍କ ବଂଶର ଉତ୍ତରଦାୟାଦମାନେ କେହି ପିତୃ ତରପଣ କରୁଛନ୍ତି କି ନାହିଁ ଜଣାନାହିଁ । କିନ୍ତୁ ତାଙ୍କ "କନ୍ୟା-ସ୍ୱରୂପିଣୀ" କବିତାଗୁଡ଼ିକ ନିଶ୍ଚୟ 'ପିତୃ-ତର୍ପଣ' କରୁଛନ୍ତି । ସେମାନେ କୃତଘ୍ନ ନୁହଁନ୍ତି । ଅତ୍ୟନ୍ତ ବିଶ୍ୱସ୍ତ ଓ ନିଷ୍ଠାପର ଭାବରେ ଆଜି ବି ରସଜ୍ଞ ଓ ମୁଗ୍ଧ ପାଠକର ଚିତ୍ତହାରିଣୀ ହୋଇ ଜନ୍ମଦାତା କବି ଫକୀରମୋହନଙ୍କ ସ୍ମୃତିତର୍ପଣ ଯେ କରୁଛନ୍ତି ଏହା ଅବିସମ୍ବାଦୀ ସତ୍ୟ ।



ସଭାପତି, ଫକୀରମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର ।

# ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ
# ଫକୀରମୋହନ ସେନାପତି

ମୂଳରଚନା : ରାମବହ୍ଲାଲ ତେୱାରୀ
ଅନୁବାଦ : ସଂଗୀତା ଜେନା

ବିଶ୍ୱକବି ରବୀନ୍ଦ୍ରନାଥ ଗୋଟିଏ କବିତାରେ ଜଣେ ଏକନିଷ୍ଠ ସାଧକଙ୍କ ସମ୍ପର୍କରେ କହିଛନ୍ତି –

"ଖ୍ୟାପା ଖୁଁଜେ ଫିରେ ପରଶ ପାଥର
ମାଥାୟ ବୃହତ୍ ଜଟା ଧୂଲାୟ କାଦାୟ କଟା
ମଲିନ ଛାୟାର ମତୋ କ୍ଷୀନ କଲେବର ।"

–ସୋନାରତରୀ : 'ପରଶ-ପାଥର' ।

ଆମ୍ଭେମାନେ ଜାଣୁ, ସେହି ସାଧକ ସିଦ୍ଧିଲାଭ କରିପାରି ନାହାନ୍ତି । ନିଛକ ଆତ୍ମସୁଖ ସକାଶେ ସେ ଅଧରାକୁ ଧରିବାର ଓ ଅପ୍ରାପ୍ୟକୁ ପାଇବାର ଆଶା ପୋଷଣ କରିଥିଲେ । ତେଣୁ ତାଙ୍କର ସାରାଜୀବନର ସାଧନା ବିଫଳ ହୋଇଯାଇଥିଲା । କିନ୍ତୁ ଆଜି ଆମ୍ଭେମାନେ ଯେଉଁ ମହା ସାଧକଙ୍କ ସମ୍ପର୍କରେ ଆଲୋଚନା କରିବାକୁ ଯାଉଅଛୁଁ ସେ ଯଥାର୍ଥରେ ଅସାଧ୍ୟ ସାଧନ କରିଛନ୍ତି । ସେ ଫକୀରର ମସ୍ତକ ଥିଲା ଜଟାବିହୀନ, ମାତ୍ର ଜୀବନରେ ଅନେକ ଅଭାବ-ଅନାଟନ, ରୋଗ-ବ୍ୟାଧି, ଈର୍ଷା-ଆଘାତ ଜନିତ ଶୋକ-ଯନ୍ତ୍ରଣା ଏବଂ ଉତ୍‌ଥାନ ପତନର ଜଟିଳ ଜଟ ଘେରି ରହିଥିଲା । ସୁତରାଂ ଧୂଳି-କାଦୁଅରେ ଭରା ମଳିନ କ୍ଷୀଣ କଳେବର ତାଙ୍କ ପକ୍ଷେ ସ୍ୱାଭାବିକ ଥିଲା । ନାନା ସ୍ଥାନର ଭସ୍ମ ମଧ୍ୟରୁ ସେ ସମାଜ-ସଂସ୍କୃତି, ସାହିତ୍ୟ-ଶିକ୍ଷା ଓ ଜ୍ଞାନର ଉତ୍କର୍ଷ ବିଧାନ ସକାଶେ ପରଶମଣି ଖୋଜି ଆୟତ୍ତ କରିଛନ୍ତି ଏବଂ ସେଥିରେ ମନର ମାଧୁରୀ ମିଶାଇ

ଉପଯୋଗୀ ଓ ସୁପାଠ୍ୟ କରି ଉତ୍କଳବାସୀଙ୍କୁ ଉପହାର ଦେଇଛନ୍ତି । ଏହି ଖୋଜି ପାଇବାର ବାସନା ହିଁ ତାଙ୍କୁ ମଧ୍ୟେ ମଧ୍ୟେ ସାଗର ନିକଟକୁ ଓଟାରି ଆଣିଛି, କାରଣ ସାଗର ରତ୍ନାକର । ଆଲୋଚିତ ସାଗର ବଙ୍ଗଦେଶର ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବ୍ୟତୀତ ଆଉ କେହି ନୁହନ୍ତି (୧୮୨୦-୧୮୯୧) ।

ସାଧାରଣ ନାମ ଈଶ୍ୱରଚନ୍ଦ୍ର ବନ୍ଦୋପାଧ୍ୟାୟ । ବିଦ୍ୟାସାଗର ପ୍ରାପ୍ତ ଉପାଧି ଏବଂ ଜନପ୍ରିୟ ନାମ । ବିଦ୍ୟା ଓ ଦୟା ସହିତ ପୌରୁଷ, ପ୍ରେମ ଓ ମନୁଷ୍ୟତ୍ୱ ପରି ଗୁଣର ଆକର ଥିଲେ ବିଦ୍ୟାସାଗର । ସ୍ୱତନ୍ତ୍ରତା, ସଚେତନତା ଓ ପାରମାର୍ଥିକତାରେ ସେ ଥିଲେ ଅନନ୍ୟ ସାଧାରଣ । ଦରିଦ୍ର ବ୍ରାହ୍ମଣ ସନ୍ତାନ । ବାଲ୍ୟକାଳର ଅଧିକାଂଶ ସମୟ ଘୋର ଉପାସରେ ବିତାଇଛନ୍ତି, ତେଣୁ ଶରୀର ହୋଇ ଉଠିଛି 'ବ୍ୟାଧିର ମନ୍ଦିର' । କିନ୍ତୁ ଏହି ବ୍ୟାଧି-ଗ୍ରସ୍ତ କ୍ଷୀଣ କଳେବରଧାରୀ ନିଜର ବ୍ୟକ୍ତିତ୍ୱ ଓ ଆତ୍ମସମ୍ମାନ ବଳରେ ସମଗ୍ର ସମାଜ ଓ ଦେଶକୁ ପ୍ରଭାବିତ କରିପାରିଛନ୍ତି । ପ୍ରତିଭା, ସାହିତ୍ୟପ୍ରୀତି, ଅସାଧାରଣ ଚରିତ୍ରିକ ଦୃଢ଼ତା ଏବଂ ଦୁର୍ଲଭ ବ୍ୟକ୍ତିତ୍ୱର ସମାନାଧିକାରୀ ବିଦ୍ୟାସାଗର । ଅସାଧାରଣ ଜ୍ଞାନୀ ଓ ଶିକ୍ଷାବିତ୍ ହୋଇଥିବା ଯୋଗୁଁ ତତ୍କାଳୀନ ସକଳ ସାମାଜିକ ଅନାଗ୍ରହ ଓ କୁସଂସ୍କାରକୁ ଦୂର କରିପାରିଛନ୍ତି । ପାଠ୍ୟ ପୁସ୍ତକର ଅଭାବ ମେଣ୍ଟାଇବା ସକାଶେ ପାଠ୍ୟ ପୁସ୍ତକ ରଚନା, ଆବଶ୍ୟକ ସ୍ଥଳେ ଅନ୍ୟ ଭାଷାରୁ ଅନୁବାଦ, ସଂସ୍କୃତ ଶିକ୍ଷା ସକାଶେ ଏକାଧିକ ସହଜ ଏବଂ ଉପଯୋଗୀ ଗ୍ରନ୍ଥ ରଚନା, ସାଧାରଣେ ଜନଗଣ ମଧ୍ୟରେ ଶିକ୍ଷାର ପ୍ରସାର ନିମନ୍ତେ ନାନା ସ୍ଥାନରେ ବିଦ୍ୟାଳୟ ସ୍ଥାପନ ଶିକ୍ଷା ଜଗତକୁ ତାଙ୍କର ଦାନ । ବିଦ୍ୟାସାଗର ନାରୀ ଜାତି ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ ଥିଲେ । ସେ ହୃଦୟଙ୍ଗମ କରିଥିଲେ ନାରୀ ଜାତିର ଉନ୍ନତି ନ ହେଲେ ସମାଜର ଉନ୍ନତି ସମ୍ଭବ ନୁହେଁ । ତେଣୁ ସ୍ତ୍ରୀ-ଶିକ୍ଷାର ବିସ୍ତାର ନିମନ୍ତେ ନାନା ସ୍ଥାନରେ ନାରୀ ଶିକ୍ଷାୟତନ ସ୍ଥାପନ କରିବାରେ ଅଗ୍ରଣୀ ହୋଇଛନ୍ତି । ନାରୀ ଜାତିର ଉନ୍ନତି ସକାଶେ ବିଧବା ବିବାହ ପ୍ରଚଳନଠାରୁ ଆରମ୍ଭ କରି ବୀଟନ କଲେଜ ପ୍ରତିଷ୍ଠା ପର୍ଯ୍ୟନ୍ତ ଯାହା ଯାହା କରଣୀୟ ସମସ୍ତ କରିଛନ୍ତି । ଶିକ୍ଷା ଓ ସମାଜ ସଂସ୍କାର ସକାଶେ ନିଜର ସମସ୍ତ ଶକ୍ତି ବିନିଯୋଗ କରିଛନ୍ତି । ତାଙ୍କର ବିଶ୍ୱାସ ଥିଲା ସଂସ୍କୃତ ଓ ଇଂରାଜୀ ଭାଷାରେ ଦକ୍ଷ ହେଲେ ଛାତ୍ରମାନେ ମାତୃଭାଷାରେ ଉତ୍ତମ ଲେଖକ ହୋଇ ପାରିବେ । ଶିକ୍ଷା, ସମାଜ ସଂସ୍କାର ଏବଂ ଜାତୀୟ ଜାଗରଣ ନିମନ୍ତେ

ପତ୍ରପତ୍ରିକାର ଗୁରୁତ୍ୱ ଉପଲବ୍ଧି କରି 'ସର୍ବଶୁଭଙ୍କରୀ' ଓ 'ସୋମପ୍ରକାଶ' ପ୍ରଭୃତି ପତ୍ରିକା ପ୍ରକାଶ କରିଥିଲେ ଏବଂ 'ତତ୍ତ୍ୱବୋଧିନୀ' ପତ୍ରିକା ସହିତ ପ୍ରତ୍ୟକ୍ଷ ଭାବରେ ସଂଶ୍ଳିଷ୍ଟ ଥିଲେ । ଉଦାରତା ଓ ପରୋପକାର ଥିଲା ତାଙ୍କର ଆଜୀବନ ବୃତ୍ତି । ଆଶ୍ଚର୍ଯ୍ୟର ବିଷୟ ଯେଉଁ ମନୁଷ୍ୟ ସମାଜର ଉନ୍ନତି ସକାଶେ ତାଙ୍କର କର୍ମଯୋଗ, ସେହି ମନୁଷ୍ୟ ହିଁ ତାଙ୍କର ବିରୋଧୀ ହୋଇଉଠିଛି । ଜୀବନର ଅପରାହ୍ନ ବେଳାରେ ମନୁଷ୍ୟର ଏଇ ଅକୃତଜ୍ଞତା ତାଙ୍କୁ ଯଥେଷ୍ଟ ଆଘାତ କରିଛି, ତେଣୁ ତାଙ୍କ ମୁଖରୁ ବ୍ୟଙ୍ଗ ଓ ବ୍ୟଥାଭରା ଉକ୍ତି ନିଃସୃତ ହୋଇଛି– "ସେ ଆମାର ନିନ୍ଦେ କରଇ କେନ, ଆମି ତୋ ତାର କୋନୋ ଉପକାର କରିନି ।" ସେ ଯାହା ହେଉ, ଉପରୋକ୍ତ ଗୁଣାବଳୀ ଓ କାର୍ଯ୍ୟାବଳୀରୁ ଏହା ସ୍ପଷ୍ଟ ଯେ ବିଦ୍ୟାସାଗର ଆଧୁନିକତାର ଅଗ୍ରଦୂତ ଥିଲେ । ତାଙ୍କର ଚିନ୍ତନ-ମନନ ଓ କର୍ମଦ୍ୟୋତନାର ଢେଉ ବଙ୍ଗଳାର ସୀମା ଅତିକ୍ରମ କରି ପ୍ରତିବେଶୀ ରାଜ୍ୟରେ ବିଛାଡ଼ି ହୋଇ ପଡ଼ିଥିଲା ।

ମହାଜନ ବିଦ୍ୟାସାଗରଙ୍କ ପ୍ରତି ଆକୃଷ୍ଟ ଉତ୍କଳ ମହାସାଧକ ଫକୀରମୋହନ ନିଜ ସମ୍ପର୍କରେ କହିଛନ୍ତି– "ପ୍ରଥମେ ମୋହର ନାମ ଥିଲା ବ୍ରଜମୋହନ । ଠାକୁରମା' ମୋ ନାମ ରଖିଲେ ଫକୀର(୧) ଶୈଶବରେ ମାତୃପିତୃହୀନ ଫକୀରମୋହନ ଠାକୁରମା'ଙ୍କ ତତ୍ତ୍ୱାବଧାନରେ ପାଳିତ । ଦୂରଦର୍ଶିନୀ ପିତାମହୀ ହୃଦୟଙ୍ଗମ କରିଥିଲେ ଯେ ଶିକ୍ଷା-ଦୀକ୍ଷା, ସାହିତ୍ୟ-ସଂସ୍କୃତି ଏବଂ ଜ୍ଞାନ-ଚର୍ଚ୍ଚାରେ ନିଃସ୍ୱ ସମାଜର ଯଥାର୍ଥ ପ୍ରତୀକ 'ଫକୀର' ନାମଟି ବିଫଳ ହେବ ନାହିଁ । ଦେଶ ଓ ଉତ୍କଳବାସୀଙ୍କ ଜୀବନର ମାନ ଉନ୍ନତ କରିବାର ମହାଦାୟିତ୍ୱ ତାଙ୍କୁ ହିଁ ଗ୍ରହଣ କରିବାକୁ ପଡ଼ିବ, କାରଣ ସେ ଫକୀର । କିନ୍ତୁ ସେଥି ନିମନ୍ତେ ଆବଶ୍ୟକୀୟ ପ୍ରତିଷ୍ଠାନିକ ଶିକ୍ଷା, ଉଚ୍ଚ ସ୍ତରର ଜ୍ଞାନ ଚର୍ଚ୍ଚା ଏବଂ ସମାଜର ଉଚ୍ଚ ସ୍ତରରେ ଅଗାଧ ପ୍ରତିଷ୍ଠା ଫକୀରମୋହନଙ୍କ ନିକଟରେ ନ ଥିଲା । ଚାରି ଅଣାର ଅଭାବରେ ଏକବର୍ଷ ଚାରି ମାସର ପ୍ରାଥମିକ ଶିକ୍ଷା-ଜୀବନ ଇତି ହୋଇଥିଲା । ସମଗ୍ର ଶିକ୍ଷାର ପୁଞ୍ଜି ମାତ୍ର ଅଢ଼େଇ ବର୍ଷର । ଦରଦୀ ପିତାମହୀ ଆଶ୍ୱାସ ଦେଇ କହିଥିଲେ– "ପାଠ ତୋର କ'ଣ ହବରେ ? ବଞ୍ଚି କରି ପଢ଼ିଥା, ତୁ କେତେ ଟଙ୍କା ରୋଜଗାର କରି ଆଣିବୁ ।"(୨) ଆଶ୍ୱାସ ବାଣୀ ବ୍ୟର୍ଥ ହୋଇନାହିଁ ।

---

୧. ଆତ୍ମଜୀବନୀ ଚରିତ– ଫକୀରମୋହନ ସେନାପତି - ୨ୟ ଅଧ୍ୟାୟ ।

୨. " " " " - ୭ମ ଅଧ୍ୟାୟ ।

କିଛିଦିନ ପରେ ସେହି ବିଦ୍ୟାଳୟ ତ୍ୟାଗୀ କିଶୋର ଜଣକ ଉକ୍ତ ବିଦ୍ୟାଳୟରେ ତୃତୀୟ ସରକାରୀ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ପରେ ନିଜର କର୍ମଦକ୍ଷତା ଯୋଗୁଁ ବାଲେଶ୍ୱର ମିଶନ ସ୍କୁଲର ପ୍ରଧାନ ଅଧ୍ୟାପକ ପଦରେ ଉନ୍ନିତ ହେଲେ । ଇତି ମଧ୍ୟରେ ଏହି ସ୍ୱ-ଶିକ୍ଷିତ ଶିକ୍ଷକ ଜଣକ ବାଲେଶ୍ୱରର ଜିଲ୍ଲା-ଶାସକ ଓ ତାଙ୍କର ସହକର୍ମୀ ସାହେବଙ୍କୁ ବଙ୍ଗଳା ଭାଷା ଶିଖାଇବା ଆରମ୍ଭ କରନ୍ତି । ପୁଣି ରେଭରେଣ୍ଡ ହାଲାମ ଓଡ଼ିଆ ବ୍ୟାକରଣ ଲେଖିବା ଓ ସାର ଜନ୍ ବୀମ୍‌ସଙ୍କୁ 'Comparative Grammar of the Indian Languages' ପୁସ୍ତକ ପ୍ରଣୟନରେ ଯଥେଷ୍ଟ ସାହାଯ୍ୟ କରନ୍ତି । ଫକୀରମୋହନଙ୍କ ନିଜ ଭାଷାରେ– "କେଉଁଦିନ ସଂସ୍କୃତ ଶ୍ଳୋକ, କେବେ ବା ବଂଗଳା ପଦ୍ୟ, ଓଡ଼ିଆ ରସକଲ୍ଲୋଳ, ସାଯମନ୍ତ, ଡାହାଣୀମନ୍ତ –ଏହି ସମସ୍ତ ବିଷୟରେ କଥୋପକଥନ ହୋଇଯାଏ ।" ଏହି ସ୍ୱଳ୍ପ-ଶିକ୍ଷିତ ଫକୀରମୋହନ ସେନାପତି (୧୮୪୩-୧୯୧୮) ପରବର୍ତ୍ତୀ ଉତ୍କଳୀୟ ସମାଜ ଜୀବନରେ ଆଧୁନିକତାର ଅଗ୍ରଦୂତ ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପରି ଫକୀରମୋହନ ମଧ୍ୟ ନାନା ପ୍ରତିକୂଳ ଅବସ୍ଥା ମଧ୍ୟ ଦେଇ କ୍ରମୋନ୍ନତି ପଥରେ ଅଗ୍ରସର ହୋଇଛନ୍ତି । ଶିକ୍ଷା, ସାହିତ୍ୟ, ସମାଜ ଓ ଜାତିର ଅଂସଗତି– ତ୍ରୁଟି-ବିଚ୍ୟୁତି ଅପସାରଣ ତାଙ୍କ ଜୀବନର ପରମ କର୍ତ୍ତବ୍ୟ ହୋଇ ଉଠିଛି । ଶିକ୍ଷାର ପ୍ରସାର, ସାମାଜିକ ସଂସ୍କାର, ଜ୍ଞାନଚର୍ଚ୍ଚା ଏବଂ ସାହିତ୍ୟ ସୃଷ୍ଟି ଯୋଗୁଁ ସେ ଜୀବନରେ ସିଦ୍ଧିଲାଭ କରି-ପାରିଛନ୍ତି । ସେ ଯୁଗର ପରିପ୍ରେକ୍ଷୀରେ ଫକୀରମୋହନଙ୍କ ପଥ ସ୍ୱତନ୍ତ୍ର । ଯୁଗୋଚିତ ପ୍ରତିଭା ଓ ବିପ୍ଳବାତ୍ମକ ଦୃଷ୍ଟିଭଙ୍ଗୀର ଅଧିକାରୀ ଫକୀରମୋହନ, ନବଯୁଗର ସ୍ରଷ୍ଟା । ବିଦ୍ୟାସାଗରଙ୍କ ପରି ଶିକ୍ଷା, ସାହିତ୍ୟ, ସମାଜ ଓ ସଂସ୍କୃତିର ଯୁଗୋପଯୋଗୀ ଉନ୍ନତି ବିଧାନ କରି ସେ ଓଡ଼ିଶାକୁ ନବ ରୂପ ଓ କୁଳର ମର୍ଯ୍ୟାଦା କରିଛନ୍ତି । ଯୁଗଯୁଗର ସଞ୍ଚିତ ଶୋଷଣ-ପୀଡ଼ନ, ଅତ୍ୟାଗ୍ରର, କୁସଂସ୍କାର ଓ ଅନ୍ଧବିଶ୍ୱାସର ପ୍ରାସାଦ ହୋଇଛି ଧୂଳିସାତ । ଉତ୍କଳର ଜାତୀୟ ଜୀବନରେ ସଂସ୍କାର, ବିପ୍ଳବ ଓ ପ୍ରଗତିର ନବଦିଗନ୍ତ ପ୍ରତ୍ୟକ୍ଷ ହୋଇଉଠିଛି, ଯେପରି ହୋଇଥିଲା ହିନ୍ଦୀ ସାହିତ୍ୟରେ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କର ଆବିର୍ଭାବ କାଳରେ, (୧୮୪୦-୧୮୮୫ ଖ୍ରୀ:) ।

କାର୍ଯ୍ୟକୁଶଳତା ଓ ବିଶ୍ୱାସଯୋଗ୍ୟତାର ଫଳସ୍ୱରୂପ ଫକୀରମୋହନ ଅନାୟାସରେ ସରକାରୀ କାର୍ଯ୍ୟ ପାଇଛନ୍ତି, ତେବେ ଚିନ୍ତା ଓ କାର୍ଯ୍ୟର ସ୍ୱାତନ୍ତ୍ର୍ୟ

ଫଳରେ ମତ ବିରୋଧ ଘଟିଛି ଏବଂ ସେ ଇସ୍ତଫା ମଧ୍ୟ ଦେଇଛନ୍ତି । ନିକଟ ଓ ଦୂରବର୍ତ୍ତୀ ବିଭିନ୍ନ ରଜାଙ୍କର ଦେବାନ ଓ ମ୍ୟାନେଜର ପଦ ମଧ୍ୟ ଅଳଙ୍କୃତ କରିଛନ୍ତି । ମଝିରେ ମଧ୍ୟ ମଧ୍ୟେ କପର୍ଦ୍ଦକଶୂନ୍ୟ ହୋଇପଡ଼ିଛନ୍ତି, ମାତ୍ର ଆତ୍ମସମ୍ମାନକୁ ବଳି ଦେଇ ନାହାନ୍ତି । ଏହିପରି ୧୮୪୩ ଖ୍ରୀ:ରୁ ୧୯୦୦ ଖ୍ରୀ: ପର୍ଯ୍ୟନ୍ତ ତାଙ୍କର କର୍ମ-ଜୀବନ ବିତିଯାଇଛି । ପରବର୍ତ୍ତୀ ଅବକାଶ ଓ ଦୀର୍ଘ ଦିନର ତିକ୍ତ-କଠୋର ଜୀବନାନୁଭୂତିକୁ ଭିତ୍ତି କରି ସାହିତ୍ୟ ସୃଷ୍ଟି କରିଛନ୍ତି । ରୋଗ ଭୋଗ, ସାହିତ୍ୟ ପାଠ ଓ ରଚନା ଥିଲା ତାଙ୍କର ନିତ୍ୟ ସହଚର । କବିତା, ଗଳ୍ପ ଓ ଉପନ୍ୟାସ ଏଇ ସମୟର ପ୍ରଧାନ ଫସଲ, ଯାହା ତାଙ୍କୁ ବ୍ୟାସକବି, 'ଅମର କଥାଶିଳ୍ପୀ', 'ସରସ୍ୱତୀଙ୍କ ବରପୁତ୍ର' ଏବଂ 'ଯୁଗସ୍ରଷ୍ଟା' ଭାବରେ ଆଖ୍ୟାୟିତ କରିଛି । ଏଇ ପ୍ରସଙ୍ଗରେ ଡ଼ଃ ମାୟାଧର ମାନସିଂଙ୍କ ଅଭିମତ ଉଲ୍ଲେଖଯୋଗ୍ୟ । ସେ କହିଛନ୍ତି– "ତାଙ୍କର ସମଗ୍ର ଜୀବନ ଓ ରଚନାବଳୀ ଭିତରେ, ପାଠକ ପାଠିକା ଏହି ପରମ ମାନବ ଧର୍ମୀ, ମୈତ୍ରୀ କରୁଣାମୟ ଓ ପତିତଦରଦୀ ସରସ୍ୱତୀଙ୍କି ହିଁ ସବୁତ୍ର ଭେଟିବେ, ... ... ... । ସମଗ୍ର ଓଡ଼ିଆ ସମାଜର ଇତିହାସରେ ଏ ଏକ ଅଶ୍ରୁତପୂର୍ବ ବ୍ୟକ୍ତିତ୍ୱ, –ଉଚ୍ଚ ପ୍ରତିଭାବାନ ଅଥଚ ସର୍ବଦା ବିବିଧ ସଂକଟାପନ୍ନ, ଜୀବମାନବର ଦୁଃଖରେ ଗଭୀର ଭାବରେ ସମଦରଦୀ, ଅଥଚ ଶାସନ କ୍ଷେତ୍ରରେ ଚତୁର୍-କୁଟିଳ-କଠୋର ହୋଇ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ଆଦୌ ପଶ୍ଚାତପଦ ନୁହେଁ ; ଅଳ୍ପ ଇସ୍କୁଲ ପଢ଼ା, ଅଥଚ ପ୍ରବଳ ଜିଜ୍ଞାସା ଫଳରେ ବିଶ୍ୱଜ୍ଞାନ ପ୍ରାପ୍ତ । ନାନା ବାଧାବିଘ୍ନ ସତ୍ତ୍ୱେ ଅପୂର୍ବ ସିଦ୍ଧି ସକଳର କେନ୍ଦ୍ର । ଅଥଚ ସମ୍ପୂର୍ଣ୍ଣ ନିରହଙ୍କାର ଓ ଈଶ୍ୱର ସମର୍ପିତ ପ୍ରାଣ, ଦେଶଭକ୍ତ, ଜାତିପ୍ରେମୀ, ଦୀନଜନର ଭବିଷ୍ୟତ ସୁଖ ସୁବିଧା ପାଇଁ ନାନା ଯୋଜନାର ସ୍ୱପ୍ନଦ୍ରଷ୍ଟା, ପୁଣି ଦୀନ ଇତରଙ୍କୁ ନେଇ ହିଁ ତାଙ୍କର ଭାଷାରେ ଅପୂର୍ବ ସାହିତ୍ୟ ସ୍ରଷ୍ଟା । ... ... ... । ଏ ଏକ ଅସାଧାରଣ ମହିମାମୟ ବ୍ୟକ୍ତିତ୍ୱ, ଯାହାକୁ ନେଇ ପ୍ରତ୍ୟେକ ଓଡ଼ିଆ ଗର୍ବ କରିବାର ଓ ଅନୁକରଣ କରିବାର କଥା ।"(୩) କହିବା ବାହୁଲ୍ୟ ଯେ ଏପରି ଅଭିମତ ବିଦ୍ୟାସାଗରଙ୍କ ସମ୍ପର୍କରେ ବାରମ୍ବାର ବର୍ଣ୍ଣିତ ହୋଇଛି ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ଫକୀରମୋହନ ସେନାପତି– ଉଭୟ ସ୍ୱୀୟ ସ୍ୱୀୟ କ୍ଷେତ୍ରରେ ଅନନ୍ୟ ହୋଇ ମଧ୍ୟ ବହୁକାଂଶେ ସମଧର୍ମୀ ଓ ସହକର୍ମୀ

---

୩· ସରସ୍ୱତୀ ଫକୀରମୋହନ – ଡ଼ଃ ମାୟାଧର ମାନସିଂ (୧୯୭୨) ପୃ. ୩୦୮

ଥିଲେ । ସେମାନଙ୍କର ଜୀବନବୋଧ ଓ କର୍ମଗତ ସାମ୍ୟର ଭିତ୍ତି ମଧ୍ୟ କୌଣସି କୌଣସି କ୍ଷେତ୍ରରେ ଅଭିନ୍ନ ଓ ଏକ ଉତ୍ସଜାତ ବୋଲି ମନେ ହୁଏ । ବିଦ୍ୟାସାଗର ସମ୍ପୂର୍ଣ୍ଣ ସୁଶିକ୍ଷିତ ଓ ଅନୁଗାମୀ । ଫକୀରମୋହନ ସ୍ୱଶିକ୍ଷିତ ଓ ଅନୁଗାମୀ । ତେଣୁ ତାଙ୍କୁ ବିଦ୍ୟାଳୟ ପାଠ୍ୟ ସହିତ ବଙ୍ଗଳା, ସଂସ୍କୃତ, ଇଂରଜୀ ଏବଂ ତେଲେଙ୍ଗୀ ପ୍ରଭୃତି ଭାଷା ସ୍ୱ-ଆୟାସରେ ଶିଖିବାକୁ ହୋଇଥିଲା । ଆଜୀବନ ଏ ସମସ୍ତ ଭାଷାର ଗ୍ରନ୍ଥ ପାଠ ଅବ୍ୟାହତ ରଖିଥିଲେ ଫକୀରମୋହନ । ଭାଷା ଓ ସାହିତ୍ୟର ପ୍ରଗତି ଦିଗରେ ତାଙ୍କର ଲକ୍ଷ୍ୟ ଥିଲା ସ୍ଥିର । ବିଶେଷ କରି ପ୍ରତିବେଶୀ ବଙ୍ଗଳା ସାହିତ୍ୟ ଓ ପତ୍ରପତ୍ରିକା ସହିତ ସେ ଆମୃତ୍ୟୁ ସମ୍ପର୍କ ଅକ୍ଷୁର୍ଣ୍ଣ ରଖିଥିଲେ । ୧୯୧୨ ଖ୍ରୀ: ରେ ଅସୁସ୍ଥ ଫକୀରମୋହନ ନାନା ଜନ ସହିତ ତାଙ୍କର ରୋଗ-ଶୋକ ସମ୍ବନ୍ଧରେ ଆଲୋଚନା କରିଥିଲେ ବୋଲି ତାଙ୍କର ଆତ୍ମଜୀବନୀ ଗ୍ରନ୍ଥରୁ ଜଣାପଡେ । ତାଙ୍କ ଭାଷାରେ– "ମହାରାଜାଙ୍କ ସହିତ ସାକ୍ଷାତର ପରଦିନ 'ପ୍ରବାସୀ' ନାମକ ବଙ୍ଗଳା ମାସିକ ପତ୍ରିକାରେ ଆୟୁର୍ବେଦୀୟ ଚିକିତ୍ସା ସମ୍ବନ୍ଧରେ ଗୋଟିଏ ସାରଗର୍ଭ ପ୍ରବନ୍ଧ ପ୍ରକାଶିତ ହେବାର ଦେଖିଲି ।(୪) ମାତ୍ର ତଦନୁରୂପ ଚିକିତ୍ସାରେ ଆରୋଗ୍ୟ ହୋଇନାହାନ୍ତି । ଫକୀରମୋହନ ଯେ ବଙ୍ଗଳା ସାହିତ୍ୟର ଶ୍ରଦ୍ଧାଶୀଳ ପାଠକ ଏବଂ ଅନୁଗ୍ରାହକ ଥିଲେ– ତା'ର ବହୁ ନିଦର୍ଶନ ମିଳେ ତାଙ୍କର ଜୀବନଚର୍ଚ୍ଚା, ଭାଷା ଚର୍ଚ୍ଚା, ସାହିତ୍ୟ ସୃଷ୍ଟିର ନାନା ସ୍ତରରେ । କେବଳ ତାହା ନୁହେଁ, ଜ୍ଞାତ ବା ଅଜ୍ଞାତସାରରେ ଈଶ୍ୱରଚନ୍ଦ୍ର ତାଙ୍କର ଆଦର୍ଶ ଥିଲେ ଏପରି ଚିନ୍ତା ମଧ୍ୟ ଅମୂଳକ ମନେ ହୁଏ ନାହିଁ । ବାଇଶ ବର୍ଷ ବୟସରୁ ଫକୀରମୋହନ କଲିକତା ଯାତାୟାତ ଆରମ୍ଭ କରିଥିଲେ । ତତ୍‌ପୂର୍ବରୁ ବିଦ୍ୟାସାଗରଙ୍କର ବଙ୍ଗଳା ଓ ସଂସ୍କୃତ ପାଠ୍ୟପୁସ୍ତକ ସହିତ ତାଙ୍କର ଘନିଷ୍ଠ ପରିଚିତି ହୋଇସାରିଥିଲା । ପ୍ରକାରନ୍ତରେ ବିଦ୍ୟାସାଗର ଗୁରୁରୂପେ ସ୍ୱୀକୃତ ମଧ୍ୟ ହୋଇ ସାରିଥିଲେ । ତାଙ୍କ ସହିତ ପତ୍ରାଳାପ ଚାଲିଥିଲା । ସୁତରାଂ କଲିକତା ଯାଇ ଫକୀରମୋହନ ବିଦ୍ୟାସାଗରଙ୍କ ସହିତ ସାକ୍ଷାତ କରୁଥିଲେ ; ଶିକ୍ଷା, ସମାଜ ଓ ସାହିତ୍ୟ ପ୍ରଭୃତି ନାନା ବିଷୟରେ ଉଭୟଙ୍କର ଆଲୋଚନା ହେଉଥିଲା– ଏହା ସହଜରେ ଅନୁମେୟ । ଏବଂ ଆଲୋଚନାରେ ଶିକ୍ଷାର ଅବସ୍ଥା, ତା'ର ଉନ୍ନତି ଓ ପ୍ରସାର, ପାଠ୍ୟ ପୁସ୍ତକର ଅଭାବ ପୂର୍ତ୍ତି, ପୁସ୍ତକ ଅନୁବାଦ, ବିଦ୍ୟାଳୟ ସ୍ଥାପନା, ଗଦ୍ୟର ସଂସ୍କାର ସାଧନ,

---

୪- ଆତ୍ମଜୀବନୀ ଚରିତ – ଫକୀରମୋହନ ସେନାପତି । (ଆ: ଚ. ବାଇଶ)

ସ୍ତ୍ରୀ ଶିକ୍ଷାର ଆବଶ୍ୟକତା ଆଦି ପ୍ରାଧାନ୍ୟ ପାଉଥିଲା ବୋଲି ଅନୁମାନ କରଯାଇ ପାରେ ।

ତତ୍କାଳୀନ ସମଗ୍ର ଉତ୍କଳରେ ମାତ୍ର ସାତ-ଆଠଟି ବିଦ୍ୟାଳୟ ଥିଲା । ଅଧ୍ୟାପକ ଫକୀରମୋହନ ଅନ୍ୟାନ୍ୟ ବିଷୟ ସହିତ ସଂସ୍କୃତ ମଧ୍ୟ ପଢାଉଥିଲେ । କିନ୍ତୁ ସେଥି ନିମନ୍ତେ ତାଙ୍କୁ ସ୍ୱ-ଚେଷ୍ଟାରେ ସଂସ୍କୃତ ଶିଖିବାକୁ ପଡ଼ିଥିଲା । ଏ ସମ୍ପର୍କରେ ନିଜର ଆତ୍ମଜୀବନୀରେ ସେ ଲେଖିଛନ୍ତି– "ମୁଁ ପଣ୍ଡିତଙ୍କ ନିକଟରେ ଅଭିଧାନ ଏବଂ ବ୍ୟାକରଣ ପଢୁଥିଲି । ମାତ୍ର ମୁଗ୍ଧବୋଧର ସୂତ୍ରମାନଙ୍କର ଅର୍ଥ ବୁଝିବା ମୋ ସାମାନ୍ୟ ବୁଦ୍ଧିର ଅଗମ୍ୟ ଥିଲା । ପରେ ବିଦ୍ୟାସାଗରଙ୍କ ବ୍ୟାକରଣ କୌମୁଦୀ ଗ୍ରିଭଗ ଏବଂ ଋଜୁପାଠ ତିନିଭଗ ପ୍ରକାଶିତ ହେବାରୁ ମୋହର ସଂସ୍କୃତ ଶିକ୍ଷା ପକ୍ଷରେ ବିଶେଷ ସାହାଯ୍ୟ ହୋଇଥିଲା ।(୫) ଏଥିରୁ ପ୍ରମାଣିତ ହୁଏ ଯେ ଶତ ପ୍ରତିକୂଳତା ସତ୍ତ୍ୱେ ଫକୀରମୋହନ ସେନାପତିଙ୍କର ଜ୍ଞାନଲଭ ଓ ଭଷା ଶିକ୍ଷାର ପ୍ରବଳ ତୃଷ୍ଣା ବିନ୍ଦୁମାତ୍ର କମିଯାଇ ନଥିଲା । ଇଂରଜୀ ଶିକ୍ଷାର ପ୍ରବଳ ଆଗ୍ରହକୁ ଦମନ କରି ନ ପାରି ଗୋଟିଏ ଫାଷ୍ଟ ବୁକ ସଂଗ୍ରହ କରିଥିଲେ ବୋଲି ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ବର୍ଣ୍ଣନାନୁଯାୟୀ– "ଖଣ୍ଡିଏ ଫାଷ୍ଟ ବୁକ ସଂଗ୍ରହ କଲି, ଗଡଗଡ଼ିଆ ଘାଟରେ ଉପସ୍ଥିତ ବାବୁମାନଙ୍କ ସାହାଯ୍ୟରେ ପଢିବାକୁ ଲଗିଲି । ମୋହର ଜଣେ ବନ୍ଧୁ ... ... ... କେବଳ କେତେଦିନ ମାତ୍ର ପଢ଼ାଇ ଦେଇଥିଲେ । ମୁଁ ନିଜେ ନିଜେ ଡ଼ିକ୍‌ସିନାରୀ ସାହାଯ୍ୟରେ କେତେ ଖଣ୍ଡ ମାତ୍ର ଇଂରଜୀ ପୁସ୍ତକ ପଢିଥିଲି । ତେଣିକି ଇଂରଜୀ ଶିକ୍ଷା ଭବିଷ୍ୟତ ଜୀବନରେ ମୋର ଅନେକ ସାହାଯ୍ୟ କରିଥିଲା ।(୬) ପୁନଶ୍ଚ ୧୮୧୪ ଖ୍ରୀ: ରେ ପ୍ରୌଢ ବୟସରେ ଚାକିରୀ ବା ଅନ୍ୟ କୌଣସି କର୍ମ ନ ଥିବା ହେତୁ ସେ ତେଲେଙ୍ଗୀ ଭଷା ଶିକ୍ଷାର ଉଦ୍ୟମ କରିଥିଲେ । ତାଙ୍କ ଭଷାରେ– "ସେହି ଛ'ମାସ କାଳ... ... ମୁଁ ଜଣେ ଶିକ୍ଷକ ନିଯୁକ୍ତ କରି ତୈଲଙ୍ଗୀ ଭଷା ଶିକ୍ଷା କରିଥିଲି ।"(୭) ଏହି ପ୍ରସଙ୍ଗରେ ବିଦ୍ୟାସାଗରଙ୍କର ଦରଭଆନ ସହଯୋଗିତାରେ ହିନ୍ଦୀ ଭଷା ଶିକ୍ଷା, ହିନ୍ଦୀର ଅନୁବାଦକ, ଶିକ୍ଷକ ଓ ପରୀକ୍ଷକ ହେବାର ଘଟଣା ଅବଶ୍ୟ ସ୍ମରଣୀୟ ।

---

୫- ଆତ୍ମଜୀବନୀ ଚରିତ – ଫକୀରମୋହନ ସେନାପତି (୯ମ ଅଧ୍ୟାୟ)
୬- ଆତ୍ମଜୀବନୀ ଚରିତ – ୧୨ –ଫକୀରମୋହନ ସେନାପତି ।
୭- " " – ୨୦ – " "

ଶିକ୍ଷାର୍ଥୀର ମନ ନେଇ ଫକୀରମୋହନ ବଙ୍ଗଳା କଥା ସାହିତ୍ୟ ପାଠ କରୁଥିଲେ । ୧୮୬୫-୬୬ ଖ୍ରୀ. ରେ ଓଡ଼ିଶାରେ ଯେଉଁ କରାଳ ଦୁର୍ଭିକ୍ଷ ଦେଖା ଦେଇଥିଲା ତା'ର ମର୍ମସ୍ପର୍ଶୀ ବର୍ଣ୍ଣନା ମିଳେ ତାଙ୍କର ଆତ୍ମଜୀବନୀ (୧୯୧୭)ର ଅଷ୍ଟମ ଅଧ୍ୟାୟରେ । ଏହି ଦୁର୍ଭିକ୍ଷର ଅନୁରୂପ ବର୍ଣ୍ଣନା ଆମ୍ଭେମାନେ ପାଉଥାଉଁ ୧୮୮୨ ଖ୍ରୀ. ରେ ପ୍ରକାଶିତ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର 'ଆନନ୍ଦମଠ' ଉପନ୍ୟାସର ପ୍ରାରମ୍ଭରେ । ଉଭୟ ସ୍ୱଚକ୍ଷୁରେ ସେହି ଦୁର୍ଭିକ୍ଷ ଦେଖିଛନ୍ତି । ତତ୍‌ସତ୍ତ୍ୱେ ଫକୀରମୋହନ ଯେ 'ଆନନ୍ଦମଠ' ପାଠ କରିଥିଲେ, ଦୁର୍ଭିକ୍ଷର ବର୍ଣ୍ଣନା ଅନୁଧ୍ୟାନ କଲେ ଜଣାପଡ଼େ । ତୁଳନୀୟ ଅଂଶବିଶେଷ ପାଠକଙ୍କ ନିମନ୍ତେ ଉଦ୍ଧୃତ । ପ୍ରଥମେ ଫକୀରମୋହନଙ୍କର ରଚନାରୁ– "କାର୍ତ୍ତିକ ମାସ ଆରମ୍ଭରୁ ଲୋକେ ଅତ୍ୟନ୍ତ ନିରାଶ ହୋଇ ପଡ଼ିଲେ । ... ... ... ଧାନଗଡ଼ିକ ଶୁଖି କୁଟାପରି ହୋଇ ଗଲାଣି । ... ... ... ଦୁଆର ଦୁଆର ବୁଲି ବୁଲି ଭିକ ମାଗୁଥାଆନ୍ତି । କାହା ଘରେ ଚାଉଳ ଅଛି ଯେ ଭିକ ଦେବ । ... ... ... ଗୃହୀଲୋକ ଅବସ୍ଥାନୁସାରେ ପ୍ରଥମେ କଂସା, ପିତଳ, ଗୋରୁ-ଗାଈ, ସୁନା-ରୂପା– ଯାହା ଘରେ ଥିଲା ବିକି ବିକି ମାଘ ଫଗୁଣ ଯାଏଁ ଦାନ୍ତ କାମୁଡ଼ି ଘରେ ପଡ଼ିରହିଲେ । – – – ତେନ୍ତୁଳି ଗଛରେ କଅଁଳିଆ ପତ୍ର ବାହାରିବାରୁ ଗୋଟାଏ ଗୋଟାଏ ଗଛରେ ଦଶ-କୋଡ଼ିଏ ଜଣ ଲୋଖାଏଁ ଚଢି ମାଙ୍କଡ ପରି ପତ୍ର ଖୁଣ୍ଟି ଖୁଣ୍ଟି ଖାଉଥାଆନ୍ତି ।"(୮)

ବର୍ତ୍ତମାନ ବଙ୍କିମଚନ୍ଦ୍ରଙ୍କର 'ଆନନ୍ଦମଠ'ର ବର୍ଣ୍ଣନା–

"ଆଶ୍ୱିନ କାର୍ତ୍ତିକେ ବିନ୍ଦୁମାତ୍ର ବୃଷ୍ଟି ପଡ଼ିଲ ନା, ମାଠେ ଧାନ୍ୟ ସକଲ ଶୁକାଇୟା ଏକେବାରେ ଖଡ଼ ହୋଇଲ ଗେଲେ । – – – ଲୋକେ ପ୍ରଥମେ ଭିକ୍ଷା କରିତେ ଆରମ୍ଭ କରିଲ, ତାରପର କେ ଭିକ୍ଷା ଦେଇ ? – – – ଗୋରୁ ବେଚିଲ, ଲାଙ୍ଗଲ-ଯୋୟାଲ ବେଚିଲ, ବୀଜଧାନ ଖାଇୟା ଫେଲିଲ, ଘରବାଡୀ ବେଚିଲ, ଜୋତ ଜମା ବେଚିଲ । – – – ଖାଦ୍ୟା ଭାବେ ଗାଛେର ପାତା ଖାଇତେ ଆରମ୍ଭ କରିଲ ।"(୯)

---

୮- ଆତ୍ମଜୀବନୀ ଚରିତ – ୧୩ –ଫକୀରମୋହନ ସେନାପତି ।

୯- ଆନନ୍ଦ ମଠ – ପ୍ରଥମ ଅଧ୍ୟାୟ – ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ।

ଏଠାରେ ଜୀବନାନୁଭୂତି ସହିତ ଅଭିନ୍ନ ପ୍ରକାଶଭଙ୍ଗୀ ମଧ୍ୟ ଲକ୍ଷଣୀୟ ।

ପାଠ୍ୟପୁସ୍ତକର ଅଭାବ ପୂରଣ କରିବା ଫକୀରମୋହନଙ୍କର ପ୍ରଧାନ ଚିନ୍ତା ଥିଲା । ତେଣୁ ୧୮୬୮ ଖ୍ରୀ. ରେ ଉତ୍କଳର ଭାଷା ଓ ସାହିତ୍ୟର ଉନ୍ନତି ଏବଂ ପ୍ରସାର ନିମନ୍ତେ କାୟମନୋବାକ୍ୟରେ ବ୍ରତୀ ହୋଇ ଉଠିଲେ । 'ଗଜପତ୍ରର ଇତିହାସ' ନାମକ ଏକ ପାଠ୍ୟ ପୁସ୍ତକ ସେ ରଚନା କଲେ ସତ୍ୟ କିନ୍ତୁ ଅର୍ଥାଭାବ ଯୋଗୁଁ ତାହା ପ୍ରକାଶିତ ହୋଇ ପାରିଲା ନାହିଁ । ହତୋତ୍ସାହ ହେଲେ ନାହିଁ ଫକୀରମୋହନ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ରଚିତ 'ଜୀବନ ଚରିତ' (୧୮୪୯ଖ୍ରୀ:) ପାଠ୍ୟ ପୁସ୍ତକଟିର ଉପଯୋଗିତା ଉପଲବ୍ଧି କରି ତାହାକୁ ଓଡ଼ିଆରେ ଅନୁବାଦ କରିବାର୍ ସିଦ୍ଧାନ୍ତ ନେଲେ । କାରଣ ତତ୍କାଳୀନ ଓଡ଼ିଆରେ ଏପରି ଗ୍ରନ୍ଥର ଅଭାବ ଦେଖା ଦେଇଥିଲା । ଏ ପ୍ରସଙ୍ଗରେ ଫକୀରମୋହନ ଲେଖିଛନ୍ତି—

"ପରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଅନୁମତି ପାଇ ତାହାଙ୍କ ଲିଖିତ ବଙ୍ଗଳା 'ଜୀବନ ଚରିତ' ଖଣ୍ଡ ଓଡ଼ିଆରେ ଅନୁବାଦ କରି କଲିକତା ବ୍ୟାପଟିଷ୍ଟ ମିଶନ ପ୍ରେସରୁ ଛପାଇ ଆଣିଲି । ଉକ୍ତ ପୁସ୍ତକ ଛାତ୍ରବୃତ୍ତି ପରୀକ୍ଷା ସଙ୍କାଶେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହେଲା । ତହିଁ ଉତ୍ତାରୁ, ଖଣ୍ଡିଏ ବ୍ୟାକରଣ ଓ ଖଣ୍ଡିଏ ଅଙ୍କମାଳା ଲେଖିଲି । ସେ ଦୁଇଖଣ୍ଡ ମଧ୍ୟ ସ୍କୁଲମାନଙ୍କରେ ଚଳିବାକୁ ଲାଗିଲା ।"(୧୦) ।

ସୁତରାଂ ବିଦ୍ୟାସାଗରଙ୍କୁ ଆଦର୍ଶ କରି ଫକୀରମୋହନ ଓଡ଼ିଆ ପାଠ୍ୟପୁସ୍ତକର ଅଭାବମୋଚନ କରିବାରେ ସଫଳ ହୋଇଛନ୍ତି । ଏଠାରେ ଗୋଟିଏ ବିଷୟ ଆଲୋଚନା କରିବା ପ୍ରୟୋଜନ ଯେ ବିଦ୍ୟାସାଗର 'ଜୀବନ ଚରିତ' ନାମକ ଦୁଇଟି ଗ୍ରନ୍ଥ ରଚନା କରିଛନ୍ତି । ଗୋଟିଏ ୧୮୪୯ ଖ୍ରୀ: ରେ ପ୍ରକାଶିତ 'ଚେମ୍ବାର୍ସ ଏକଯେମପ୍ଲାରୀ ବାୟୋଗ୍ରାଫୀ'ର ଅନ୍ତର୍ଗତ କୋପାର୍ନିକାସ, ଗାଲିଲିଓ, ନିଉଟନ ପ୍ରଭୃତିଙ୍କର ଜୀବନ ବୃତ୍ତାନ୍ତର ଭବାନୁବାଦ । ଏହି ପୁସ୍ତକଟି ତତ୍କାଳୀନ ବିଦ୍ୟାଳୟଗୁଡ଼ିକରେ ସମାଦୃତ ହୋଇଥିଲା । ଦ୍ୱିତୀୟଟି ତାଙ୍କର ଆତ୍ମଜୀବନୀ ଚରିତ, ଯାହା ଅସମ୍ପୂର୍ଣ୍ଣ ଏବଂ ୧୮୯୧ ଖ୍ରୀ:ରେ ପତ୍ରିକାରେ ପ୍ରକାଶିତ । ମାତ୍ର ଦୁଇଟି ପରିଛେଦରେ ପିତା, ପିତାମହଙ୍କର ପରିଚୟ ; ନିଜର ଦୁଃଖ ଯନ୍ତ୍ରଣାଭରା ଶୈଶବ କାହାଣୀ ବର୍ଣ୍ଣିତ । ବିଦ୍ୟାସାଗରଙ୍କ ମୃତ୍ୟୁ ପରେ ଏହା

---

୧୦· ଆତ୍ମଜୀବନୀ ଚରିତ — ଫକୀରମୋହନ ସେନାପତି ।

'ବିଦ୍ୟାସାଗର ଚରିତ' ନାମକ ପୁସ୍ତକାକାରରେ ପ୍ରକାଶିତ । ଫକୀରମୋହନ ପ୍ରଥମ ପୁସ୍ତକଟିକୁ ଅନୁବାଦ କରିଥିଲେ । ଭ୍ରମ ବଶତଃ ଅନେକ ସମାଲୋଚକ ଏହାକୁ ବିଦ୍ୟାସାଗରଙ୍କର ଆତ୍ମଜୀବନୀର ଅନୁବାଦ ମନେ କରନ୍ତି ।

ବିଦ୍ୟାସାଗରଙ୍କର ଅସମାପ୍ତ ଆତ୍ମଜୀବନୀ ଫକୀରମୋହନ ପଢ଼ିଥିବା ପରି ମନେ ହୁଏ । ଉଭୟ ରଚନାର ନାମ ଏକ ପ୍ରକାର । ପୁଣି ଦୁଇ ଗ୍ରନ୍ଥର ଆରମ୍ଭ ପ୍ରାୟ ସମ ପର୍ଯ୍ୟାୟର । ବିଦ୍ୟାସାଗର ବର୍ଣ୍ଣନା କରିଛନ୍ତି– "ଶକାବ୍ଦ : ୧୭୪୨, ୧୨ ଆଶ୍ୱିନ, ମଙ୍ଗଳ, ଦ୍ୱି ପ୍ରହରେର ସମୟ ବୀରସିଂହ ଗ୍ରାମେ ଆମାର ଜନ୍ମ ହୟ ।" ଫକୀରମୋହନ ନିଜର ଜନ୍ମ ସମ୍ପର୍କରେ ସୂଚନା ଦେଇ କହିଛନ୍ତି– "୧୮୪୩ ଖ୍ରୀଷ୍ଟାବ୍ଦର ଜାନୁୟାରୀ ମାସରେ ଅଥବା ସନ ୧୨୫୦ ସାଲ ମକର ସଂକ୍ରାନ୍ତି ଶୁକ୍ରବାର ଦିନ ବାଲେଶ୍ୱର ସହରର ମଲ୍ଲିକାଶପୁର ନାମକ ସ୍ଥାନରେ ମୋହର ଜନ୍ମ ।"(୧୧) । ସମାଲୋଚକ ଚିନ୍ତାମଣି ଦାଶଙ୍କ ମତରେ– "ଜୀବନ ଶିଳ୍ପୀ ଫକୀରମୋହନଙ୍କର ଜୀବନ ସଙ୍ଗୀତ ତଥା ମହିମାମଣ୍ଡିତ ଓ ସୌଷ୍ଠବ ସମ୍ପନ୍ନ ସାହିତ୍ୟ ଶିଳ୍ପର ସୂତ୍ରପାତ ହୁଏ ୧୮୬୬ ସାଲରେ । ସେତେବେଳେ ତାଙ୍କର ବୟସ ମୋଟେ ୨୩ ବର୍ଷ । ଯେ ସାହିତ୍ୟିକ ସାଧନା ଆରମ୍ଭ ହୁଏ ଗୋଟିଏ ବଙ୍ଗଳା ପୁସ୍ତକର ଓଡ଼ିଆ ଅନୁବାଦରେ । ତାହା ହେଉଛି ଈଶ୍ୱରଚନ୍ଦ୍ର ବିଦ୍ୟା-ସାଗରଙ୍କର ଜୀବନ ଚରିତ । ବୋଧ ହୁଏ ଏହି ଜୀବନ ଚରିତର ଅନୁବାଦରୁ ଫକୀରମୋହନଙ୍କ ଠାରେ ଉନ୍ମେଦିତ ହୁଏ ସମାଜ-ସଂସ୍କାର-ପ୍ରବଣତା, ମନୀଷୀ-ସୁଲଭ ମନନଶୀଳତା ଓ ଲୋକ ଚରିତ୍ର ଅନୁଶୀଳନ କରିବାର ଗଭୀର ଅନ୍ତର୍ଦୃଷ୍ଟି ଏବଂ ଅଦମ୍ୟ ଜ୍ଞାନ ତୃଷ୍ଣା । ଏହା ହୋଇଥିଲେ ମଧ୍ୟ ଏଥିରେ ସଂକୋଚ କିମ୍ବା ଗ୍ଳାନିର ବିଷୟ କିଛି ନାହିଁ । ପ୍ରତିଭାର ସଂସ୍ପର୍ଶରେ ପ୍ରତିଭା ବିକାଶମୁଖୀ ହୁଏ, ଆଦର୍ଶର ଅନୁପ୍ରେରଣାରେ ଜୀବନର ସୁଷ୍ଟିତ ଆଦର୍ଶ ଆହୁରି ଉର୍ଦ୍ଧ୍ୱମୁଖୀ ହୋଇ ଉଠେ । ଏହି ବଙ୍ଗାନୁବାଦରୁ ଆରମ୍ଭ ହୋଇ ସ୍ରୋତସ୍ୱିନୀ ନଦୀ ପରି ଅବ୍ୟାହତ ଓ ଅପ୍ରତିହତ ଗତିରେ ଚାଲିଲା ତାଙ୍କର ସାହିତ୍ୟ-ସାଧନା ।"(୧୨) । ଏଠାରେ ସମାଲୋଚକଙ୍କ ମତରେ ଉଦ୍ଦିଷ୍ଟ ଗ୍ରନ୍ଥ ବିଦ୍ୟାସାଗରଙ୍କର ଜୀବନ ଓ ବାଣୀମୂଳକ 'ଜୀବନ ଚରିତ' । ମାତ୍ର ଏ ତଥ୍ୟ ସମ୍ପୂର୍ଣ୍ଣ ଭ୍ରାନ୍ତିମୂଳକ, କାରଣ ସେ ସମୟରେ ଏହି ଗ୍ରନ୍ଥ ପ୍ରକାଶିତ ହୋଇ ନ ଥିଲା ।

---

୧୧- ଆତ୍ମଜୀବନୀ ଚରିତ – ୪ଥ –ଫକୀରମୋହନ ସେନାପତି ।

୧୨- ସାହିତ୍ୟ ସାଧକ ଫକୀରମୋହନ –

ତତ୍କାଳୀନ ଓଡ଼ିଆ ଭାଷା ଓ ସାହିତ୍ୟର ଅବସ୍ଥା ଉନ୍ନତ ନ ଥିଲା । ମାତ୍ର କେତେଜଣ ଉତ୍କଳବାସୀ ଏ ବିଷୟଟି ଉପଲବ୍ଧି କରି ମାନସିକ ଯନ୍ତ୍ରଣା ଭୋଗ କରୁଥିଲେ, କାରଣ ସେମାନେ ପ୍ରତିବେଶୀ ଉନ୍ନତ ସାହିତ୍ୟ ସମ୍ପର୍କରେ ଜ୍ଞାତ ଥିଲେ । ନିଜ ଭାଷାର ଉନ୍ନତି ବିଧାନ ନିମନ୍ତେ କେତେଜଣ ଅଗ୍ରଣୀ ମଧ୍ୟ ହୋଇ ଥିଲେ । ଫକୀରମୋହନ ତନ୍ମଧ୍ୟରୁ ଥିଲେ ଶ୍ରେଷ୍ଠତମ । ଆତ୍ମଜୀବନୀରେ ସେ ଲେଖିଛନ୍ତି- "ବର୍ତ୍ତମାନ ନିଶି-ଦିବସ ଭାବନା ଏବଂ ଏକମାତ୍ର ଲକ୍ଷ୍ୟ, ଯେ କୌଣସି ପ୍ରକାରେ ହେଉ, ମାତୃଭାଷାର ଉନ୍ନତି ସକାଶେ ପ୍ରାଣପାତ କରିବାକୁ ହେବ । ସେ ସମୟରେ ମୋର ବୟସ ୧୯-୨୦ ମଧ୍ୟରେ । ମୁଁ ପୁଣି ବିଦ୍ୟାଶୂନ୍ୟ, ଶକ୍ତିହୀନ ଓ ଦରିଦ୍ର ।"(୧୩) ତେଣୁ ଏହି ମହତ କାର୍ଯ୍ୟରେ ଅନ୍ୟର ପରାମର୍ଶ ଥିଲା ଅପରିହାର୍ଯ୍ୟ । ସେ ସାହାଯ୍ୟ ଫକୀରମୋହନ ପାଇଥିଲେ ସାର ଜନ ବୀମ୍ସଙ୍କ ନିକଟରୁ । ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି— "ବାଲେଶ୍ୱରରେ ସ୍ତ୍ରୀ-ଶିକ୍ଷାର ପ୍ରଚାର ଏବଂ ଉତ୍କଳ ଭାଷାର ରକ୍ଷା ଏବଂ ପୁଷ୍ଟି ସାଧନ ବିଷୟରେ ମୁଁ ବୀମ୍ସ ସାହେବଙ୍କଠାରୁ ଯଥେଷ୍ଟ ସାହାଯ୍ୟ ପ୍ରାପ୍ତ ହୋଇଅଛି ।"(୧୪)

ପରବର୍ତ୍ତୀ କାଳରେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସକାଶେ ଗୋଟିଏ ସମିତି ଗଠିତ ହେଲା, ମୁଦ୍ରଣ ଯନ୍ତ୍ର ସ୍ଥାପିତ ହେଲା । ଓଡ଼ିଆ ପୁସ୍ତକ ମୁଦ୍ରଣ ସହିତ 'ବୋଧଦାୟିନୀ' ନାମକ ସାହିତ୍ୟ ପତ୍ର ମଧ୍ୟ ପ୍ରକାଶିତ ହେଲା । ଶିକ୍ଷାର ପ୍ରସାର ଉଦ୍ଦେଶ୍ୟରେ ଗ୍ରାମଗୁଡ଼ିକରେ ବିଦ୍ୟାଳୟ ସ୍ଥାପନା କରାଗଲା । ଏବଂ ଏ ସମସ୍ତ ବିଷୟର ମୂଳ ଅଥଚ ନୀରବ ପୁରୋଧା ଥିଲେ ଫକୀରମୋହନ ସେନାପତି । ଏଠାରେ ସ୍ମରଣୀୟ, ମାତୃଭାଷାର ପ୍ରଚାର ଓ ପ୍ରସାର ସକାଶେ ବିଦ୍ୟାସାଗର ମଫସଲମାନଙ୍କରେ ବିଦ୍ୟାଳୟ ସ୍ଥାପନା, ବଙ୍ଗଳା ପଦ୍ୟକୁ ଗଦ୍ୟ ସାହିତ୍ୟରେ ଉନ୍ନୀତ କରିଥିଲେ । ରବୀନ୍ଦ୍ରନାଥ ତାଙ୍କୁ ବଙ୍ଗଳାର 'ଯଥାର୍ଥ ପ୍ରଥମ ଗଦ୍ୟ ଶିଳ୍ପୀ' ଭାବରେ ଅଭିହିତ କରିଛନ୍ତି ।

ଫକୀରମୋହନ ୧୮୬୭-୬୮ ସାଲରେ 'ଭାରତବର୍ଷର ଇତିହାସ' ନାମରେ ଏକ ପୁସ୍ତକ ରଚନା କଲେ ଯାହା ପାଠ୍ୟପୁସ୍ତକ ଭାବରେ ନିର୍ବାଚିତ ହୋଇଥିଲା । ବିଦ୍ୟାସାଗରଙ୍କର ବ୍ୟକ୍ତିଗତ ଜୀବନରେ ନାରୀ ଥିଲା କରୁଣାମୟୀ ।

---

୧୩- ଆତ୍ମଜୀବନୀ ଚରିତ – ଫକୀରମୋହନ ସେନାପତି – ୧୪ଶ ଅଧ୍ୟାୟ ।
୧୪- " " – " " – ୧୦ମ "

ନିଜର ଅସୁସ୍ଥ ବାଳକ ଅବସ୍ଥା ପ୍ରତି ଏକ ମାତୃସମା କରୁଣାମୟୀ ନାରୀ ସମ୍ପର୍କରେ ସେ ଲେଖିଛନ୍ତି– "ପିତୃଦେବଙ୍କର ମୁଖେ ଏଇ ହୃଦୟ-ବିଦାରକ ଉପାଖ୍ୟାନ ଶୁଣିଥିବା ଆମାର ଅନ୍ତଃ କରଣେ ଯେମନ ଦୁଃସହ ଦୁଃଖାନଲ ପ୍ରଜ୍ୱଳିତ ହଇୟାଛିଲ, ସ୍ତ୍ରୀ ଜାତିର ପ୍ରତି ତେମନଇ ପ୍ରଗାଢ଼ ଭକ୍ତି ଜନ୍ମିୟାଛିଲ।" ଅନ୍ୟତ୍ର ଅସୁସ୍ଥ ଅସହାୟ ବାଳକ ବିଦ୍ୟାସାଗରଙ୍କ ପ୍ରତି କରୁଣାମୟୀ ମାତୃସମା ଏକ ରମଣୀ ସମ୍ପର୍କରେ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି– "ଏଇ ଦୟାମୟୀର ସୌମ୍ୟ ମୂର୍ତ୍ତି ଆମାର୍ ହୃଦୟ-ମନ୍ଦିରେ ଦେବୀ ମୂର୍ତ୍ତିର ନ୍ୟାୟ ପ୍ରତିଷ୍ଠିତ ହଇୟା ବିରାଜମାନ କରିୟାଛେ । ... ... ... ଆମି ସ୍ତ୍ରୀ-ଜାତିର ପକ୍ଷପାତୀ-ବଲିୟା ଅନେକ ନିର୍ଦ୍ଦେଶ କରିୟା ଥାକେନ । ଆମାର ବୋଧ ହୟ ସେ ନିର୍ଦ୍ଦେଶ ଅସଙ୍ଗତ ନହେ ।"

ଭାରତର ଅତୀତ ଐତିହ୍ୟ ଓ ସମକାଳୀନ ପରାଧୀନତାର ଦୁର୍ଦ୍ଦଶା ଫକୀରମୋହନଙ୍କୁ ଯୁଗପତ ଆନନ୍ଦିତ ଓ ପୀଡ଼ିତ କରୁଥିଲା । ଅଧୁନା ଦେଶମୟ ଯେଉଁ ଜାତୀୟ ସଂହତିର ଆନ୍ଦୋଳନ ଚାଲିଛି ତାହା ପଞ୍ଚସ୍ତରି ବର୍ଷ ପୂର୍ବେ ଫକୀର୍-ମୋହନ ଅନୁଧାବନ କରିପାରିଥିଲେ । ଏକତାର ଅଭାବ ହିଁ ଜାତିର ଦୁର୍ଦ୍ଦଶାର କାରଣ– ଏହା ସେ ଆତ୍ମଜୀବନୀରେ ଉଲ୍ଲେଖ କରିଯାଇଛନ୍ତି । ଫକୀମୋହନଙ୍କ ପରି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମଧ୍ୟ ଅନୁରୂପ ଭାବନାର ଅଧିକାରୀଥିଲେ, ମାତ୍ର ତାଙ୍କର ଅଭିବ୍ୟକ୍ତି ପ୍ରବଳ ନ ଥିଲା ।

ପ୍ରତିବେଶୀ ଦୁଇ ଭାଷା ସାହିତ୍ୟ ଓ ସମାଜର ଦୁଇ ମନୀଷୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ଫକୀରମୋହନ ସେନାପତି ; ଉଭୟ ଚିନ୍ତା ଓ କର୍ମରେ ଯେ ଖୁବ ନିକଟତର ଥିଲେ ଏହା ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରମାଣିତ । ବଂଗ ଓ କଳିଙ୍ଗର ବିବିଧ-ବିଶେଷ ପ୍ରୟୋଜନୀୟ ମୁହୂର୍ତ୍ତରେ ସେମାନଙ୍କର ଆବିର୍ଭାବ । ଉଭୟେ ପ୍ରୟୋଜନ ଅନୁରୂପ ଦେଶ ଓ ଜାତି ପ୍ରତି ତାଙ୍କର କର୍ତ୍ତବ୍ୟ ସମ୍ପନ୍ନ କରିଛନ୍ତି । ତିରୋଧାନର ବହୁବର୍ଷ ବିତିଯାଇଥିଲେ ହେଁ ଏବେ ବି ଏହି ଦୁଇ ମନୀଷୀ ସାଧାରଣ ଜନତାର ଭକ୍ତି ଓ ସମ୍ମାନର ଯୋଗ୍ୟ ହୋଇ ରହିଛନ୍ତି । ଏହା ହିଁ ପ୍ରମାଣ କରେ ବିଦ୍ୟାସାଗର ଓ ଫକୀରମୋହନଙ୍କର ଅସାଧାରଣ ଅତୁଳନୀୟ ବ୍ୟକ୍ତିତ୍ୱ ।



# ଛାଇର ଛବି

କଇଳାଶ ପଟ୍ଟନାୟକ

ତା' ଛାଇ ଏତେ ବିଶାଳ ଯେ ସେଥିରୁ ମୁକ୍ତି ପାଇବାକୁ ତମେ ଯେତେ ହାଇଁପାଇଁ ହୁଅ, ଛାଡ଼ ପାଇବନି । କୋଉ କୋଉ ଫାଙ୍କରେ ସେ ଛାଇ ପଶି ଯାଇଥିବ ତମ ଭିତରେ ! ଦେଖ ତ କିମିତି ଟାଣୁଆ ସେ, ଦେଢ଼ଶହ ବର୍ଷ ବଢ଼ି ଗଲଣି ତା' ଜନ୍ମର, ପଞ୍ଚସ୍ତରୀ ବର୍ଷ ହୋଇଗଲାଣି ସ୍ୱର୍ଗବାସର... ... ... ତଥାପି ସେ ସମକାଳୀନ ! ତଥାପି ସେ ନିୟନ୍ତା !!!

କେତେ ତପସ୍ୟା କରିଥିଲେ ତମେ ଏମିତି ବାପଟିଏ ପାଅ । ତା' ଶିଥିଳ ହାତରେ ତମକୁ ବାଟ ଚାଲିବା ଶିଖାଇବ, ତା ପେଜୁଆ ଆଖିରେ ତମ ଅବିଗୁଣତକ ବତେଇଦବ, ତା' ପାକୁଆ ହସରେ ତମକୁ ଶାସନ କରୁଥିବ ଆଉ କରୁଥିବ ତମକୁ ପ୍ରାପ୍ତବୟସ୍କ ! ସେ ହୁଏତ ଦିନେ ମରି ହଜିଯିବ କିନ୍ତୁ ତମେ ଆଉ ଭୁଲି ପାଟିବନି । ଖାଲି ଜଣ ତମେ, ତମ ଗାଁ, ତା' ଚାରିପଟ ଗାଁ, ତା' ଚାରିପଟ ଦେଇ ଦେଶଟା ଯାକ ତାକୁ ବାହୁନି ହେବେ ।

ବାହୁନାରେ ସରେ ନାହିଁ ଶ୍ରଦ୍ଧାନିବେଦନ । ବାହୁନାରେ ଆଉଟି ହୁଏ ଅଭିମାନ । ତମ ଚାରିପଟ ଲେଖକଙ୍କ ସେ ଶ୍ରଦ୍ଧା, ଅଭିମାନ ଝରିପଡ଼େ କବିତାଟିଏ ହେଇ, ଗପଟିଏ ହେଇ । କିଏ ତା' କୃତିକୁ କରିଦିଏ ପାଲାରେ, ନାଟକରେ କି ପ୍ୟାରୋଡ଼ିରେ ରୂପାୟିତ ! ଏତେ ଏତେ ଦିନ ପରେ ବି ଲୋକେ ତା' ଲେଖାରେ ସମକାଳର ଗନ୍ଧ ବାରନ୍ତି । କହନ୍ତି ବାଃ କି ଦୂରଦୃଷ୍ଟି... ... । ଏ ଲେଖା ଆଜି ବି ଏତେ ଉପଯୋଗୀ ? ଦେଖୁନା ଲେଖି ଦେଇଥିଲା 'ପେଟେଣ୍ଟ ମେଡ଼ିସିନ' ବୋଲି ଗପଟେ ଯେ ମହାପାତ୍ର ନୀଳମଣି ସାହୁଙ୍କ ପରି ବିଦଗ୍ଧ ଶେଷକୁ କହିଲା, 'ସାରା ଓଡ଼ିଶାର ପୁରୁଷାଧମଙ୍କୁ ସତ୍ ପଥକୁ ଆଣିବାକୁ ହେଲେ ପାଞ୍ଚଜଣ ସୁଲୋଚନା-ଦେବୀ ଯଥେଷ୍ଟ ।'

ଏମିତି ବେଳାରେ ଜନ୍ମିଥିଲ, କଲମ ସାଧିଥିଲ ଯେ ଦେଖନ୍ତ ଗଳ୍ପ କହିଲ ତ ସେ, ଉପନ୍ୟାସ କହିଲ ତ ସେ; ଜୀବନୀ ହଉ କି ଆତ୍ମଜୀବନୀ 'ମୁଣ୍ଡ କିବୁଲ'ଟି ତା'ରି ।

ସେ ବେଳାରେ ତ ଜନ୍ମିଥିବେ ଅନେକ ଧନୀ-ଦରିଦ୍ର, କଳା-ଗୋରା, ଡେଙ୍ଗା-ବାଙ୍ଗର, ଓଡ଼ିଆ-ଅଣଓଡ଼ିଆ । ଯେ କିମିତି ତା' ଭିତରୁ ବାଛିହେଲ ? ଇମିତି ସାଧନା, ଆଉ କାହାର ବା ଥିଲ ? ଦାରିଦ୍ର୍ୟ ଆଉ ରୋଗକଷ୍ଟ ଭିତରେ ନିରନ୍ତର ଜଳିଗଲି ଥିଲ ସେ ସାଧନା । ଦାରିଦ୍ର୍ୟ ବୋଇଲେ ଜମିବାଡ଼ି ଯେ ନ ଥିଲ ତା ନୁହେଁ, ହେଲେ ମୂଳରୁ ତ ଠାକୁର ମା' କମ୍ପାନୀ ପିଆଦାଙ୍କୁ ଦେଖି ଡରରେ 'ଏ ଘରେ ଅଣ୍ଡିଗଣ୍ଡି କେହି ନାହିଁ– ଆମ୍ଭର ଜମିର ଦରକାର ନାହିଁ ।' ସେଇ ଯେ ଠାକୁର ମା' କଥାପଦେ କମ୍ପାନୀ ପିଆଦାଙ୍କୁ କହିଦେଲେ, ଜାୟଗିରି ଗ୍ଲଲିଗଲ । ତା ପରେ ମୂଳରୁ ଦେହରେ ରୋଗ ଯେ ରୋଗ । ଶେଷକୁ ଠାକୁର ମା' ଦେଇ-ଦେଲେ ଦାୟିତ୍ୱ ପୀର ବାବାଙ୍କୁ । 'ମହରମରେ ଆଣ୍ଡୁଯାଏଁ ଗୋଟିଏ ଜଙ୍ଘିଆ, ଦେହରେ ନାନା ରଙ୍ଗ କନାରେ ତିଆରି ଗୋଟିଏ ପେକନ, ମୁଣ୍ଡରେ ଫକରୀ ଟୋପି, କାନ୍ଧରେ ନାନା ରଙ୍ଗ ମିଶ୍ରିତ ଗୋଟାଏ ଝୁଲି ଏବଂ ହାତରେ ଜଳମଡ଼ା ଲଲରଙ୍ଗର ଗୋଟିଏ ବାଡ଼ି ; ମୁହଁରେ ଖଡ଼ି ବୋଳି, ହୋଇ ଘରେ ଘରେ ଭିକମାଗି' ବୁଲୁଥିଲେ ।

ପୁଣି ଦେଖ, ଭଗୀ ତା' ଉପରେ କେଡ଼େ ପ୍ରସନ୍ନ ଥିଲ । ଛେଉଣ୍ଡଟା ପାଇଥିଲ ଇମିତି ବଡ଼ ବାପାଟିଏ ଯେ, ପିଠିରେ କେତେ ଚିହ୍ନ ଖୋଜୁଥିଲେ । ପରେ ପରେ କେବେ ସେ କଲ ଅଝାଲ ସିଲେଇର ତତ୍ତ୍ୱାବଧାନ ତ କେବେ ନିମକ ମାହାଲ ସେରସ୍ତାରେ କର୍ମ ଶିଖିଲ । ଏଇ ଅୟମାରମ୍ଭରେ କିଏ କଳ୍ପନା କରିଥିଲ କେବେ, ତା' ମୁଣ୍ଡରେ ସାହିତ୍ୟ ସାପ ଫଣା ଟେକିବ ?

ଏମିତି ଆରମ୍ଭ ସେ ବେଳାର ଲକ୍ଷେ ପିଲଙ୍କ ଭିତରେ ହୋଇଥିବ । କାହିଁକି ତେବେ ଏମିତି ଜ୍ୟୋତିଷ ପାଞ୍ଜୋଟି ଗଳ୍ପ ? କାହିଁକି ପାଞ୍ଚ ଜଣରେ ଜଣେ ହୋଇ ବାହାରି ପଡ଼ିଲ ? ତମେ କହିବ କିଆଁ ପ୍ରତିଭବୋଲି କଥାଟାଏ ନାହିଁକି ? ପ୍ରତିଭ ନଥିଲେ ବି ଖାଲି ଖାଲି ସାପ ଫଣା ଟେକିବ ମୁଣ୍ଡରେ ? ପ୍ରତିଭ ନ ଥିଲେ ସେ ଚରେଇଥାନ୍ତା ଏତେ ଗଡ଼ଜାତୀ ମଣିଷଙ୍କୁ ? ଚେକେଇ ପାରିଥାନ୍ତା ପାନଗୁଆ ଚିଠିରେ ଧରଣୀ ଭୂଇୟାଁଙ୍କୁ ? ପ୍ରତିଭା ନଥିଲେ କି ପକେଇ ପାରିଥାନ୍ତା ପୁରୁଣା ହେଉ

ପଡ଼ଛ ଖଣ୍ଡେ ପ୍ରେସ୍ ? ପ୍ରତିଭା ନଥିଲେ କି କାଢିପାରିଥାନ୍ତା ଖଣ୍ଡେ କଟା କଟ କଟ ଖବର କାଗଜ ? ଲେଖି ଥାଆନ୍ତା ଏତେ ଏତେ ବହି ।

ପ୍ରତିଭା ଥିଲା । ଯେ କଥାକୁ ଗୋଳଯୋଗ ନାହିଁ । ହେଲେ ସେ ପ୍ରତିଭା ତ ଥିଲା କୋଉ ସାତ ତାଳ ପାଣି ତଉଦ ତାଳ ପଙ୍କ ତଳ ସୁନା ଫରୁଆ ଭିତରେ ଭଅଁରଟିଏ ହେଇ । ତାକୁ କାଢ଼ିବା ତ ଅସଲ କଥା । କସ୍ତୁରୀ ମୃଗ କି ଜାଣିଥାଏ କୋଉଠୁ ଝରିପଡ଼ୁଚି ସୁଗନ୍ଧ ? ଜାଣିପାରୁ ଥିଲେ ବୁଲୁ ଥାଆନ୍ତା ଦିଗ୍‌ବିଦିଗ୍ ଆପଣା ନାଭିମଣ୍ଡଳଟିର ପରଖ ବିନା ? ପ୍ରତିଭା ତା'ର ଥିଲା । ସେ ପ୍ରତିଭା ଥିଲା ତାର କୋଉ ଭିତରେ ପୋତି ହୋଇ । କେଡ଼େ ନିଷ୍ଠାରେ, କେଡ଼େ ଆଗ୍ରହରେ, କେତେ ଯତ୍ନରେ ଦେଖ ତ ସେ କିମିତି ଆପଣାକୁ ଯୋଗ୍ୟ କଲା । କେତେଟା ଲୋକ ଊନବିଂଶ ଶତାବ୍ଦୀର ସେ ମାଛି ଅନ୍ଧାର ବେଳଟ ରେ ଆପଣାକୁ ଯୋଗ୍ୟ କରିବାକୁ ଅଣ୍ଟା ଭିଡୁଥିଲେ ? ଆପଣାକୁ ଶରୀର, ପରିବାରର ପ୍ରତିକୂଳତା ଭିତରେ ଯୋଗ୍ୟ କରିବା କମ୍ କଥା ?

ଯୋଗ୍ୟ କରିବ ଯେ ତମର ତ ଆଦର୍ଶ କେହିଥିବ । ପିଲାଏ ନିଜ ବାପାକୁ ପ୍ରଥମେ ଆଦର୍ଶ ବୋଲି ଧରି ନିଅନ୍ତି । ବାପ ଯାହାଙ୍କର ସବୁ ଠିକ୍-ସବୁ ନିର୍ମଳ । ଏଇ ଧାରଣାଟି ଥାଏ । ତା'ପରେ ଆଦର୍ଶ ହୋଇପଡ଼ନ୍ତି ଗୁରୁ । ତାଙ୍କରି ପରି ହବାକୁ ଗୁଡ଼ାଏ ପିଲା ଭାବନ୍ତି । ଯା ଭାଗ୍ୟ ଦେଖ, ନିମଳ ମାହାଲା ଉଠି ଗଲାରୁ ବାରବାଟୀ ସ୍କୁଲରେ ପଢ଼ିଲା । ଏଠି ସେ ଭେଟିଲା ସେ ସମୟର ଜଣେ ପାଣ୍ଡିତ୍ୟଜୀବୀ ଓଡ଼ିଆଙ୍କୁ ଆପଣାର ଗୁରୁଭାବେ - ହରେକୃଷ୍ଣ ପାଣିଗ୍ରାହୀ । 'ସେ ସ୍କୁଲର ଛାତ୍ରମାନଙ୍କୁ ଏହିରୂପେ ପଢ଼ାଉଥିଲେ— କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟିଏ ବୃକ୍ଷ ଡ଼ାଳରେ ବସିଥିଲା । କୌଣସି ଦିନରେ କି କେହି ଅଛରେ, ଗୋଟିଏ କାକ କି ଏକ ଗୋଟିଏ ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଳ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟିଏ ବୃକ୍ଷ କି ଏକ ଗୋଟା ମହୀରୂହ, ଡ଼ାଳରେ କି ଶାଖାରେ, ବସିଥିଲା କି ଉପବେଶନ କରିଥିଲା ।'

ସତ କହ ତ ପାଣିଗ୍ରାହୀଙ୍କୁ ଆଦର୍ଶ କରିଥିଲେ ଯେ ହେଇପାରି ଥାନ୍ତା ଇମିତି କାଳପୁରୁଷ ? ଆଉ 'ଆଦର୍ଶ' ସବୁ ଯଦି ଏପରି ହୁଅନ୍ତି ଆପଣାକୁ ଯୋଗ୍ୟ କରିବା କେତେ କଠିନ । ଅଥଚ ଆପଣାକୁ ଯୋଗ୍ୟ କରିବାର ପ୍ରୀତି ତା' ଭିତରେ

ଉଙ୍କୁଟି ଉଠିଥିଲା । ସେ ପ୍ରୀତି ପାଳିବା ଯେତେ କଠିନ ହେଲେବି ତାକୁ ସେ ପରିତ୍ୟାଗ କରିନାହିଁ । ପଢିଚି । ଲେଖିଚି । ନିଜକୁ ନିଜେ ଆଉ ପାଞ୍ଚ ଜଣଙ୍କ ଭିତରେ ଜଣେ କରିବାକୁ ଲଗାତାର ଉଦ୍ୟମ କରିଚି । ସେଇ ଉଦ୍ୟମ ଭିତରେ, ସେଇ ଅହର୍ନିଶ ସଂଗ୍ରାମ ଭିତରେ, ପ୍ରତିକୂଳତାର ଅଭାବ ନାହିଁ । ତାରି ଭିତରେ ସେ ଆୟତ୍ତ କରିବାକୁ ଆରମ୍ଭ କଲା ଇଂରାଜୀ ।

ସେ ଥିଲା ବୁଦ୍ଧିଆ । ଦେଖି ପାରୁଥିଲା କେଉଁଟା ତାର ରାସ୍ତା । କେଡ଼େ ଦୁରୂହ ତାହା । ବୁଝିଥିଲା ଶାସକ ଇଂରେଜ । ଭାଷା ଇଂରାଜୀ । ଶାସକର ଭାଷା ନ ଜାଣିଲେ ତମେ ମୂକ ତୁଲ୍ୟ । କଣ କହିବ– କିମିତି କହିବ ? ଅତଏବ ଆବଶ୍ୟକ ଇଂରାଜୀ । ହେଲେ ଶିଖେଇବ ବା କିଏ ? ମନୋବଳରେ ସବୁ ହୁଏ । ଯେ ମନୋବଳ ନିଜ ଭିତରେ ଜମେଇ ରଖିବା ବଡ଼ କାଠିକର ପାଠ । ସେତକ ସେ ପାରିଲା । ଭରି ପାରିଲା । ବିରଜମୋହନ, ତା' ନାତି ଲେଖିଚି ଏ ବିଷୟରେ, 'ଥରେ ସେ ମୋତେ ଖଣ୍ଡେ ପୁରୁଣା ବହି (Lamb's Tales from Shakespeare) ପଢିବାକୁ ଦେଇଥିଲେ । ପଢିବା ପାଇଁ ପ୍ରଥମ ପୃଷ୍ଠା ଖୋଲି ଦେଖେଁ ଯେ ପ୍ରାୟ ପ୍ରତ୍ୟେକ ଶବ୍ଦର ଅର୍ଥ ଓଡ଼ିଆରେ ବହି କଡ଼ରେ ଲେଖା ହୋଇଅଛି । ପୃଷ୍ଠାରେ ଶୂନ୍ୟସ୍ଥାନ ପ୍ରାୟ ନାହିଁ । ବୁଢ଼ାଙ୍କୁ ପଚାରିବାରେ ସେ କହିଲେ ଯେ, ଅଭିଧାନ ଦେଖି ସବୁ ଇଂରାଜୀ ଶବ୍ଦର ଅର୍ଥ ପ୍ରଥମେ ଓଡ଼ିଆରେ ଲେଖୁଥିଲେ । କାରଣ ସେ ଆଦୌ ଇଂରାଜୀ ଜାଣି ନଥିଲେ । ତା' ପରେ ଗୋଟିଏ ଗୋଟିଏ ବାକ୍ୟର ଅର୍ଥ ବୁଝୁଥିଲେ ।' କେତେ ସାଧନା, କେତେ ଆନ୍ତରିକତା ନଥିଲେ ଏମିତି ଜଣେ ଶିଖିବ !

ଶିଖିବାର ମନ ଥିଲା ବୋଲି ତ ତାର ପ୍ରଗାଢ଼ ଅଧ୍ୟବସାୟ ଭିତରେ ସେ ଶିଖିଥିଲା ଓଡ଼ିଆ ଆଉ ଇଂରାଜୀ ଖାଲି ନୁହେଁ ; ସଂସ୍କୃତ, ବଙ୍ଗଳା, ପାରସୀ । ତା' ପରେ ପୁଣି କାର୍ଯ୍ୟୋପଲକ୍ଷେ ଚିକ୍‌କାଲୀରେ ଛ' ମାସ ରହି ହାତରେ କିଛି କାମ ନଥିବାରୁ ଶିକ୍ଷକ ରଖି ତେଲଙ୍ଗୀ ଭାଷା ଶିକ୍ଷା କଲା ଡୋମପଡ଼ାର ଦ୍ୱିତୀୟ ଥରର ଦେୱାନୀ ବେଳେ ; ତାକୁ ଯେତେବେଳେ ପଚାଶରୁ ବେଶି ବୟସ ହେଲଣି ।

ଏଇ ଶିକ୍ଷାମନସ୍କତା ପାଇଁ ତ ସେ ଶୁଖେଇ ପାରିଥିଲା ସାତ ସମୁଦ୍ରର ପାଣି । ପଥ ପାଇଥିଲା ଚଲାପଥର ପଙ୍କ ଭିତରକୁ, ବୁଦ୍ଧି ପାଇଥିଲା ପଚୁଆ ଖୋଳିବାକୁ ଆଉ ତା' ପରେ ଆପଣାଛାଏଁ ଉଙ୍କୁଟି ଉଠିଥିଲା ତା'ର ପ୍ରତିଭା ।

ପ୍ରତିଭା ନହେଲେ ଆଉ କେମିତି ଯେ ଲୋକଟେ ଅଫିସର ସିରେସ୍ତାଦାର, ଡେପୁଟି କଲେକ୍ଟର, ଦେୱାନୀ କଲେକ୍ଟର ଲେଖକ ହୋଇ ପଡ଼ିବ, ସେ ପୁଣି 'ରେବତୀ' ପରି ଗପ ଲେଖି ଦେଇ ? ରେବତୀଟିଏ ଲେଖିବା ଲାଗି ତପସ୍ୟା ଲୋଡ଼ା । ଯିଏ ସେ ତପସ୍ୟା କରିବ, ଉଅଁର ତାରି ଆୟତ୍ତକୁ ଆସିଯିବ । ନହେଲେ ଲକ୍ଷେ ପିଲାଙ୍କ ଭିତରେ ମଲ୍ଲଘର ବାବୁ ବ୍ରଜମୋହନ କାହିଁକି କେମିତି ମତ୍ତହସ୍ତୀପରି ତାର ଉତ୍ତର ବୟସରେ ଦଳମଳି ଏକାକାର କରିପକାଇଲା ପୁରୁଣା ପଦ୍ମ ବନକୁ ଆଉ ନୂଆ ନରି ତା' ଛ'ମାଣ ଆଠଗୁଣ୍ଠିଆ ଜମିରେ ଫୁଟେଇ ପକାଇଲା ପୂଜାଫୁଲ ସବୁ ଆପଣାର ଅବସର ବୟସରେ ? ସେତକ ତୃପ୍ତି ତା ଭିତରକୁ ସିନା ତାର ସାରା ଜୀବନର ସାଧନା ଦେଇଚି । ନ ହେଲେ କି ଜଣେ ବର୍ଷ ପଞ୍ଚାବନଟା ପାର କରିଥିବ କି ନାହିଁ ସାରା ଓଡ଼ିଶାର ପାଠୁଆଙ୍କ ଭିତରେ ତାକୁ ପରମ ସମ୍ଭ୍ରମରେ ଡକାଯିବ 'ବୃଦ୍ଧ ଫକୀରମୋହନ' ବୋଲି ?

ତା'ପ୍ରତି ଆମର ଦୃଷ୍ଟି ବଦଳି ଯାଇନି । ସେଇ ଆନ୍ତରିକତା ସେଇ ଶ୍ରଦ୍ଧା ଆଜିବି ରହିଚି ପୂର୍ବବତ୍ । ଲୋକେ ତାକୁ, ତାର କୃତି ସବୁକୁ ଏତେ ବେଶି ଆପଣାର କରି ନେଇଛନ୍ତି ଯେ ଅନ୍ୟ କୋଉ ଲେଖକ ସେ ପ୍ରତିଷ୍ଠା ପାଇଥିବ ବିଶ୍ୱାସ କରି ହୁଏ ନାହିଁ । ଦିନେ ଉତ୍କଳ ସାହିତ୍ୟ ପୃଷ୍ଠାରେ ଛ'ମାଣ ଆଠଗୁଣ୍ଠର ଧାରାବାହିକ ପ୍ରକାଶ କ୍ରମରେ ମଙ୍ଗରାଜଙ୍କ ମକଦ୍ଦମା ଦେଖିବାକୁ କଟକ ସଦରକୁ ଗାଁରୁ ଲୋକେ ଆସିଥିଲେ ବୋଲି ଜଣାଅଛି । ନିଜ ଜୀବନ ଚରିତରେ ବି ଏ କଥାକୁ ସେ କରିଚି ପୁନରୁଲ୍ଲେଖ । ଚମତ୍କାରିତାରେ ପାଠକଙ୍କ ଅବବୋଧକୁ ଏମିତି ସମ୍ମୋହିତ କରି ଦେଇଥିବା ଲୋକ ଆଉ କିଏ କାହିଁ ଅଛି ? ମକଦ୍ଦମା ଦେଖି ଆସିବାଟା ତମେ କହିପାର ଅଶିକ୍ଷିତ ମଫସଲି ଲୋକଙ୍କ ମୂର୍ଖତା । ତାକୁ ଆମେ ଦବାନାହିଁ ପାଠକର ସମ୍ମାନ । ହଉ ତେବେ ବସନ୍ତ ଶତପଥୀ ତ ନିଶ୍ଚୟ ଅଶିକ୍ଷିତ, ମଫସଲି ନୁହଁନ୍ତି । ଫକୀରମୋହନଙ୍କ ପାଠକ ଭାବେ ତାଙ୍କୁ ତ ଗଣିବ । ସେ' କାହିଁକି କିଏ ଜଣେ ଚମ୍ପାକୁ 'ଛାର କାମତୃଣୀଟା' କରିଦେଲା ବୋଲି ତାରି ପ୍ରତିକ୍ରିୟାରେ 'ଚମ୍ପା' ପରି ଆଲୋଚନାଟିଏ ଲେଖି ପକାଇଲେ ? ଯେ କଣ ବସନ୍ତଙ୍କ ଅବବୋଧରେ ଫକୀରମୋହନଙ୍କ ସମ୍ମୋହନର ଆଉ ଫକୀର-ମୋହନଙ୍କ ପ୍ରତି ବସନ୍ତଙ୍କ ଗଭୀର ଶ୍ରଦ୍ଧାର ସଙ୍କେତ ନୁହେଁ କି ? ଗୋଟିଏ ଲେଖକ ଜଣେ ବୁଦ୍ଧିଜୀବୀ ପାଠକକୁ କେତେବେଶି, କେତେ ଗଭୀର ଭାବେ ସମ୍ମୋହିତ

ନ କରିଥିଲେ ତାର ଚରିତ୍ରଟିଏ ପ୍ରତି କାହାର ସାଧାରଣ ମନ୍ତବ୍ୟଟିରେ ସେ ପାଠକ ହେଉଚି କ୍ଷୁର୍ଣ୍ଣ !

ଏଇ ତ ତାର ଅନୁଗ୍ରହ । ସେ ଗ୍ରହରୁ ମୁକୁଳି ପାରିଚି କିଏ କହ ? ଯେଉଁ ସମ୍ମୋହନ ପାଇଁ ତ ବେଳେବେଳେ ବିଶ୍ୱାସ କରିହଉ ନାହିଁ ଯେ ରେବତୀକୁ ଡେଇଁ ଆଉ ଗୋଟିଏ ରେବତୀ ଗଢ଼ି ଦେଇହବ । ତା' ମାନେ ନୁହଁ ଯେ ତମେ ରେବତୀକୁ ମାନି ନେଇଚ । ନିଷ୍କ୍ରିୟ ହେଇ ଯାଇଚ । ହେଇ ଯାଇଚ ପ୍ରତିକ୍ରିୟା-ହୀନ । ନା, ରେବତୀକୁ ଅତିକ୍ରମି ଆଉ ଗୋଟିଏ ରେବତୀ ଗଢ଼ିବା ପାଇଁ ସାଧନା ରହିଚି ଅବିରତ । ସେ' ତ ସୀତାନାଥ ବାବୁଙ୍କ ପ୍ରଥମ ପାଠ ହେଁ ଆଜି ପଢ଼ିବ ନାଇଁ— ବଦଳୁଚି ସବୁ କିଛି । ଲେଖା ହଉଚି ଶ୍ୟାମବନ୍ଧୁ—ରେବତୀ—ବାସୁଦେବଙ୍କୁ ନେଇ ଆଜି ବି ଗପ । ତାରି ଭିତରେ ସୀତାନାଥ ବାବୁଙ୍କ ପାଠ ବହି ପଢୁଥିବା ରେବାଟି ଆହୁରି ଆହୁରି ଉଜ୍ଜଳି ଉଠିଚି । ପ୍ରତିଷ୍ଠିତ କରାଇ ଦେଉଚି ତା' ଭିତରେ ଥିବା ସମ୍ଭାବନାକୁ । ବୁଝେଇ ଦଉଚି ସମକାଳ ପାଇଁ ତା' ଭିତରେ ଏବେ ବି ରହିଚି କେତେ ଅଫୁରନ୍ତ ପ୍ରାସଙ୍ଗିକତା !

ବେଳେବେଳେ ଏ ସମ୍ମୋହନ ଅଭୂତଭାବେ ଚେତେନା କେତେ ବଡ଼ ଲେଖକଙ୍କୁ ବଶୀଭୂତ କରି ନେଇଚି ତା' ମାୟାଜାଲରେ । ସେମାନଙ୍କ ସବୁ ସ୍ୱାତନ୍ତ୍ର୍ୟ ସତ୍ତ୍ୱେ କୋଉଠିନା କୋଉଠି ଦେଖି ହେଇଯାଏ ଏ ବଶୀକରଣକୁ । କଥାବସ୍ତୁ କହ, ଚରିତ୍ର ଚିତ୍ରଣ କହ, ଚିନ୍ତାମଣି ମହାନ୍ତିଙ୍କ ବଶୀଭୂତ ରୂପ ତ ବହୁ ଚର୍ଚ୍ଚିତ । ବର୍ଣ୍ଣନାରେ, ଉପମାରେ ସୁଦ୍ଧା ତାଙ୍କୁ ଆମେ ଭୁଲିଯାଇ ନୂଆ ପ୍ରକାରେ କହି ଦବାଟା ହେଇ ପାରୁନି ଏଯାବତ ? ସମଧର୍ମୀ ଗୋଟିଏ ଅବସ୍ଥାର ବର୍ଣ୍ଣନାରେ ଆଜି ବି ଆମର ମନ ଗହ୍ୱରରେ ଥିବା ତା' ଲେଖାର ଛାଇଟା ବଡ଼ରୁ ବଡ଼ ହେଇ ଆମର ସଚେତନତାକୁ ଗ୍ରାସି ଦିଏ । ସେଇ ମୁହୂର୍ତ୍ତରେ ବଶୀକରଣର ମନ୍ତ୍ର ଆମକୁ କରେ ପରିଚାଳିତ । ଆମେ ତା'ର ସେଇ ଅଂଶ ବିଶେଷ ଛଡ଼ା ଆଉ କିଛି ବି ସେଇ ମୁହୂର୍ତ୍ତରେ ଭବି ପାରୁନା । ପରଶମଣି ଉପନ୍ୟାସରେ ବାନାମ୍ବର ନିଜ ସ୍ତ୍ରୀ ଓ ଜନୈକ ବେଶ୍ୟା ମୋହିନୀର ତୁଳନା କରୁଚି ଏମିତି, ଗୋଟିଏ ସ୍ୱର୍ଗର ମନ୍ଦାକିନୀଧାର, ଆଉଟି ପୃଥିବୀର ପଙ୍କିଳ କର୍ମ-ନାଶା-ସ୍ରୋତ, ଗୋଟିଏ କମଳ-

ବନର ମଧୁର ସୌରଭ, ଆଉଟି ଆଗ୍ନେୟଗିରିର ଭୀଷଣ ଅନ୍ତର୍ଦାହ ।' ଏମିତି ବର୍ଣ୍ଣନା ମନେ ପଡ଼ୁଚି ତମେ ପଢ଼ିଚ ତା' ଲେଖାରେ ? କୁନ୍ତଳା କେତେ ଦୃଢ଼ ଆଉ ବିଶ୍ୱସ୍ତ ଭାବେ ଏପରି ଅନୁସରଣ କରିଗଲେ । ତମେ ଯୁକ୍ତି କରିପାର । କହିପାର, କୁନ୍ତଳା ପରଶମଣି ଲେଖିଥିଲେ ୧୯୨୪ ମସିହାରେ । ଫକୀରମୋହନ ଶତାୟୁ ହେବା ସେବକୁ ମାତ୍ର ଛ' ବର୍ଷ । ଏପରି ଉନ୍ନତ ଶିଖା ଲିଭିଗଲେ ତାର ଉଭପର୍ବ କଣ ସହଜ। ଶିତଳ ପଡ଼ିଯିବ ? ଅତଏବ କୁନ୍ତଳା ତାଙ୍କ ସମୟର ସର୍ବଶ୍ରେଷ୍ଠଙ୍କୁ ଅନୁସରଣ କରିବାଟା ଏକ ସ୍ୱାଭାବିକ କ୍ରିୟା । ଯୁଗଧର୍ମର ସହଜ ପାଳନ ମାତ୍ର । ହେଲ, ଏତେ ସହଜରେ ଆଉ ଏତେ ସ୍ୱଳ୍ପକାଳ ଭିତରେ ଏପରି ଜ୍ୟୋତିର ପ୍ରଭାବ ଏଡ଼ାଇ ପାରିବା ସହଜ ନୁହେଁ । 'ତଥାସ୍ତୁ'ରେ ହାର ପ୍ରସଙ୍ଗରେ କାହ୍ନୁଚରଣ ଯେତେବେଳେ ଲେଖନ୍ତି, 'ହାର ପାନଗଣୀକୁ ବୋଧହୁଏ ପାଠକ ମହାଶୟ ଭୁଲି ଯାଇଛନ୍ତି । × × ଘେରରେ ପଡ଼ିବା ପୂର୍ବରୁ ସାଧୁଆ ମା' ସଙ୍ଗେ ଥରେ ଝଟାପଟା ଝଗଡ଼ା ଲଗିଥିଲ । × × × ଦୁଇ ଘଣ୍ଟା ବାକ୍‌ଯୁଦ୍ଧ ପରେ ହାର ପରାଜିତ ହେଲ'— ଯେତେବେଳେ ତମର ଏ ଯୁକ୍ତିର ପ୍ରାସଙ୍ଗିକତା ରହିବ କି ? ଏଠି ତ ଜ୍ୟୋତି ଅବସାନର କାଳ ସୁଦୀର୍ଘ । ଏଠି କାହିଁକି ଅପ୍ରତ୍ୟାଶିତ କାହ୍ନୁଚରଣ ଅନୁପ୍ରବିଷ୍ଟ କଥା-କାର (intrusive narrator) ଭୂମିକା ନେଇ ପାଠକଙ୍କୁ ସମ୍ବୋଧନ କରନ୍ତି ଓ 'ଅସୁରଦାଘିଆ' ପ୍ରତିଫଳନଟିଏ ସୃଷ୍ଟି କରନ୍ତି ? ସୁରେନ୍ଦ୍ର ଯେତେବେଳେ ନୀଳଶୈଳରେ ଲଲବାଗ ପ୍ରାସାଦର ଆମ ମଜଲିସ ଖାନାର ଦମ୍ଭାନ୍ତ ବର୍ଣ୍ଣନା ଭିତରେ ଚିନ୍ତିତ ତକୀ ଖାଁକୁ ଦେଖି ଲେଖନ୍ତି, ସାମନାରେ ସୁବିସ୍ତୃତ ମଖମଲ ଗାଲିଚ୍ଚ ଉପରେ ସୀତାର, ବେହେଲ, ଡୁବୀ ତବଲ ଓ ତାନପୁର ପ୍ରଭୃତି ବାଦ୍ୟଯନ୍ତ୍ର, ହାରେମ ମଧ୍ୟରେ ବନ୍ଦୀ ମାନଙ୍କପରି ଇତସ୍ତତଃ ଅବିନ୍ୟସ୍ତ ହୋଇପଡ଼ି ଥିଲେ— ।' ସେଠି ତମେ ଭେଟ ନାହିଁ ଛ'ମାଣ ଆଠଗୁଣ୍ଠର ଜମିଦାର ସେଖ ଦିଲଦାର ମିଆଁଙ୍କ କଚେରୀ ଘରର ଏଇ ମେହଫିଲ ବର୍ଣ୍ଣନାକୁ– 'ପଠାଣ ଘର ତଲକ ଦିଆ ମାଇକିନିଆଙ୍କ ପରି ତାନପୁରଟା ଏବଂ ପଡ଼ିଆରେ ବାଳିହାଣ୍ଡି ପରି ତବଲ ଦୁଇଟା ଗଡୁଥାନ୍ତି' ? କାହିଁକି ଏତେ ସୁଖ୍ୟାତ ପ୍ରତିଭାଧରମାନେ ସୁଦ୍ଧା ଏତେ ଅନୁଗତ ହୋଇ ରହିଚନ୍ତି ତା'ର ? ସୁରେନ୍ଦ୍ରଙ୍କୁ ପଢ଼ିବା ପରେ ତାଙ୍କର ସମସ୍ତ ସ୍ୱାତନ୍ତ୍ର୍ୟ ଓ ମୌଳିକତା ସତ୍ତ୍ୱେ ରାଧାନାଥଙ୍କ ଉକ୍ତି ଅନୁରୂପ ଉକ୍ତି ତାଙ୍କ ପାଇଁ ମଧ୍ୟ ଲେଖାଯାଇ ପାରେ, 'ମୋହୋଠାରୁ ଫକୀରମୋହନଙ୍କର ଅଧିକ ଅନୁକାରୀ ଗଦ୍ୟ ଲେଖକ ଓଡ଼ିଶ୍ୟାରେ ବୋଧହୁଏ ଅଳ୍ପ ବାହାରିବେ ।'

ତା' ବଶୀକରଣର ନମୁନା ଏପରି ଅନେକ । ସେ ଜଡ଼ ଦେହରେ ନାହିଁ ସତ କିନ୍ତୁ ରହିଚି ଆମର ଏଇ ଗ୍ରହିପଟେ । ଏବେବି ସେ ତା' ଛିଗିଙ୍କ ହାତରେ ତମକୁ ବାଟ ଗ୍ରଲିବା ଶିଖାଉଚି, ତା ପେଜୁଆ ଆଖିରେ ତମ ଅବିଗୁଣତକ ବଡେଇ ଦଉଚି । ତା' ପାକୁଆ ହସରେ ତମକୁ ଶାସନ କରୁଚି । କହ, ତା' ପରେ ତମେ ତାକୁ କେମିତି ଭୁଲିବ ? କେମିତି ଅସ୍ୱୀକାର କରିବ ? ଅଛି କେହି ସେମିତି ବାପ୍‌କା ବେଟା ?



# ଫକୀରମୋହନଙ୍କ

## ଗଦ୍ୟ ସାହିତ୍ୟ : ପ୍ରବନ୍ଧ

ବାଉରୀବନ୍ଧୁ କର

ଗଦ୍ୟଶିଳ୍ପୀ ଫକୀରମୋହନଙ୍କ ସମ୍ପର୍କରେ ଆଲୋଚନା ବେଳେ ସାଧାରଣତଃ ତାଙ୍କ ପ୍ରବନ୍ଧଗୁଡ଼ିକୁ ଉପେକ୍ଷା କରାଯାଇଥାଏ । ଗଳ୍ପ ଓ ଉପନ୍ୟାସ ରଚନାରେ ସେ ଯେପରି ଅମିତ ପ୍ରତିଭାର ଅଧିକାରୀ, ସେହିପରି ପ୍ରବନ୍ଧ ରଚନାରେ ତାଙ୍କର ଅସାମାନ୍ୟ କୃତିତ୍ୱ ପରିଲକ୍ଷିତ । ସ୍ୱାଧୀନ ଚିନ୍ତାଧାରା ଓ ନୂତନ ଆଙ୍ଗିକ ଦୃଷ୍ଟିରୁ ତାଙ୍କ ପ୍ରବନ୍ଧଗୁଡ଼ିକ ଅତ୍ୟନ୍ତ ଉପାଦେୟ । ପରିମାଣ ଦୃଷ୍ଟିରୁ ବିଚାର କଲେ ତାଙ୍କର ପ୍ରବନ୍ଧ ଊଣା ନୁହେଁ । ପୁଣି, ଊନବିଂଶ ଶତକରେ ଯେଉଁ ଅଳ୍ପ କେତେ ଜଣ ପ୍ରାବନ୍ଧିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ, ସେମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ଏ ସତ୍ତ୍ୱେ ଜଣେ ବିଶିଷ୍ଟ ପ୍ରାବନ୍ଧିକ ଭାବେ ଏବେ ସୁଦ୍ଧା ତାଙ୍କ ସ୍ୱରୂପ ଆକଳନ କରାଯାଇ ନାହିଁ । ଜଣେ ପ୍ରସିଦ୍ଧ ଗଦ୍ୟଶିଳ୍ପୀ ଭାବରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରଦର୍ଶନ ସକାଶେ ତାଙ୍କ ପ୍ରବନ୍ଧଗୁଡ଼ିକର ଭୂମିକା କିଛି କମ୍ ନୁହେଁ । ଅଧିକନ୍ତୁ, ଏଥିରୁ ତାଙ୍କର ବୃହତ୍ତର ଜୀବନ ଦୃଷ୍ଟି, ଐତିହ୍ୟ-ସଚେତନତା, ସଂସ୍କାର-ଲିପ୍ସା ଓ ପାଣ୍ଡିତ୍ୟର ସ୍ପଷ୍ଟ ପରିଚୟ ମିଳେ ।

ଫକୀରମୋହନ ପ୍ରବନ୍ଧ ରଚନାରେ ହାତ ଦେବା ବେଳେ ତାଙ୍କର ଦୃଷ୍ଟି ପଞ୍ଚତାଶୀ ବଙ୍ଗଳା ସାହିତ୍ୟ ଉପରେ ପଡ଼ିଥିଲା । ଏ କଥାଟିକୁ ବହୁବାର ସେ ଲେଖା ମାଧ୍ୟମରେ ପାଠକମାନଙ୍କୁ ଜଣାଇ ଦେଇଛନ୍ତି । ତରୁଣ ବୟସରୁ ବଙ୍ଗଳା ପୁସ୍ତକ ଅଧ୍ୟୟନ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ଥିଲା । ସେ ଏ ସମ୍ପର୍କରେ ସ୍ୱ-ଆତ୍ମ-ଜୀବନ ଚରିତରେ ଲେଖିଛନ୍ତି, "ସେ ସମୟରେ ବଙ୍ଗଭାଷାରେ ପ୍ରତି ମାସରେ କ୍ଷୁଦ୍ର ବୃହତ୍ ଅନେକ ପୁସ୍ତକ ବାହାରୁ ଥାଏ । ମୁଁ କେତେକ ପୁସ୍ତକ

ନିଜ ବ୍ୟୟରେ କିଣି, କେତେକ ବାଲେଶ୍ୱର ସହରସ୍ଥ ସୁନହଟ୍ ଗ୍ରାମନିବାସୀ ବାବୁ ଦାମୋଦର ପ୍ରସାଦ ଦାସଙ୍କ ପୁସ୍ତକାଳୟରୁ ଆଣି ପଢ଼େଁ । * * * ଖଣ୍ଡିଏ ବଙ୍ଗଳା ନୂତନ ପୁସ୍ତକ ହସ୍ତଗତ ହେଲେ ମୁଁ ଅନେକ ବେଳ ପର୍ଯ୍ୟନ୍ତ ତାହା ହସ୍ତରେ ଧରି ଓଲଟପାଲଟ କରି ଚତୁର୍ଦ୍ଦିଗ ଦେଖେ ଏବଂ ମନରେ କହେ କେବେ ଉତ୍କଳ ଭାଷାରେ ଏପରି ଖଣ୍ଡିଏ ପୁସ୍ତକ ବାହାରିବ ।"(୧) ସେତେବେଳକୁ ବଙ୍ଗଳା ସାହିତ୍ୟରେ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର (୧୭୬୨–୧୮୧୯), ରାମମୋହନ ରାୟ (୧୭୭୪-୧୮୩୩), କୃଷ୍ଣମୋହନ ବନ୍ଦୋପାଧ୍ୟାୟ (୧୮୧୩-୧୮୮୫), ଅକ୍ଷୟକୁମାର ଦତ୍ତ (୧୮୨୦-୧୮୮୬), ଈଶ୍ୱରଚନ୍ଦ୍ର ବିଦ୍ୟାସାଗର (୧୮୨୦-୧୮୯୧), ରାଜେନ୍ଦ୍ରଲାଲ ମିତ୍ର (୧୮୨୨-୧୮୯୧) ପ୍ରମୁଖ ପାଠ୍ୟପୁସ୍ତକ ଓ ଗଦ୍ୟରଚନା କରି ନବଜାଗରଣ ସୃଷ୍ଟି କରିଥିଲେ । ଏମାନଙ୍କ ମଧ୍ୟରୁ ଫକୀରମୋହନଙ୍କର ତରୁଣ ବୟସରୁ ବିଦ୍ୟାସାଗରଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ତାଙ୍କରି ଆଦର୍ଶରେ ସେ ଥିଲେ ଅନେକାଂଶରେ ଅନୁପ୍ରାଣିତ । ତାଙ୍କରି ଆଦେଶରେ ସେ ପ୍ରଥମେ ବହି ଲେଖିଥିଲେ ବୋଲି ସ୍ୱୀକାର କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଏ ସମ୍ପର୍କରେ ସେ କହନ୍ତି, "ପୂଜ୍ୟପାଦ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହୋଦୟଙ୍କ ଆଦେଶରେ ତାହାଙ୍କ ରଚିତ ବଙ୍ଗଳା ଜୀବନ ଚରିତ ଖଣ୍ଡିକ ଉତ୍କଳ ଭାଷାରେ ଅନୁବାଦ କରି କଲିକତା ବାପ୍‌ଟିଷ୍ଟ ମିସନ ପ୍ରେସରୁ ଛପାଇ ଆଣିଲି ।"(୨) ସେତେବେଳେ ବିଦ୍ୟାସାଗରଙ୍କ ରଚିତ 'ଜୀବନ ଚରିତ' (୧୮୪୯) ପୁସ୍ତକଟି ବଙ୍ଗଳାରେ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ଥିଲା । ଫକୀରମୋହନ ଏହାକୁ ୧୮୬୬ ମସିହାରେ ଅନୁବାଦ କରିଥିଲେ । ଏ ପୁସ୍ତକଟିରେ ଗାଲିଲିଓ, ନିଉଟନ, ହର୍ସେଲ, କୋପର୍-ନିକସ ପ୍ରମୁଖ ଇଉରୋପୀୟ ବୈଜ୍ଞାନିକମାନଙ୍କ ଜୀବନ କାହାଣୀ ଲିପିବଦ୍ଧ । ଏହା ମଧ୍ୟ ବିଦ୍ୟାସାଗରଙ୍କ ମୌଳିକ ରଚନା ନୁହେଁ । ବଙ୍ଗାଳୀ ଛାତ୍ରମାନଙ୍କୁ ଇଉରୋପୀୟ ବୈଜ୍ଞାନିକମାନଙ୍କ ସହ ପରିଚିତ କରିବା ସକାଶେ ସେ ଏହାକୁ ଚ୍ୟାମ୍ବରସ୍ 'Biography' ପୁସ୍ତକ ଅନୁସରଣରେ ଲେଖିଥିଲେ । ମନେ ହୁଏ

(୧) ଫକୀରମୋହନ ସେନାପତିଙ୍କ ଆତ୍ମଜୀବନ ଚରିତ – ଫକୀରମୋହନ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୪୧ ।

(୨) ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀ ଚରିତ – ଫକୀରମୋହନ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୪୪ ।

ଫକୀରମୋହନ ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନ ସମ୍ପର୍କରେ ଲେଖକ ଜୀବନ ଆରମ୍ଭରୁ ଜାଣିବାକୁ ଚେଷ୍ଟା କରିଥିଲେ ଓ ଓଡ଼ିଆମାନଙ୍କୁ ଆଧୁନିକ ବିଶ୍ୱ ସହିତ ପରିଚିତ କରିବା ପାଇଁ ସଙ୍କଳ୍ପ ନେଇଥିଲେ । ସେ ସମୟରେ ଭଲ ଇଂରେଜୀ ପୁସ୍ତକ ଓଡ଼ିଶାରେ ସୁଲଭ ନଥିବାରୁ ସେ ବଙ୍ଗଳା ମାଧ୍ୟମରେ ପାଶ୍ଚାତ୍ୟ ଜଗତର ଚିନ୍ତାଧାରାକୁ ଅଧ୍ୟୟନ କରି ଓଡ଼ିଆରେ ସେ ସବୁକୁ ପ୍ରସାର କରିବାକୁ ଚାହିଁଥିଲେ । ବିଦ୍ୟାସାଗରଙ୍କୁ ସେ ଅନୁସରଣ କରି ତରୁଣ ବୟସରେ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଥିଲେ । ୧୮୬୬ ମସିହାରୁ ୧୮୭୦ ମସିହା ଏହି ପାଞ୍ଚବର୍ଷ ମଧ୍ୟରେ ସେ 'ଜୀବନ ଚରିତ', 'ଭାରତ ବର୍ଷର ଇତିହାସ' (ପ୍ରଥମ ଓ ଦ୍ୱିତୀୟ ଭାଗ), 'ଅଙ୍କମାଳା' ଭଳି ପାଠ୍ୟପୁସ୍ତକ ରଚନାରେ ସମୟ ଅତିବାହିତ କରିଥିଲେ । ଓଡ଼ିଆ ଛାତ୍ରମାନଙ୍କୁ ବୃହତ୍ତର ବିଶ୍ୱ ଆଡ଼କୁ ନେଇଯିବା ଓ ନୂତନ ଉତ୍ସାହ ପ୍ରଦାନ ଲକ୍ଷ୍ୟ ନେଇ ସେ ଏଇ ପାଠ୍ୟପୁସ୍ତକ ଗୁଡ଼ିକ ରଚନା କରିଥିଲେ । ମାତ୍ର ଅଳ୍ପ ସମୟ ମଧ୍ୟରେ ତାଙ୍କର ପାଠ୍ୟପୁସ୍ତକ ରଚନାରୁ ମୋହଭଙ୍ଗ ଘଟିଲା । କାରଣ ସେ ବୁଝିଥିଲେ ଯେ ସାହିତ୍ୟର ଅଭିବୃଦ୍ଧି ପାଇଁ କେବଳ ପାଠ୍ୟ ପୁସ୍ତକ ରଚନା ଯଥେଷ୍ଟ ନୁହେଁ ଓ ଶିକ୍ଷାୟତନ ବାହାରେ ରହିଥିବା ବିପୁଳ ପାଠକ ସମାଜ ନିକଟରେ ସାହିତ୍ୟ ପହଞ୍ଚିବା ଦରକାର । ଏ ସମ୍ପର୍କରେ ସେ କହିଛନ୍ତି, "ଯଦିଚ ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବଙ୍ଗଭାଷାର ମୂଳ ଉନ୍ନତିକାରକ, କିନ୍ତୁ ତାଙ୍କର ଭାଷା ବିଦ୍ୟାଳୟ ଓ ପୁସ୍ତକାଳୟ ମଧ୍ୟରେ ଆବଦ୍ଧ ଥିଲା । ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ, ଦୀନବନ୍ଧୁଙ୍କ ନାଟକ ଏବଂ ଜଗଦ୍ ବିଖ୍ୟାତ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସକାଶେ ବଙ୍ଗଭାଷା ହଠାତ୍ ଖ୍ୟାତିଲାଭ କରିଅଛି ।"(୩) ଏଣୁ ୧୮୭୦ ମସିହା ପରେ ସେ ଆଉ ପାଠ୍ୟପୁସ୍ତକ ରଚନାରେ ମନ ନ ଦେଇ ସାହିତ୍ୟ ରଚନା ପ୍ରତି ଧ୍ୟାନ ଦେଇଥିଲେ । ସାହିତ୍ୟ ସାଧନା ପାଇଁ ସେ ଏହି ତିନିଜଣଙ୍କ ମଧ୍ୟରୁ ଆଦର୍ଶ ରୂପେ ବଙ୍କିମଚନ୍ଦ୍ରଙ୍କୁ ବାଛି ନେଇଥିଲେ । କାରଣ ସେତେବେଳକୁ ବଙ୍କିମଚନ୍ଦ୍ରଙ୍କ 'ଆନନ୍ଦ ମଠ' ଉପନ୍ୟାସର 'ବନ୍ଦେ ମାତରଂ' ଧ୍ୱନି ଭାରତର ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହେଉଥିଲା । ତାଙ୍କ ରଚନାବଳୀ ଫକୀରମୋହନଙ୍କୁ ଗଦ୍ୟରଚନା ପାଇଁ ଯଥେଷ୍ଟ ଉତ୍ସାହ ପ୍ରଦାନ କରିଥିଲା । ବଙ୍କିମଚନ୍ଦ୍ର ମଧ୍ୟ ଉପନ୍ୟାସ ବ୍ୟତୀତ

(୩) ଫକୀରମୋହନ ସେନାପତିଙ୍କ 'ଅଭିଭାଷଣ' – ଫକୀରମୋହନ ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୭୪୨ ।

'କମଳାକାନ୍ତେର ଦପ୍ତର' (୧୮୭୬), 'ବିବିଧ ସମାଲୋଚନା' (୧୮୭୬), 'ସାମ୍ୟ' (୧୮୭୯), 'ପ୍ରବନ୍ଧ ପୁସ୍ତକ' (୧୮୭୯), 'ବିବିଧ ପ୍ରବନ୍ଧ' ପ୍ରଥମ ଭାଗ– (୧୮୮୭), ଦ୍ୱିତୀୟ ଭାଗ (୧୮୯୨) ପ୍ରଭୃତି ବହୁ ପ୍ରବନ୍ଧ ଗ୍ରନ୍ଥ ରଚନା କରିଥିଲେ । ବଙ୍ଗଳା ସାହିତ୍ୟର ବିମୁଗ୍ଧ ପାଠକ ଫକୀରମୋହନ ପ୍ରବନ୍ଧ ରଚନା କରିବା ଅବସରରେ ବଙ୍କିମଚନ୍ଦ୍ରଙ୍କ ଏହିସବୁ ପ୍ରବନ୍ଧ ଗ୍ରନ୍ଥ ଅଧ୍ୟୟନ କରିଥିବା ଅସମ୍ଭବ ନୁହେଁ । ଫକୀରମୋହନ ପ୍ରବନ୍ଧ ରଚନା କଲା ସମୟକୁ ଓଡ଼ିଆରେ ରାଧାନାଥ ରାୟଙ୍କ 'ବିବେକୀ', କପିଳେଶ୍ୱର ବିଦ୍ୟାଭୂଷଣଙ୍କ 'ରାମ ବିଳାସ' (୧୮୭୫), ମଧୁସୂଦନ ରାଓଙ୍କ 'ପ୍ରବନ୍ଧ ମାଳା' (୧୮୮୦), ବିଶ୍ୱନାଥ କରଙ୍କ 'ବିବିଧ ପ୍ରବନ୍ଧ' (୧୮୯୬) ପରି ଅଳ୍ପ କେତୋଟି ପୁସ୍ତକ ପ୍ରକାଶିତ ହୋଇଥିଲା । ଏକ ପକ୍ଷରେ ବଙ୍ଗଳାର ସମୃଦ୍ଧ ପ୍ରବନ୍ଧ ସାହିତ୍ୟକୁ ଦେଖି ଓ ଅପର ପକ୍ଷରେ ଓଡ଼ିଆରେ ଉଚ୍ଚକୋଟୀର ପ୍ରବନ୍ଧର ଅଭାବ ଅନୁଭବ କରି ଉପନ୍ୟାସ ରଚନା ପୂର୍ବରୁ ସେ ପ୍ରବନ୍ଧ ରଚନାରେ ହାତ ଦେଇଥିଲେ ।

ଭାବବସ୍ତୁ ଓ ଆଙ୍ଗିକ ଉଭୟ ଦୃଷ୍ଟିରୁ ଫକୀରମୋହନଙ୍କ ପ୍ରବନ୍ଧଗୁଡ଼ିକୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରାଯାଇ ପାରେ ।

(କ) ରମ୍ୟ ରଚନା 'ନନାଙ୍କ ପାଞ୍ଜି' :–

ପ୍ରାବନ୍ଧିକ ଫକୀରମୋହନଙ୍କ ପ୍ରତିଭାର ସାର୍ଥକ ପରିଚୟ ହେଉଛି 'ନନାଙ୍କ ପାଞ୍ଜି' । ଏହା ଓଡ଼ିଆ ସାହିତ୍ୟର ବୋଧହୁଏ ପ୍ରଥମ ରମ୍ୟ ରଚନା । ତାଙ୍କ ପୂର୍ବରୁ ଏପରି ସରସ ଗଦ୍ୟ ଓ ପଦ୍ୟରେ କେହି ରମ୍ୟ ରଚନା ଲେଖିବାର ଜଣାଯାଏ ନାହିଁ । ଅବଶ୍ୟ ବଙ୍ଗଳା ସାହିତ୍ୟରେ ଊନବିଂଶ ଶତକରେ ଏ ଧରଣର ଲେଖାର ବେଶ୍ ପ୍ରଚଳନ ଥିଲା । ବଙ୍ଗଳାରେ ଏପରି ସମଗୋତ୍ରୀୟ ରଚନା ଭାବରେ ଭବାନୀ ଚରଣ ବନ୍ଦୋପାଧ୍ୟାୟ (୧୭୮୭-୧୮୪୮) ଙ୍କ 'ନବବାବୁ ବିଳାସ' (୧୮୨୫), 'ନବ ବିବି ବିଳାସ' (୧୮୩୧), ବଙ୍କିମଚନ୍ଦ୍ର (୧୮୩୮-୧୮୯୪)ଙ୍କ 'କମଳାକାନ୍ତେର ଦପ୍ତର' (୧୮୭୬) ବହୁଳଭାବେ ବେଶ୍ ଆଦୃତ ହୋଇଥିଲା । 'କମଳାକାନ୍ତେର ଦପ୍ତର' ରମ୍ୟରଚନାରେ କମଳାକାନ୍ତ ଜଣେ ଅଫିମୀ ଲୋକ । ସମକାଳୀନ ସମାଜର ଜ୍ଞାନ-ବିଜ୍ଞାନ, ରୀତି-ନୀତି, ସାହିତ୍ୟ ପ୍ରଭୃତି ଯାବତୀୟ ବିଷୟ ତାଙ୍କୁ ଯେମିତି ଦେଖା ଯାଇଛି, ତାହା ଏଥିରେ ବର୍ଣ୍ଣିତ । କେତେବେଳେ ଗଦ୍ୟରେ, କେତେବେଳେ ପଦ୍ୟରେ ଅତି ଆବେଗପୂର୍ଣ୍ଣ ଭାବରେ ଏଥିରେ

ସେ ସମୟର ଯାବତୀୟ ପ୍ରସଙ୍ଗ ଲିଖିତ । ଫକୀରମୋହନଙ୍କ 'ନନାଙ୍କ ପାଞ୍ଜି'ରେ ନନା ହେଲେ 'ବାଇ ମହାନ୍ତି'। ସମାଜ ନୀତି, ରାଜନୀତି, ସୁନୀତି, କୁନୀତି ଇତ୍ୟାଦିରେ ସେ ଖୁବ୍ ଟାଣୁଆ ଥିଲେ । ତାଙ୍କ ପାଞ୍ଜିରୁ କିଛି ଅଂଶ ଫକୀର-ମୋହନ ଆମକୁ ଶୁଣାଇଛନ୍ତି । ବଙ୍କିମଚନ୍ଦ୍ର ଯେମିତି 'କମଲାକାନ୍ତେର ଦପ୍ତର'ରେ ଗଦ୍ୟ ଓ ପଦ୍ୟରେ ଭାବ ବ୍ୟକ୍ତ କରିଛନ୍ତି, ଠିକ୍ ସେମିତି 'ନନାଙ୍କ ପାଞ୍ଜି'କୁ ଉଭୟ ଗଦ୍ୟ ଓ ପଦ୍ୟରେ ଫକୀରମୋହନ ସରସ ଚିତ୍ତାକର୍ଷକ ଢଙ୍ଗରେ ଲେଖିଛନ୍ତି ।

'ନନାଙ୍କ ପାଞ୍ଜି'ରେ ତତ୍କାଳୀନ ଓଡ଼ିଶାର ସାଂସ୍କୃତିକ ଭାବ ପ୍ରବାହର ଚିତ୍ର ସ୍ୱଷ୍ଟ ରୂପେ ଅଙ୍କିତ । ସେ ସମୟର ପତ୍ର-ପତ୍ରିକା, ସାହିତ୍ୟକ ପାଣିପାଗ ଓ ସାମାଜିକ ଜୀବନ ସମ୍ପର୍କରେ ଏଥିରୁ ପ୍ରଚୁର ଉପାଦାନ ମିଳେ । ବିଶେଷ କରି ଊନବିଂଶ ଶତକର ଶେଷ ଦଶକର ସାହିତ୍ୟିକ ପରିବେଶକୁ ସେ ଏଥିରେ ଅତି ପ୍ରାଞ୍ଜଳ ରୂପେ ଉପସ୍ଥାପିତ କରିଛନ୍ତି । ସେତେବେଳେ ପ୍ରାଚୀନ ଓ ଆଧୁନିକ ସାହିତ୍ୟକୁ ନେଇ ଯେଉଁ ମସୀଯୁଦ୍ଧ ଚାଲିଥିଲା, 'ଉତ୍କଳପ୍ରଭା'ରେ ଲେଖକମାନଙ୍କୁ ପାରିତୋଷିକ ପ୍ରଦାନରେ ପାତର-ଅନ୍ତର ନେଇ ଯେଉଁ ପ୍ରତିକ୍ରିୟା ପ୍ରକାଶ ପାଇଥିଲା ଓ ଇଂରେଜୀ ଶିକ୍ଷିତ ଯୁବକମାନଙ୍କର ଦେଶୀ ସାହିତ୍ୟ ପ୍ରତି ଯେଉଁ ଅବଜ୍ଞା ଭାବ ରହିଥିଲା, ସେ ସବୁର ବ୍ୟଙ୍ଗ ମଧୁର ବର୍ଣ୍ଣନା ଏହାର ବିଶେଷ ଆକର୍ଷଣ । 'ଉତ୍କଳ ପ୍ରଭା' (୧୮୯୧) ଓ 'ବିଜୁଳି' (୧୬ । ୯ । ୧୮୯୩) ପତ୍ରିକାରେ ଉଞ୍ଜଙ୍କର ଦୋଷ ପ୍ରଦର୍ଶନ ପୂର୍ବକ ଲେଖାମାନ ସେ କାଳରେ ବାହାରିଥିଲା । ଯେଉଁ ଆଧୁନିକ ପ୍ରେମୀମାନେ ଉପେନ୍ଦ୍ର ସାହିତ୍ୟର ନିନ୍ଦାଗାନ କରିବାରେ ଶତମୁଖ ଥିଲେ, ସେମାନଙ୍କ ଉଦ୍ଦେଶ୍ୟରେ 'ନନାଙ୍କ ପାଞ୍ଜି'ରେ କମ୍ ବିଦ୍ରୂପ ନାହିଁ । ଏଠାରେ ଦେଖନ୍ତୁ ଆଧୁନିକ ସାହିତ୍ୟ ପ୍ରେମୀମାନଙ୍କ ଉଦ୍ଦେଶ୍ୟରେ ତାଙ୍କର ମନ୍ତବ୍ୟ, "ଉପେନ୍ଦ୍ର ଭଞ୍ଜ ଚନ୍ଦ୍ର ଉଦିଆ- ଆଲୁଅର ଭାରି ଯମକ, ଭାରି ତେଜ, ମାତ୍ର ଭାରି ଧୂଆଁ । ସେ ଧୂଆଁ ବାବୁମାନଙ୍କ ନାକରେ ପଶିବାରେ ନାକ ବୁଜି ଧରି କହିଲେ ଛିଁ-ଛିଁ-ଗଁନ୍ଧ-ଗଁନ୍ଧ ଅଁଶ୍ଳୀଳ । ବାବୁମାନେ ନିର୍ଧୂମ ଗ୍ୟାସ ଆଲୁଅ, ହରିକେନ ଲଣ୍ଠନ ଆଲୁଅ ଦେଖିଲେଣି । ଚନ୍ଦ୍ର ଉଦିଆରେ ମନ କିଁଆ ରସିବ ? କିନ୍ତୁ ବିଦେଶୀ କାବ୍ୟ, ନଭେଲ ଲଣ୍ଠନ ଭିତରେ କେରୋସିନ ଗନ୍ଧ ଅଛି, ବାବୁମାନଙ୍କର ତେତେ ଗହୀରକୁ ଲକ୍ଷ କାହିଁ ? ହେଲା ଗ୍ୟାସ ଲଣ୍ଠନ ଭଲ ନିର୍ଧୂମ ଆଲୁଅ । ମାତ୍ର ସେଥିରେ ତୁମ୍ଭର କଣ ବାବୁ ? 'ପର ଲୁଗା ପିନ୍ଧି ଯାତକୁ ଯାଉ, ଲୋକେ

ପଶ୍ଚିମିଲେ ମୁଣ୍ଡ ହଲାଇ ।' ଯାହା ଆଲୁଅରେ ନାଚି, କୁଦି ହେଉଅଛ, ସେ ଗାଇରେ ଗୁପ୍ତୁଡ଼ା ମାରି ଛଡ଼ାଇ ନେଲେ କ'ଣ କରିବ ? ଚନ୍ଦ୍ର ଉଦିଆ ନିଭିଲେ ଯେ ତୁମ୍ଭ ଦେଶ ଅନ୍ଧକାର । ଆଗେ ନିଜେ ଗ୍ୟାସ ଆଲୁଅ ବାହାର କର, ତେଣିକି ପଛେ ଚନ୍ଦ୍ର ଉଦିଆ ଫୋପାଡ଼ି ଦେବ ।"(୪) ସେ ପାଶ୍ଚାତ୍ୟ ସାହିତ୍ୟକୁ ଅନାଦର କରି ନାହାନ୍ତି । ସେ ଚାହାନ୍ତି ଶିକ୍ଷିତ ଓଡ଼ିଆମାନେ ପାଶ୍ଚାତ୍ୟ ସାହିତ୍ୟ ତୁଲ୍ୟ ଓଡ଼ିଆ ସାହିତ୍ୟ ନିଜେ ଲେଖନ୍ତୁ ଓ ପାଶ୍ଚାତ୍ୟ ସାହିତ୍ୟର ଅନ୍ଧାନୁକରଣରୁ ନିବୃତ୍ତ ରହନ୍ତୁ ।

ଫକୀରମୋହନ 'ଉତ୍କଳ ପ୍ରଭା' ପତ୍ରିକା ସମ୍ପର୍କରେ ଇଙ୍ଗିତରେ ବହୁକଥା ଏଥିରେ କହିଛନ୍ତି । ଏହି ପତ୍ରିକାର ଆବିର୍ଭାବରେ କବିମାନେ ଚଞ୍ଚଳ ହୋଇ ଉଠିଥିଲେ । କାରଣ ସେ ସମୟରେ ଏହି ପତ୍ରିକାଟି ଲେଖକମାନଙ୍କ ସକାଶେ ପାରିତୋଷିକ ଓ ପୁରସ୍କାରର ବ୍ୟବସ୍ଥା କରିଥିଲା । ତହାଁରେ ମଧ୍ୟ ଏହି ପୁରସ୍କାର ପାଇବା ଲକ୍ଷ୍ୟରେ କବିମାନେ ନାନା ନିମ୍ନରୁଚିର ଧୂର୍ତ୍ତ କାରବାରରେ ଲିପ୍ତ ରହୁଥିଲେ । ଆଶୁ ଯଶ ଆଶାୟୀ କବିମାନଙ୍କର ଏପରି ଆଚରଣକୁ ସେ ନନାଙ୍କ ପାଞ୍ଜିରେ ସାର୍ଥକ ରୂପ ଦେଇଛନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ତାଙ୍କର ସ୍ୱଭାବସୁଲଭ ବ୍ୟଙ୍ଗ-ସମ୍ଭାଷଣ ଥିଲା ଏହିପରି ; "ଓଡ଼ିଆ କବିଙ୍କ ସାଙ୍ଗରେ ଟୁଙ୍ଗିବାକୁ ହୀନମନ ଜନ୍ତୁ ଆଉ ଅଛନ୍ତି କି ନାହିଁ, କଲିକତା ଜୁଅଲଜିକାଲ ତୋଟାରେ ଥରେ ଖୋଜିବାକୁ ମୋହର ଇଚ୍ଛା ଅଛି । ଏମାନଙ୍କ ଦୁର୍ଦ୍ଦଶା ଦେଖି ହାସ୍ୟ-କରୁଣ-ବିମିଶ୍ର ଏକ ଅପୂର୍ବ ଭାବ ମନରେ ଉଦିତ ହୁଏ । କବିତ୍ୱଗୁଡ଼ାକ ମନରେ ଠେସି ଉଠିଲା, ସମ୍ଭାଳି ନପାରି ଲେଖି ପକାଇଲେ । ଛପା ଅକ୍ଷର ଦେଖି ତ ସ୍ୱର୍ଗପ୍ରାପ୍ତି । ଏଣେ ଛାପାଖାନା ପିଆଦା ଅଣ୍ଟା ଭିଡେ– କବିତା ପଢ଼ିବାକୁ କେହି ନାହିଁ, ସୁତରାଂ ମୁଁ ଜଣେ କବି ଏକଥା କେହି ଜାଣିଲେ ନାହିଁ । ଦୁର୍ଦ୍ଦଶା ଧୋଉଣୁ ଶୁଖୁଣୁ ନ ସରେ ।"(୫) ପୁରସ୍କାର ପ୍ରତ୍ୟାଶାରେ ଲେଖୁଥିବା କବିମାନଙ୍କ ଉଦ୍ଦେଶ୍ୟରେ ସେ ଏଥିରେ ଅତି ହାସ୍ୟକର କଥାମାନ ଲେଖିଛନ୍ତି ।

---

(୪) ଫକୀରମୋହନ ସେନାପତି 'ନନାଙ୍କ ପାଞ୍ଜି' – ଫକୀରମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୬୫-୬୬୬ ।

(୫) ଫକୀରମୋହନ ସେନାପତି 'ନନାଙ୍କ ପାଞ୍ଜି' – ଫକୀରମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୬୭ ।

ନନାଙ୍କ ପାଞ୍ଜିରେ ଇଂରେଜ ଜାତି ପ୍ରତି ଓ ଇଂରେଜ ଶିକ୍ଷିତ ଯୁବକ ପ୍ରତି ବିଦ୍ରୂପ ଉଣା ନୁହେଁ । ସେ ବାଇବେଲକୁ କହିଛନ୍ତି 'ସରକାରୀ ମହାପୁରାଣ' । ଉତ୍କଳର ଅଧୋଗତିର କାରଣ ଯେ ବିଦେଶୀମାନଙ୍କ ଅନ୍ଧାନୁକରଣ, ଏ କଥା ସେ ବାରମ୍ବାର ଏଥିରେ ସୂଚାଇଛନ୍ତି । ବିଦେଶୀୟ ଲୋକମାନେ ଓଡ଼ିଆମାନଙ୍କୁ ଯେପରି ହୀନ ଦୃଷ୍ଟିରେ ଦେଖନ୍ତି, ତାହାକୁ ସେ ବଙ୍କେଇ କରି ଭଲ ଭାବରେ ଆମକୁ କହିଛନ୍ତି । ସେ ସମୟରେ ଶ୍ୱେତ ଦ୍ୱୀପବାସୀଙ୍କ ଠାରେ ଉଦ୍ୟାନପାଳ ଓ ବସ୍ତ୍ରରକ୍ଷକଟିଏ ହେଲେ ଓଡ଼ିଆମାନେ ଆପଣାକୁ କୃତାର୍ଥ ମଣୁଥିଲେ । ବିଦେଶୀ ଲୋକମାନଙ୍କର ଓଡ଼ିଆମାନଙ୍କ ପ୍ରତି ଯେଉଁ ହତାଦର ଥିଲା, ସେ ସମ୍ପର୍କରେ ଫକୀରମୋହନ ଆମକୁ ଏଥିରେ ସଚେତନ କରି ଦେଇଛନ୍ତି । ନନାଙ୍କ ପାଞ୍ଜିରେ ସେ ଲେଖିଛନ୍ତି, "ବର୍ତ୍ତମାନ କେଉଁ ମହାପାପ ହେତୁରୁ ସେହି ଉତ୍କଳୀୟମାନେ ହୀନ ଦଶାକୁ ଲଭି ବିଦେଶୀୟ ଲୋକମାନଙ୍କଠାରେ ଦୃଢ଼ମସ୍ତକ ପଶୁ ବିଶେଷ ଭାବରେ ଅଭିହିତ ହେଉଅଛନ୍ତି ।"(୬) ଓଡ଼ିଆମାନେ ପରାନୁଗତ ନ ହୋଇ ନିଜେ ନିଜକୁ ଚିହ୍ନନ୍ତୁ, ଏହାହିଁ ଫକୀରମୋହନ ସବୁବେଳେ ଚାହୁଁଥିଲେ । ବିଦେଶୀ ଲୋକମାନେ ଯେପରି ଆପଣା ଗୁଣରେ ଜଗତରେ ଖ୍ୟାତି ଅର୍ଜନ କରୁଥିଲେ, ସେପରି ଗୁଣର ଅଧିକାରୀ ହେବା ପାଇଁ ତାଙ୍କର ବ୍ୟାକୁଳତା କିଛି କମ୍ ନ ଥିଲା । ଓଡ଼ିଆମାନେ ଜଗତ୍ ବିଖ୍ୟାତ ହୁଅନ୍ତୁ, ଏକ ବୃହତ୍ତର ଜଗତରେ ବିଚରଣ କରନ୍ତୁ, ଏପରି ଗଭୀର ଆତ୍ମପ୍ରତ୍ୟୟର ବାଣୀ ସେ ଆମକୁ ଏଥିରେ ଶୁଣାଇଛନ୍ତି । ସେ ଆପଣାର ଆତ୍ମ-ବିଶ୍ୱାସର ବୃହତ୍ତର ଦୃଷ୍ଟିଟିକୁ ଏଥିରେ ପ୍ରକାଶ କରି ଲେଖିଥିଲେ, "ନିଉଟନଙ୍କ ଖ୍ୟାତି ପରି ଅନ୍ୟ ଖ୍ୟାତି ଯେ ଜଗତରେ ରଟନା ହେବ ସେ ବିଷୟରେ ଆମ୍ଭର କିଛିମାତ୍ର ସନ୍ଦେହ ନାହିଁ ।"(୭) ଊନବିଂଶ ଶତକରେ ତାଙ୍କ ପରି ବୋଧହୁଏ ଆଉ କେହି ଏପରି ବିଶ୍ୱାସର ପ୍ରତିଛବି ସାହିତ୍ୟରେ ଆଙ୍କି ପାରି ନାହାନ୍ତି ।

ସାହିତ୍ୟିକ ଚମତ୍କାରିତା ଦୃଷ୍ଟିରୁ ନନାଙ୍କ ପାଞ୍ଜିର ଗୁରୁତ୍ୱକୁ ଏଡ଼ାଇ ହେବ ନାହିଁ । ଏହାର ଆକର୍ଷଣୀୟ ଶୈଳୀ ପରବର୍ତ୍ତୀ ଲେଖକମାନଙ୍କୁ ବିଶେଷ

---

(୬) ଫକୀରମୋହନ ସେନାପତି 'ନନାଙ୍କ ପାଞ୍ଜି'—ଫକୀରମୋହନ ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୨୦ ।

(୭) ଫକୀରମୋହନ ସେନାପତି 'ନନାଙ୍କ ପାଞ୍ଜି'—ଫକୀରମୋହନ ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୨୮ ।

ଆକୃଷ୍ଟ କରିଥିଲା । ଗୋପାଳ ଚନ୍ଦ୍ର ପ୍ରହରାଜ ନନାଙ୍କ ପାଞ୍ଜି ଅନୁସରଣରେ ସେଇ ଶୈଳୀରେ ଲେଖିଛନ୍ତି 'ବାଇମହାନ୍ତି ପାଞ୍ଜି' । ଏପରିକି କୃଷ୍ଣପ୍ରସାଦ ବସୁଙ୍କ 'ଆଖଡ଼ା ଘରେ ବୈଠକ' ରମ୍ୟ ରଚନା ଉପରେ ମଧ୍ୟ 'ନନାଙ୍କ ପାଞ୍ଜି'ର ପ୍ରଭାବ ଅନୁଭୂତ ହୁଏ । ଗୋବିନ୍ଦ ତ୍ରିପାଠୀଙ୍କ 'ବଟୁଆ' ମଧ୍ୟ ନନାଙ୍କ ପାଞ୍ଜିର ସମଗୋତ୍ରୀୟ ରଚନା । ଗୋଟିଏ ସାର୍ଥକ ସୃଷ୍ଟି ପରବର୍ତ୍ତୀ ସମୟରେ ଲେଖକ-ମାନଙ୍କୁ ପ୍ରେରଣା ଦେଇଥାଏ ଓ ଏହାର ଉଷ୍ମ ଆବେଦନ ଦୀର୍ଘକାଳ ଧରି ପାଠକ ମହଲରେ ରହିଥାଏ । ଫକୀରମୋହନଙ୍କ 'ନନାଙ୍କ ପାଞ୍ଜି' ପକ୍ଷରେ ଏହା ହିଁ ଏକାନ୍ତ ସତ୍ୟ । ଏହାର ଗୁରୁ-ଲଘୁ ଭାଷା, ସ୍ଥରେ ସ୍ଥରେ ଢଗଢ଼ମାଳି, ସଂସ୍କୃତ ଶ୍ଳୋକରେ ଅଦ୍ଭୁତ ବିଶ୍ଳେଷଣ ଓ ଭାଗବତ ବୃତ୍ତରେ ଲଳିକା ପାଠକଙ୍କୁ ଆମୋଦିତ କରେ । ଭାବରେ ସାବଲୀଳ ପ୍ରବାହ, ଭାଷା ପ୍ରୟୋଗରେ ନିପୁଣତା ଓ ତିର୍ଯ୍ୟକ ବାଗ୍‌ବିଳାସ 'ନନାଙ୍କ ପାଞ୍ଜି'କୁ ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ରଚନା ରୂପେ ଗୌରବ ପ୍ରଦାନ କରିଛି । ଏହାକୁ ମୁକ୍ତ ଆଙ୍ଗିକ ଧର୍ମୀ ରଚନା (open form) ଭାବେ ମଧ୍ୟ ଗ୍ରହଣ କରାଯାଇ ପାରେ । ଏଇ ନାମଟି ଅବଶ୍ୟ ବିଂଶ ଶତକରେ ପ୍ରବନ୍ଧର ବୃହତ୍ତର ଆଙ୍ଗିକକୁ ଲକ୍ଷ୍ୟ କରି ମାର୍କିନ ସମାଲୋଚକ Alfred Kazin ଦେଇଛନ୍ତି । ଫକୀରମୋହନଙ୍କ 'ନନାଙ୍କ ପାଞ୍ଜି' ପାଇଁ ଏହି ନାମଟି ଅସଙ୍ଗତ ମନେ ହୁଏ ନାହିଁ । ଏଠାରେ ପ୍ରସଙ୍ଗ କ୍ରମେ Alfred Kazinଙ୍କୁ ଉଦ୍ଧାର କରିବା ସମୀଚୀନ ହେବ ।

"Technique exists to facilitate what we have to say, but the manner of saying follows from what we have to say. As a form, the essay is more open than any other. It lends itself to the man who has something to say about a subject in his own voice, by his own power, on the strength of his attachment to it."(୮)

ଲେଖକଙ୍କ ଗଭୀର ଆତ୍ମୀୟତାର ସ୍ୱର 'ନନାଙ୍କ ପାଞ୍ଜି'ରେ ସର୍ବତ୍ର ଶୁଣାଯାଇଛି । ଏଥିରେ ଫକୀରମୋହନଙ୍କ ସ୍ୱକୀୟ ଶିଳ୍ପନୈପୁଣ୍ୟର ଯାଦୁକରୀ ସ୍ପର୍ଶ ରହିଛି ।

---

(୮) Alfred Kazin - The open form - 2nd Edition (1965) Harcourt, Brace & World INC, Preface

(ଖ) ଦାର୍ଶନିକ ପ୍ରବନ୍ଧ :—

ଭାରତୀୟ ଦର୍ଶନ ସମ୍ପର୍କରେ ଫକୀରମୋହନଙ୍କର ଗଭୀର ପ୍ରବେଶ ଥିଲା । ସେତେବେଳେ ଓଡ଼ିଆ ଭାଷାରେ ଦାର୍ଶନିକ ଗ୍ରନ୍ଥମାନଙ୍କର ଘୋର ଅଭାବ ଥିଲା । କେବଳ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଦର୍ଶନ ଚର୍ଚ୍ଚା ସୀମାବଦ୍ଧ ଥିଲା । ସେ ପ୍ରଥମେ ଆମ ସାହିତ୍ୟରେ ଦର୍ଶନ ପରି କ୍ଲିଷ୍ଟ ବିଷୟକୁ ସରଳ ଭାଷାରେ ପ୍ରବନ୍ଧ ଆକାରରେ ଲେଖିଛନ୍ତି । ସାଧାରଣ ପାଠକମାନଙ୍କୁ ଦର୍ଶନର ତତ୍ତ୍ୱ ଅବଗତ କରାଇବା ପାଇଁ ସେ ଦାର୍ଶନିକ ପ୍ରବନ୍ଧ ରଚନାରେ ହାତ ଦେଇଥିଲେ । ଊନବିଂଶ ଶତକରେ ମଧ୍ୟ ପଡ଼ୋଶୀ ବଙ୍ଗଳା ଭାଷାରେ ଦର୍ଶନ ଗ୍ରନ୍ଥମାନଙ୍କର ଢେର ପ୍ରସାର ଘଟିଥିଲା । ଦେବନାଗରୀ ଲିପିରେ କ୍ଲିଷ୍ଟ ସଂସ୍କୃତ ଭାଷାରୁ ବଙ୍ଗଳାରେ ସରଳ ଲୋକ ପ୍ରଚଳିତ ଭାଷାରେ ଦର୍ଶନ ଗ୍ରନ୍ଥ ପ୍ରକାଶ କରିବାରେ ତଦାନୀନ୍ତନ ଶିକ୍ଷିତ ବଙ୍ଗୀୟମାନଙ୍କର ଗଭୀର ନିଷ୍ଠା ଥିଲା । ଏ କ୍ଷେତ୍ରରେ ଭବାନୀଚରଣ ବନ୍ଦୋପାଧ୍ୟାୟ ଅଗ୍ରଣୀ ଥିଲେ । ସେ ଶ୍ରୀମଦ୍ ଭଗବତ, ମନୁସଂହିତା, ସ୍ମୃତି ଗ୍ରନ୍ଥ ଇତ୍ୟାଦି ଅନୁବାଦ ଓ ଅନୁଶୀଳନ କରି ସେତେବେଳେ ବଙ୍ଗଳା ସାହିତ୍ୟରେ ଖ୍ୟାତିଲାଭ କରିଥିଲେ । ପରବର୍ତ୍ତୀ ସମୟରେ କୃଷ୍ଣମୋହନ ବନ୍ଦୋପାଧ୍ୟାୟଙ୍କ 'ଷଡ଼ ଦର୍ଶନ ସମ୍ବାଦ' (୧୮୬୨), 'ବ୍ରହ୍ମସୂତ୍ର' (୧୮୭୦), ରାଜେନ୍ଦ୍ରଲାଲ ମିତ୍ରଙ୍କ ପାତଞ୍ଜଳିଙ୍କ 'ଯୋଗସୂତ୍ର' (୧୮୮୩) ଲୋକପ୍ରିୟତା ଅର୍ଜନ କରିଥିଲା । ଫକୀରମୋହନ ପଡ଼ୋଶୀ ବଙ୍ଗଳା ସାହିତ୍ୟରେ ଦର୍ଶନର ପ୍ରସାରକୁ ଲକ୍ଷ୍ୟ ରଖି ଓଡ଼ିଆ ପାଠକମାନଙ୍କୁ ଦର୍ଶନର ସ୍ୱାଦୁ ଚଖାଇବା ପାଇଁ 'ଯୋଗଶାସ୍ତ୍ର' ପରି ଦାର୍ଶନିକ ପ୍ରବନ୍ଧ ଲେଖିଥିବା ଅସମ୍ଭବ ନୁହେଁ ।

ସେ 'ଯୋଗ ଶାସ୍ତ୍ର' ପ୍ରବନ୍ଧରେ ପାତଞ୍ଜଳିଙ୍କ ଯୋଗ ଦର୍ଶନର ଆଲୋଚନା କରିଛନ୍ତି । ଯୋଗ ସମ୍ପର୍କରେ ଆଲୋଚନା କଲାବେଳେ ସେ ଏହାର ବ୍ୟବହାରିକ ଦିଗ ସମ୍ପର୍କରେ ଅତି ସଚେତନ ମନେହୁଅନ୍ତି । ସେ ଯୋଗକୁ ମୁନି-ଋଷିଙ୍କ ଏକଚାଟିଆ ବିଷୟଭାବେ ଗ୍ରହଣ କରିନାହାନ୍ତି । ସେ ଆପଣା ମାର୍ଗରେ ଜୀବନର ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ ପାଇଁ ଯୋଗ ସାଧନା ଯେ ଅପରିହାର୍ଯ୍ୟ ସେ ଏହା ଭଲ ରୂପେ ବୁଝିଥିଲେ । ସେଥିପାଇଁ ସେ ସମାଜର ବିଭିନ୍ନ କ୍ଷେତ୍ରରେ କର୍ମଦକ୍ଷ ମଣିଷମାନଙ୍କୁ 'ଯୋଗୀ' ଭାବରେ ଅଭିହିତ କରିଛନ୍ତି । ଏ ସମ୍ପର୍କରେ ତାଙ୍କର ଉକ୍ତି ଏହିପରି, "ଯୋଗୀ ନ ହେଲେ କାହାରି ଦ୍ୱାରା ପାର୍ଥିବ ସାମାନ୍ୟ

କାର୍ଯ୍ୟ ସିଦ୍ଧି ହେବା ମଧ୍ୟ ଅସମ୍ଭବ । ଏହି ଯେ ମହାରଣା କାଠରନ୍ଧା କରୁଅଛି ସେ ଯୋଗୀ । ଲୁଗା ବୁଣା ତନ୍ତି ଯୋଗୀ । ଯୋଗୀ ନ ହେଲେ ସ୍କୁଲ ପିଲ କ୍ଷେତ୍ରତତ୍ତ୍ୱ ପ୍ରତିଜ୍ଞା ସାଧି ନ ପାରେ ।"(୯) ସେ ଯୋଗକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଭୌତିକ ଯୋଗ ଓ ଆଧ୍ୟାତ୍ମ ଯୋଗ । ବିଜ୍ଞାନର ନବ ନବ ଉଦ୍ଭାବନ, ଯନ୍ତ୍ରଶିଳ୍ପର ବ୍ୟାପକ ପ୍ରସାରକୁ ଭୌତିକ ଯୋଗର ସୁଫଳ ଭାବେ ସେ ଗ୍ରହଣ କରିଛନ୍ତି । ଜଡଯୋଗୀମାନଙ୍କର ଉଦ୍ଭାବନ ଦ୍ୱାରା ଭୌତିକ ଯୋଗ ସାଧନାର ମାର୍ଗ ପରିଷ୍କାର ହୋଇଥାଏ । ସେ ବିଶ୍ୱ ପ୍ରସିଦ୍ଧ ବୈଜ୍ଞାନିକ 'ନିଉଟନ'ଙ୍କୁ ପ୍ରସିଦ୍ଧ ଜଡ଼ଯୋଗୀର ଗୌରବ ଦେଇଛନ୍ତି । ଆଧ୍ୟାତ୍ମଯୋଗ ପ୍ରସଙ୍ଗରେ ଆଲୋଚନା ବେଳେ ସେ 'ଆତ୍ମା'କୁ ଗୁରୁତ୍ୱ ଦେଇଛନ୍ତି । ଏ ଯୋଗ ସାଧନା ପାଇଁ ଚର୍ମଚକ୍ଷୁର ଆବଶ୍ୟକତା ନାହିଁ । ଆବଶ୍ୟକ ଦିବ୍ୟ ଚକ୍ଷୁ । ଏପରି ଯୋଗ ସାଧକ ଭାବରେ ସେ ଯୋଗୀବର ହିରଣ୍ୟଗର୍ଭ, ମହେଶ୍ୱର, ଦତ୍ତାତ୍ରେୟ, କପିଳ, ଯାଜ୍ଞବଲ୍କ, ପାତଞ୍ଜଳି ପ୍ରମୁଖଙ୍କ ସମ୍ପର୍କରେ ଆଲୋଚନା କରିଛନ୍ତି । ଏଥିରୁ ସେ ଆଧ୍ୟାତ୍ମଯୋଗ ସମ୍ପର୍କରେ ନିମ୍ନ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ଆତ୍ମା ସହ ଆତ୍ମାର ସଂଯୋଗ ନାମ ଯୋଗ । (୨) ବସ୍ତୁ ବିଷୟକ ଚିନ୍ତା ପ୍ରବାହ ଉତ୍ଥାନ କରିବାର ନାମ ଯୋଗ । (୩) ସମସ୍ତ ମନୋବୃତ୍ତି ନିରୋଧର ନାମ ଯୋଗ । (୪) ଚିତ୍ତକୁ ଏକାଗ୍ର କରିବାର ନାମ ଯୋଗ । ଯୋଗର ଏପରି ବ୍ୟାଖ୍ୟା କରି ସେ ତାଙ୍କ ପ୍ରବନ୍ଧରେ ପାତଞ୍ଜଳି ଯୋଗ ଦର୍ଶନର ବିଶ୍ଳେଷଣ କରିଅଛନ୍ତି ।

ଫକୀରମୋହନ 'ଯୋଗଶାସ୍ତ୍ର' ସମ୍ବନ୍ଧରେ ବିଶ୍ଳେଷଣ କଲାବେଳେ ମଧ୍ୟ ତାଙ୍କର ସ୍ୱଭାବସିଦ୍ଧ ଭାଷା ପ୍ରୟୋଗରୁ ବିରତ ହୋଇ ନାହାନ୍ତି । କିନ୍ତୁ ବୁଝି ନ ବିଗୁରି ତିଳକ ଧାରଣ ଓ ଧର୍ମାଚରଣ ପ୍ରତି ଅଧିକ ସଚେତନତାକୁ ସେ ପସନ୍ଦ କରି ନାହାନ୍ତି । ଏ ସମ୍ପର୍କରେ ସେ ଲେଖିଛନ୍ତି, "ଏହାର ଉଦ୍ଦେଶ୍ୟ କେହି ଅନୁସନ୍ଧାନ କରିବାକୁ ନାହିଁ, ଏଣେ ତିଳକ ଉନ୍ନତି ଲାଭ କରି ବାହୁ, ଛାତି, ପୃଷ୍ଠ ପର୍ଯ୍ୟନ୍ତ ଅଧିକାର କରି ବସିଲାଣି । ତିଳକ ଚିତ୍ରିତ, ଶ୍ୟାମ କଳେବର ନେକଡ଼ା ବାଘରୁ (?) ଅନୁରୂପ ଭିକମଗା ବୈଷ୍ଣବ ଦ୍ୱାରା କେବେହେଲେ ପାଠକ ମହାଶୟ ଉତ୍ତ୍ୟକ୍ତ ହୋଇଥିବେ । ଆଜିକାଲି ଶିକ୍ଷିତ ନବ୍ୟ ସମ୍ପ୍ରଦାୟଙ୍କ ମସ୍ତକରେ ତିଳକ

---

(୯) ଫକୀରମୋହନ ସେନାପତି–'ଯୋଗଶାସ୍ତ୍ର'–ଫକୀରମୋହନ ଗ୍ରନ୍ଥାବଳୀ–୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩)–ପୃ. ୬୪୯ ।

କ୍ରମଶଃ ଅଧିକାରଚ୍ୟୁତ ହେଉଅଛି । ଅସଭ୍ୟତାର ଚିହ୍ନ ବୋଲି ହେଉ ଅଥବା ପ୍ରକୃତ ମର୍ମ ଜାଣି ଶିକ୍ଷିତ ସମ୍ପ୍ରଦାୟ ତିଳକ ଲଗାଉ ନାହାନ୍ତି । ଅବଶ୍ୟ ଏହା ସହିତ କ୍ଷତି ବୃଦ୍ଧିର ସମ୍ବନ୍ଧ ନାହିଁ । ମାତ୍ର ଯୋଗର ମହାତ୍ମ୍ୟ ଯେ ଦିନକୁ ଦିନ ହିନ୍ଦୁ ସମାଜରୁ ଲୁପ୍ତ ହେଉଅଛି, ଏହା ହିଁ ପରିତାପର କଥା । ଅଥବା ଆଜିକାଲି ଇଂରେଜ ପ୍ଲାବିତ ଦେଶରେ ଇଂରେଜ ଶିକ୍ଷିତ ଲୋକମାନଙ୍କର ଏପରି ଗତିମତି ହେବା ବିଚିତ୍ର ନୁହେଁ ।"(୧୦) ସେ ପାଠକମାନଙ୍କୁ ଯୋଗର ମହିମା ସମ୍ପର୍କରେ ବୁଝାଇବା ବେଳେ ମଧ୍ୟ ସମକାଳୀନ ଇଂରେଜ ଶିକ୍ଷିତ ଯୁବକମାନଙ୍କ କ୍ରିୟା-କଳାପକୁ ବ୍ୟଙ୍ଗ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ । ଭାରତୀୟ ଦର୍ଶନର ଉଚ୍ଚ ମୂଲ୍ୟବୋଧ, ମହାନୁଭବତା ଓ ବ୍ୟାପ୍ତି ସମ୍ପର୍କରେ ଓଡ଼ିଆ ପାଠକମାନଙ୍କୁ ସରଳ ଭାଷାରେ ଧାରଣା ଦେବା ସକାଶେ ସେ 'ଯୋଗଶାସ୍ତ୍ର' ପ୍ରବନ୍ଧଟି ରଚନା କରିଥିଲେ । ଏହି ପ୍ରବନ୍ଧଟି ପଢ଼ିଲେ ମନେ ହୁଏ ସତେ ଯେପରି ଫକୀରମୋହନ ପଣ୍ଡିତମାନଙ୍କ କବଳରୁ ଦର୍ଶନର ତତ୍ତ୍ୱ ଆଲୋଚନା ବ୍ୟାପାରଟିକୁ ଘେନି ଆସି ତାହାକୁ ସର୍ବସାଧାରଣଙ୍କ ନିକଟରେ ଅନୁଶୀଳନ କରିବା ପାଇଁ ସମର୍ପି ଦେଲେ । ଏଥିରେ ତାଙ୍କର ବୌଦ୍ଧିକତା, ବିଶ୍ଳେଷଣ ନିପୁଣତା ଓ ଭାଷା ପ୍ରୟୋଗରେ ସ୍ୱାଭାବିକତା ପରିଲକ୍ଷିତ ।

(ଗ) ପୁରାଣ ଓ ଇତିହାସକୁ ଆଧାର କରି ରଚିତ ପ୍ରବନ୍ଧ :—

ଫକୀରମୋହନ ଥିଲେ ଅତିମାତ୍ରାରେ ଇତିହାସ ସଚେତନ । ଭାରତୀୟ ପରମ୍ପରା ପ୍ରତି ତାଙ୍କର ପ୍ରଚୁର ଶ୍ରଦ୍ଧା ଥିଲା । ଆମର ପୁରାଣ ଓ ଇତିହାସରେ ତାଙ୍କର ଗଭୀର ପ୍ରବେଶ ଥିଲା । ବେଦ, ଉପନିଷଦ, ଗୀତା, ପୁରାଣ ପ୍ରଭୃତି ପ୍ରାଚୀନ ଶାସ୍ତ୍ରମାନଙ୍କ ସମ୍ପର୍କରେ ତାଙ୍କର ପାଣ୍ଡିତ୍ୟ ସୁବିଦିତ । ସେ ପ୍ରାଚୀନ ଭାରତର ଧର୍ମଗ୍ରନ୍ଥଗୁଡ଼ିକୁ ରକ୍ଷଣଶୀଳତାର କ୍ଷୁଦ୍ର ପରିଧି ଭିତରେ ଦେଖି ନଥିଲେ । ସେ ଜାତି, ଧର୍ମ, ସମ୍ପ୍ରଦାୟ, ମଠ, ମନ୍ଦିରର ଊର୍ଦ୍ଧ୍ୱରେ ଏକ ବୃହତ୍ତର ମାନବିକ ମୂଲ୍ୟବୋଧ ନେଇ ଏ ସବୁକୁ ବିଚାର କରିଥିଲେ । ସେଥିପାଇଁ ତାଙ୍କର ଏକ ପ୍ରବନ୍ଧର ନାମ 'ଶୂଦ୍ର ଓ ବେଦାଧିକାର' । ଧର୍ମ ସମ୍ବନ୍ଧୀୟ ଆଲୋଚନାରେ ତାଙ୍କର ମୌଳିକ ଦୃଷ୍ଟି ଏହି ପ୍ରବନ୍ଧଟିରେ ପ୍ରକାଶିତ । ରକ୍ଷଣଶୀଳ ବ୍ରାହ୍ମଣ

(୧୦) ଫକୀରମୋହନ ସେନାପତି—'ଯୋଗଶାସ୍ତ୍ର'—ଫକୀରମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩)- ପୃ. ୬୪୯ ।

ସମାଜ ହସ୍ତରୁ ବେଦ ଅଧ୍ୟୟନକୁ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ଅଧିକାର ଭୁକ୍ତ କରିବା ସପକ୍ଷରେ ସେ ଦୃଢ଼ ଯୁକ୍ତି ଏଥିରେ କାଟିଛନ୍ତି । ଏପରି କି ଏଥିରେ ସେ ଶଙ୍କରଙ୍କ ମତକୁ ମଧ୍ୟ ଖଣ୍ଡନ କରିଛନ୍ତି । ଯେଉଁ ସମୟରେ ଓଡ଼ିଶାରେ ବ୍ରାହ୍ମଣମାନଙ୍କ ପ୍ରବଳ ଉପଦ୍ରବରେ ଅନ୍ୟ ଜାତିମାନେ ଆତଙ୍କିତ ହେଉଥିଲେ, ସେହିପରି ଏକ ସମାଜରେ ଶୂଦ୍ରର ବେଦାଧ୍ୟୟନ ଅଧିକାର ସାବ୍ୟସ୍ତ କରିବା ବାସ୍ତବରେ ଫକୀରମୋହନଙ୍କ ସଂସ୍କାର ପ୍ରୟାସ ମନୋବୃତ୍ତିର ଚୂଡ଼ାନ୍ତ ନିଦର୍ଶନ । ଅନ୍ଧବିଶ୍ୱାସର ଅର୍ଗଳିରୁ ମଣିଷକୁ ମୁକ୍ତି ଦେବା ପାଇଁ ଏଥିରେ ସେ ପାଠକମାନଙ୍କୁ ବିପ୍ଳବର ବାଣୀ ଶୁଣାଇଛନ୍ତି । ବିଂଶ ଶତକରେ ମଣିଷ ଭିତରେ ଭେଦଭାବ ନ ରହୁ, ମଣିଷ ସ୍ୱାଧୀନ ଭାବରେ ଆପଣାର କଥା ପଦକ କହି ଶିଖୁ ଓ ମୈତ୍ରୀ ବନ୍ଧନରେ ସମସ୍ତେ ବାନ୍ଧି ହୋଇ ରହନ୍ତୁ, ଏହାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । ଏଥିପାଇଁ ପ୍ରବନ୍ଧର ଶେଷରେ ତାଙ୍କର ଆହ୍ୱାନ ବେଶ୍ ମର୍ମସ୍ପର୍ଶୀ, "ହେ ବ୍ରାହ୍ମଣ ମଣ୍ଡଳି ! ଜ୍ଞାନ-ବିଜ୍ଞାନ-ସମନ୍ୱ-ସାମ୍ୟ-ମୈତ୍ରୀ-ସ୍ୱାଧୀନତା ପ୍ରବର୍ତ୍ତକ, ବିଂଶ ଶତକରେ ଆପଣମାନଙ୍କ ସ୍ୱାର୍ଥ କଳୁଷିତ ଅନୁଦାର ମତ କାହିଁ ଭାସିଗଲାଣି । ପ୍ରତ୍ୟକ୍ଷ ଦେଖୁ ନାହାନ୍ତି– ଅଗ୍ରଗଣ୍ୟ ରମେଶ ଦତ୍ତଙ୍କ ବୈଦିକ ଟୀକାର କେତେ ସହସ୍ର ବା ଲକ୍ଷ୍ୟ ବ୍ରାହ୍ମଣ ସନ୍ତାନ ଶିକ୍ଷାର୍ଥୀ ? କେତେ ଶୂଦ୍ର ପ୍ରଫେସରଙ୍କ ଛାମୁରେ ଶିକ୍ଷାର୍ଥୀ ବ୍ରାହ୍ମଣ ସନ୍ତାନଗଣ କରଯୋଡ଼ି ଦଣ୍ଡାୟମାନ । ଆଉ ରାଜପଦ ? ବାବୁ ରାଜକିଶୋର ଦାସ ହାକିମ– ଗୋବିନ୍ଦ ପାଣ୍ଡେ, ଗୋପି ତିହାଡ଼ିଏ ତାଙ୍କର ଅର୍ଦ୍ଦଳୀ ଓ ରେକ୍ଷେଲଆ ପଣ୍ଡା । ଆଉ କଣ ଲୋଡ଼ା ?"(୧୧) ଏଥିରେ ତାଙ୍କର ଯୁକ୍ତି ପ୍ରବଣତା, ଉଦାର ମାନବିକତା, ଦୂରଦୃଷ୍ଟି ଓ କାଳୋଚିତ ଆହ୍ୱାନ ରହିଛି ।

ଫକୀରମୋହନ ହିନ୍ଦୁ ଧର୍ମର ମୂଳ ଜାଣିବା ପାଇଁ 'ଗୋତ୍ର' ସମ୍ପର୍କରେ ପ୍ରବନ୍ଧ ଲେଖିଛନ୍ତି । ଏହି ପ୍ରବନ୍ଧଟିକୁ ଏବେ ପଢ଼ିଲେ ନିଶ୍ଚିତ ଭାବରେ ନୃତାତ୍ତ୍ୱିକ ପ୍ରବନ୍ଧ କହିବାକୁ ବୁଦ୍ଧିଜୀବୀମାନେ କୁଣ୍ଠାବୋଧ କରିବେ ନାହିଁ । ଅବଶ୍ୟ ସେ ନୃତତ୍ତ୍ୱ (Anthropology)ର ସଂଜ୍ଞା ନ ଜାଣିଥିଲେ ବି ଯେପରି ଭାବରେ ପ୍ରବନ୍ଧଟିର ଅବତାରଣା କରିଛନ୍ତି, ତାହାକୁ ଏବେ ଏକ ଉଚ୍ଚକୋଟୀର ନୃତାତ୍ତ୍ୱିକ ପ୍ରବନ୍ଧର ଗୌରବ ଦିଆଯାଇପାରେ । 'ଗୋତ୍ର'ର ଶବ୍ଦଗତ ବ୍ୟୁତ୍ପତ୍ତି ଠାରୁ ଆରମ୍ଭ କରି

(୧୧) ଫକୀରମୋହନ ସେନାପତି–ଶୂଦ୍ର ଓ ବେଦାଧିକାର – ଫକୀରମୋହନ ଗ୍ରନ୍ଥାବଳୀ–୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୭୩୯ ।

ଆର୍ଯ୍ୟଜାତିର ପଶୁପାଳନ ସହ ସମ୍ପର୍କ ନେଇ ଏହାର ସ୍ୱରୂପ ସେ ଏଥିରେ ନିର୍ଦ୍ଧାରଣ କରିଛନ୍ତି । ଏଥିରୁ ତାଙ୍କର ମଣିଷର ଜାତି ଓ ଗୋତ୍ର ଜାଣିବାର ବୈଜ୍ଞାନିକ ମନୋବୃତ୍ତି ସୂଚିତ ।

'ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି' ଫକୀରମୋହନଙ୍କର ଏକ ଐତିହାସିକ ପ୍ରବନ୍ଧ । ଏହି ପ୍ରବନ୍ଧରୁ ୟୁରୋପୀୟମାନଙ୍କ ଉତ୍କଳ ଆଗମନ ଓ ସେମାନଙ୍କ କ୍ରିୟା-କଳାପର ଯାବତୀୟ ବିବରଣୀ ମିଳେ । ଓଲନ୍ଦାଜ ଜାତିର ସହାୟତାରେ ଇଂରେଜମାନେ ଏଠାରେ ବାଣିଜ୍ୟ କାରବାରରେ ସୁଯୋଗ ହାସଲ କରିଥିଲେ । ସେମାନେ ଇଂରେଜମାନଙ୍କୁ ସେମାନଙ୍କ ବାଣିଜ୍ୟ କୋଠି ବଦଳ ଦେଇଥିଲେ । ବାଣିଜ୍ୟ କାରବାର କରି ଚତୁରତାର ସହିତ ଇଂରେଜ ଜାତି ଏଠାରେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଏଭଳି ତଥ୍ୟ ସମ୍ବଳିତ ଇତିହାସକୁ ସେ ଏହି ପ୍ରବନ୍ଧରେ ଚିତ୍ତାକର୍ଷକ ରୂପେ ଉପସ୍ଥାପିତ କରିଛନ୍ତି ।

ଫକୀରମୋହନଙ୍କ ପୁରାଣ ଓ ଇତିହାସ ଆଧାରିତ ପ୍ରବନ୍ଧଗୁଡ଼ିକରେ ଏ ଦେଶର ପରମ୍ପରା, ସଂସ୍କୃତି ଓ ଜାତୀୟ ଜୀବନକୁ ଜାଣିବାର ଗଭୀର ଅଭୀପ୍ସା ପ୍ରକଟିତ । ଆମର ପ୍ରାଚୀନ ପରମ୍ପରା ଓ ଇତିହାସରୁ ଶିକ୍ଷାଲାଭ କରି ଜାତି ଭବିଷ୍ୟତରେ କର୍ମମୁଖର, ଏହା ହିଁ ସେ ଚାହୁଁଥିଲେ ।

(ଘ) ସାହିତ୍ୟ ସଭାର ଅଭିଭାଷଣ ଓ ସାହିତ୍ୟ ବିଷୟକ ପ୍ରବନ୍ଧ :—

ଫକୀରମୋହନଙ୍କ ଦ୍ୱାରା ପ୍ରଦତ୍ତ ସାହିତ୍ୟ ସଭାର ଅଭିଭାଷଣଗୁଡ଼ିକୁ ସାହିତ୍ୟିକ ପ୍ରବନ୍ଧ ବା ସମାଲୋଚନା ଭାବରେ ଗ୍ରହଣ କରଯାଇପାରେ । କଟକ ଆଲୋଚନା ସଭାର ୪ର୍ଥ ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଅଭିଭାଷଣ ଓ ତା ୬ । ୯ । ୧୯୧୪ ରିଖରେ ଉତ୍କଳ ସାହିତ୍ୟ ସମାଜର ଅଭିଭାଷଣ ଏ ପ୍ରସଙ୍ଗରେ ଉଲ୍ଲେଖନୀୟ । ମାତୃଭାଷାର ଉନ୍ନତି ପାଇଁ ତାଙ୍କର ବ୍ୟାକୁଳତା ଏହି ଅଭିଭାଷଣ ଦ୍ୱୟରେ ପ୍ରକାଶିତ । ସେ ସାହିତ୍ୟକୁ ଜାତୀୟ ଜୀବନର ବିଚରଣ ଭୂମି ଭାବରେ ଏଥିରେ ଗ୍ରହଣ କରିଛନ୍ତି । ସେ ଏହି ପ୍ରବନ୍ଧ ଦ୍ୱୟରେ ଓଡ଼ିଆ ସାହିତ୍ୟର ପ୍ରସାର ପାଇଁ ଆମକୁ ଢେର ଉଦ୍‌ବୋଧନ ଦେଇଛନ୍ତି । ଏପରିକି ବଙ୍ଗଳା ସାହିତ୍ୟର ଆଧୁନିକୀକରଣରେ ଓଡ଼ିଆମାନଙ୍କ ଭୂମିକାକୁ ସେ ଆମକୁ ସ୍ମରଣ କରାଇଛନ୍ତି ।

ସାହିତ୍ୟ ସମ୍ପର୍କରେ ଫକୀରମୋହନ ତାଙ୍କ ବିଚାର ଓ ଦୃଷ୍ଟିଭଙ୍ଗୀରେ ଆଧୁନିକ ଥିଲେ । ସେ ବହୁ କ୍ଷେତ୍ରରେ ପରମ୍ପରାର ପୋଷକ, ମାତ୍ର ସାହିତ୍ୟ

ଆଲୋଚନା କ୍ଷେତ୍ରରେ ସେ ଥିଲେ ଯୁଗସଚେତନ । ଯୁଗ ଯାହା ଚାହୁଁଛି, ଯୁଗ ଅନୁଯାୟୀ ଯେପରି ଲେଖିଲେ ସର୍ବତ୍ର ଆମ ସାହିତ୍ୟର ଆଦର ବଢ଼ିବ, ସେପରି ଲେଖିବାକୁ ଫକୀରମୋହନ ପସନ୍ଦ କରୁଥିଲେ । ସେ ତାଙ୍କ ଅଭିଭାଷଣ ଦୁଇଟିରେ ସ୍ୱ-ସାହିତ୍ୟିକ ଅଭିମୁଖ୍ୟ ସମ୍ପର୍କରେ ପାଠକମାନଙ୍କୁ ଧାରଣା ଦେଇଛନ୍ତି । ସେ ଆପଣାର ଔପନ୍ୟାସିକ ଜୀବନର କଥା କହିବାକୁ ଯାଇ ଲେଖିଛନ୍ତି, "କେହିବା ମନରେ କରିବେ ମୁଁ ଦୁଇଖଣ୍ଡ ସାମାନ୍ୟ ଉପନ୍ୟାସ ଲେଖିଅଛି ବୋଲି ଉପନ୍ୟାସର ଏତେ ପ୍ରଶଂସା କଲି ; କିନ୍ତୁ ମୋ ନିଜ ପକ୍ଷର କୈଫିୟତ ଏହି ଯେ, ଗୋଟିଏ ନିବିଡ଼ ଜଙ୍ଗଲରେ ବାଟ ନଥିଲେ କୁଲି ଶ୍ରେଣୀର ଲୋକ ଜଙ୍ଗଲ କାଟି ବାଟର ଛାଞ୍ଚ କରିଦେଲା ଉତ୍ତାରେ ଜ୍ଞାନବନ୍ତ ଇଞ୍ଜିନିୟରମାନେ ଆସି ସୁନ୍ଦର ସଡ଼କ ପ୍ରସ୍ତୁତ କରିଥାନ୍ତି । ଅତଃପର ଶିକ୍ଷିତ ଲୋକମାନେ ଭଲ ଉପନ୍ୟାସ ଲେଖିବେ, ସେଥିପାଇଁ ମୁଁ ଗୋଟିଏ ଛାଞ୍ଚ କରିଯାଉଛି ।"(୧୨) ଏଥିରୁ ତାଙ୍କର ସାହିତ୍ୟିକ ଉଦାରତା ଓ ଉତ୍ତର ସାଧକମାନଙ୍କ ପ୍ରତି ଗଭୀର ଆସ୍ଥାର ପରିଚୟ ମିଳେ ।

ଫକୀରମୋହନ ସାହିତ୍ୟକୁ ଜାତୀୟ ଜୀବନର ସମ୍ପତ୍ତି ରୂପେ ବିବେଚନା କରୁଥିଲେ । ଯେପରି ପ୍ରତ୍ୟେକ ପରିବାର ସେମାନଙ୍କ ଦାୟାଦମାନଙ୍କ ସକାଶେ ଅର୍ଥ ସଞ୍ଚୟ କରନ୍ତି, ସେହିପରି ଶିକ୍ଷିତ ବ୍ୟକ୍ତିମାନେ ଭାବୀ ବଂଶଧରମାନଙ୍କ ପାଇଁ କିଛି ସାହିତ୍ୟ ସୃଷ୍ଟି କରି ଛାଡ଼ିଯିବା ଉଚିତ । ଏହାଦ୍ୱାରା ଦେଶ-ବିଦେଶରେ ସଭ୍ୟ ସମାଜରେ ଜାତିର ମର୍ଯ୍ୟାଦା ରକ୍ଷା କରାଯାଇ ପାରିବ । ଏ ପ୍ରସଙ୍ଗରେ ସେ ଆମର ପଡ଼ୋଶୀ ବଙ୍ଗଳା ସାହିତ୍ୟର ଦୃଷ୍ଟାନ୍ତ ଦେଇଛନ୍ତି । ଜାତିର ଉନ୍ନତି ପାଇଁ ଜାତୀୟ ସାହିତ୍ୟର ଉନ୍ନତି ଆବଶ୍ୟକ । ଏ ସମ୍ପର୍କରେ ତାଙ୍କର ନିର୍ଦ୍ଦିଷ୍ଟ ବକ୍ତବ୍ୟ ଥିଲା । ଜାତୀୟ ସାହିତ୍ୟ ନିଜେ ପଢିବା, ଅନ୍ୟକୁ ପଢ଼ାଇବା, ସାହିତ୍ୟ ନିଜେ ଲେଖିବା, ଅନ୍ୟକୁ ଲେଖାଇବା ଉପରେ ସେ ଅଶେଷ ଗୁରୁତ୍ୱ ଦେଇଛନ୍ତି । ଶିକ୍ଷିତ ଓଡ଼ିଆମାନଙ୍କର ମାତୃଭାଷା ବିମୁଖ ମନୋଭାବ ତାଙ୍କୁ ବ୍ୟଥିତ କରିଥିଲା । ସେ ଏ ସମ୍ପର୍କରେ ଅତି ଦୁଃଖର ସହିତ କହିଥିଲେ ଯେ "ମୋତେ ସଙ୍କୁଚିତ ଓ ଦୁଃଖିତ ଭାବରେ ବୋଲିବାକୁ ହେଉଛି, ଆମ୍ଭମାନଙ୍କ ମଧ୍ୟରେ ଉଚ୍ଚ ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ମାତୃଭାଷାର ଗ୍ରନ୍ଥ କିଣି ପଢିବାର ରୁଚି ଜାତ

(୧୨) ଫକୀରମୋହନ ସେନାପତି—ଅଭିଭାଷଣ — ଫକୀରମୋହନ ଗ୍ରନ୍ଥାବଳୀ- ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୭୪୩ ।

ହୋଇନାହିଁ, ଅଥବା ବଡ଼ବଡ଼ ଆକାର ସୁନେଲି ବନ୍ଧାଇ ନାନା ଭାବପୂର୍ଣ୍ଣ ପୁସ୍ତକମାନ ସଚରାଚର ସେମାନଙ୍କ ହସ୍ତରେ ଥିବାରୁ ସାମାନ୍ୟ ବନ୍ଧାଇ ଚଟି ବହି ପ୍ରତି ଅବଜ୍ଞା ଜାତ ହେବା ସ୍ୱାଭାବିକ । ହେଲେ ସେମାନଙ୍କର ବିଗ୍ଭର କରିବାର ଉଚିତ, ଅନ୍ୟର ସୌଭାଗ୍ୟବତୀ ମାତାକୁ ଭକ୍ତି ଓ ପୂଜା କରିବା ସମୟରେ ହେ ଦରିଦ୍ର ସନ୍ତାନ, ସେହି ସମୟରେ ମାତାର ଅବସ୍ଥା ଉନ୍ନତି ସକାଶେ ଯତ୍ନ କରିବାର ଅଥବା ଅବଜ୍ଞା ଭାବରେ ତାହାକୁ ତଡ଼ି ଦେବାର ଉଚିତ– ଏହା ଆପଣମାନଙ୍କର ବିଗ୍ଭର୍ଯ୍ୟ ବିଷୟ ଅଟେ ।"(୧୩) ସେ ଜନନୀ ଭାବରେ ମାତୃଭାଷାକୁ ଗ୍ରହଣ କରି ନେଇଥିଲେ । ଜନନୀ ମାତୃଭାଷାର ସେବା ସତ୍କାରରେ ଜୀବନ ନିୟୋଜିତ କରିବାକୁ ସେ ଅତ୍ୟନ୍ତ ଆବେଗପୂର୍ଣ୍ଣ ଭାଷାରେ ତାଙ୍କ ଅଭିଭାଷଣ ଦ୍ୱୟରେ ଉଦ୍‌ବୋଧନ ଦେଇଛନ୍ତି ।

ଫକୀରମୋହନଙ୍କ ଅନ୍ୟାନ୍ୟ ସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧମାନଙ୍କ ମଧ୍ୟରେ 'ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ', 'କବି ଗୋପାଳକୃଷ୍ଣ ପଟ୍ଟନାୟକ', 'କବି ମାଇକେଲ ମଧୁସୂଦନ ଦତ୍ତ ଓ ମେଘନାଦ ବଧ କାବ୍ୟ', 'ମେଘଦୂତର ବଙ୍ଗାନୁବାଦ', 'ଉତ୍କଳ ସାହିତ୍ୟର ପ୍ରାଣପ୍ରତିଷ୍ଠା', 'ଉତ୍କଳ ଭାଷାର ଭୂତ ଭବିଷ୍ୟତ' ପ୍ରଧାନ । ଏହି ଆଲୋଚନାଗୁଡ଼ିକରେ ତାଙ୍କର ପାଣ୍ଡିତ୍ୟ ସହିତ ସମାଲୋଚନା ପ୍ରବଣତା ଉଭୟର ସମନ୍ୱୟ ଘଟିଛି । ତୁଳନାତ୍ମକ ଭାବରେ ସାହିତ୍ୟ ଅନୁଶୀଳନ, ମାତୃଭାଷା ପ୍ରତି ବଳିଷ୍ଠ ଅନୁରାଗ ଓ ତଥ୍ୟାନୁସନ୍ଧାନରେ ଅସୀମ ଆଗ୍ରହ ତାଙ୍କ ଆଲୋଚନାର ସ୍ୱାତନ୍ତ୍ର୍ୟ ବହନ କରିଛି । ଫକୀରମୋହନ ଯେଉଁ ସମୟରେ ଏହି ସମାଲୋଚନାଗୁଡ଼ିକ ଲେଖିଥିଲେ, ସେତେବେଳେ ଓଡ଼ିଆ ସମାଲୋଚନାର କୌଣସି ଧାରାବନ୍ଧା ଉପପାଦ୍ୟ (Theory) ତାଙ୍କ ଆଗରେ ନଥିଲା । ସେ ସମୟରେ 'ଉତ୍କଳ ଦୀପିକା', 'ସମ୍ବଲପୁର ହିତୈଷିଣୀ', 'ଓଡ଼ିଆ ଓ ନବସମ୍ବାଦ', 'ଉତ୍କଳ ସାହିତ୍ୟ' ପ୍ରଭୃତିରେ ବିଶେଷକରି ସମ୍ବାଦଧର୍ମୀ ସାହିତ୍ୟ ଆଲୋଚନାମାନ ବାହାରୁଥିଲା । ସେତେବେଳେ ଉଚ୍ଚକୋଟୀର ସମାଲୋଚନା ଥିଲା ନିତାନ୍ତ ନଗଣ୍ୟ । ଫକୀରମୋହନ ସେତେବେଳେ ଏହି ଚିରାଚରିତ ସମ୍ବାଦଧର୍ମୀ ଧାରାରେ ନଲେଖି ନିଜ ଆଦର୍ଶରେ ସମାଲୋଚନାକୁ କରିଥିଲେ ମନନଧର୍ମୀ । ଏବେ ପାଶ୍ଚାତ୍ୟ

---

(୧୩) ଫକୀରମୋହନ ସେନାପତି – ଅଭିଭାଷଣ–ଫକୀରମୋହନ ଗ୍ରନ୍ଥାବଳୀ, ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୭୨୭ ।

ସମାଲୋଚକମାନେ ସମାଲୋଚନାରେ ମନନଧର୍ମୀତାକୁ ଗୁରୁତ୍ୱ ଦେଉଛନ୍ତି । ଏ ସମ୍ପର୍କରେ F. W. Batesonଙ୍କ ଉକ୍ତି ସ୍ମରଣୀୟ–

"Without the basis in scholarship the young critic, however talented he may be, is unlikely to become more than a clever journalist or reviewder, at best a writer who is read once and then consigned to the waste paper basket."(୧୪)

ଫକୀରମୋହନ ଯେ ଆଲୋଚନା ଲେଖିବା ବେଳେ ଆପଣାର ଦୂରଦୃଷ୍ଟିର ପରିଚୟ ଦେଇଥିଲେ, ଏହାକୁ ଅସ୍ୱୀକାର କରିହେବ ନାହିଁ ।

ଫକୀରମୋହନଙ୍କ ପ୍ରବନ୍ଧର ରଚନା ଶୈଳୀର ଏକ ମହତ୍ତ୍ୱ ଥିଲା । ତାଙ୍କର ଯୁକ୍ତି ପ୍ରୟୋଗ ନୈପୁଣ୍ୟ, ସୌନ୍ଦର୍ଯ୍ୟ ଦୃଷ୍ଟି, ବିଷୟ ବିନ୍ୟାସ କୌଶଳ ଓ ପରିଣତି ତାଙ୍କ ପ୍ରବନ୍ଧଗୁଡ଼ିକର ସ୍ୱାତନ୍ତ୍ର୍ୟ ଚିହ୍ନଟରେ ସହାୟକ । ବେଳେ ବେଳେ ତାଙ୍କ ପ୍ରବନ୍ଧରେ ଉପମା ପ୍ରୟୋଗ କରିବାରେ ସେ ଅସାଧାରଣ ଦକ୍ଷତା ଦେଖାଇ-ଛନ୍ତି । ତାଙ୍କର ଏ ଧରଣର ଗଦ୍ୟର ନମୁନା ଦେଖନ୍ତୁ, "ଅଷାଢ଼ିଆ ପାଣି ପାଇ ବ୍ରାହ୍ମଣୀ ବେଙ୍ଗପରି ଓଡ଼ିଶାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ କବିମାନେ ରଡ଼ି ଛାଡ଼ିଲେ । ସବୁ କବିର ଠିକଣା ନପାଇ ମୁଁ ସେମାନଙ୍କୁ ତିନି କିସମରେ ଭଆରିଦା କରି ପକାଇଲି । ଅର୍ଥାତ୍ ବନ୍ଧାକବି, ଉଲୁକବି ଏବଂ ଫୁଲକବି । ଗଧମଧୁ ବନ୍ଧାକବିମାନେ ଏକା ଏକା ଚିଲରେ ଚିଲିକା ପାର । ଧୂର୍ଜଟି ଉଳିଆଙ୍କୁ ଉଲକବି ଶ୍ରେଣୀରେ ଧର । ଗଣିପୋଛି ଧାଡ଼ି ଧାଡ଼ି ଅକ୍ଷର ବସାଇବାରେ ଖୁବ୍ ଟାଣ । ଭବନ ଗାମ୍ଭୀର୍ଯ୍ୟ ଅତଳ ସ୍ପର୍ଶୀ ଶବ୍ଦ ଲାଳିତ୍ୟ ତ ଥିବ ଚ ! ଅଥଚ ମନ୍ଦ କବି ଯଶଃ ପ୍ରାର୍ଥୀ । ଅଜଣା ଫୁଲକବି କଥା ଛାଡ଼ । କଢ଼ ଫୁଟିବା ଯାଏ ପ୍ରଭା ପ୍ରକାଶ ପାଇଲା ନାହିଁ । ଅଥ ବିଦାକି ବାଣ୍ଟ"(୧୫) ବିଭିନ୍ନ କିସମର ଭାଷା ପ୍ରୟୋଗ କରି ଆପଣାର ବକ୍ତବ୍ୟ ପ୍ରକାଶରେ ଫକୀରମୋହନ ଥିଲେ ଧୂରନ୍ଧର । ସେ ସଂସ୍କୃତ, ଇଂରାଜୀ, ପାର୍ଶୀ, ହିନ୍ଦୀ ପ୍ରଭୃତି ଭାଷା ସହିତ ଓଡ଼ିଆ ଭାଷାକୁ ମିଶାଇ ତାଙ୍କ ଗଦ୍ୟକୁ ଆକର୍ଷଣୀୟ କରି ପ୍ରକାଶ କରିଛନ୍ତି । ଏଠାରେ 'ନନାଙ୍କ ପାଞ୍ଜି'ର କିୟଦଂଶ

(୧୪) F. W. Bateson-The Scholar Critic-(1972) Routledge and Kegan Paul, London, Page-11.

(୧୫) ଫକୀରମୋହନ ସେନାପତି–ନନାଙ୍କ ପାଞ୍ଜି–ଫକୀରମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୬୬ ।

ଦେଖନ୍ତୁ, "ମହାକବି ଭାରବି ବୋଲି ଅଛନ୍ତି, "ସହସା ବିଦଧୀତ ନ କ୍ରିୟା"– ଅସ୍ୟାର୍ଥ– "ବୁଝି ବିଗ୍ରରି କର୍ମ କଲେ, ସେ ଦୋଷ ନ ଲଗଇ ଭଲେ ।" ବଡ଼େ ବଡ଼େ ବୋଲି ଯାଇ ଅଛନ୍ତି "ଶଏ ଭକା ଏକ ଲେଖା" ଶଏଥର କହିବ, ଥରେ ଲେଖିବ ନାହିଁ । ଦେଖୁନାହଁ ମୌଲବି ସାହେବ ସ୍ୱୟଂ ଗଜ ଗଜେଶ୍ୱରୀଙ୍କୁ ଗାଳି ଦେଇ ଦେହ ଝାଡ଼ି ଦେଇ ଗଲେ, ଆଉ ତିଳକ ? ତାଙ୍କ ବେବର୍ତ୍ତାଙ୍କ ନାମରେ ବିପଦ କଣ ଲେଖି ଜେଲରେ ପଚୁଅଛନ୍ତି । ଆପେ ବୁଝେ ବୋଧା– ଶୁଣି ଶିଖେ ଅଧା ; ଦେଖି ଶିଖେ ଗଧା । ଆମ୍ଭ ସମ୍ପାଦକ ଭଳି ହୁସିଆର ଲୋକ ; ଦେଖି ଶିଖିଲେଣି । ଆମ୍ଭେ କବିତା ଲେଖି ଦେଲୁଁ, ସେ ତାହା ଉପରେ କୈଫିଅତ୍ କାଟି ବସିଲେ– "ଏ ଲେଖା ଭଲମନ୍ଦ ପାଇଁ ଆମ୍ଭେମାନେ ଲଗାପଗା ନୋହୁଁ ।"(୧୬) ଗାଉଁଲୀ ପ୍ରବଚନ, ସଂସ୍କୃତ ନୀତିବାକ୍ୟ, ସମ୍ଭ୍ରାନ୍ତ ଇଂରେଜ ଶବ୍ଦ ପ୍ରଭୃତିର ହାସ୍ୟକର ବ୍ୟାଖ୍ୟା କରି ସେ ତାଙ୍କ ପ୍ରବନ୍ଧରେ ପାଠକର ମନୋରଞ୍ଜନ କରିବାକୁ ଭୁଲିନାହାନ୍ତି ।

ଫକୀରମୋହନ ପ୍ରଥମେ ପ୍ରାବନ୍ଧିକ, ପରେ କଥାକର । ପ୍ରବନ୍ଧ ହେଉଛି ତାଙ୍କ ଗଦ୍ୟ ସାହିତ୍ୟର ପ୍ରଥମ ଦ୍ୱାର । ପ୍ରଥମ ଦ୍ୱାର ନ ଫିଟିଲେ ଗୃହକୁ ସହଜରେ ପ୍ରବେଶ କରିହୁଏ ନାହିଁ । ପୁଣି ପ୍ରଥମ ଦ୍ୱାର ଦେଇ ନଗଲେ ଗୃହ ପ୍ରବେଶ ମଧ୍ୟ ମର୍ଯ୍ୟାଦାବନ୍ତ ହୁଏ ନାହିଁ । ସୁତରାଂ ପ୍ରାବନ୍ଧିକ ଭାବରେ ତାଙ୍କର କୃତିତ୍ୱ ବିଗ୍ରର ନ କରି ତାଙ୍କ ଗଳ୍ପ-ଉପନ୍ୟାସ ମାଧ୍ୟମରେ ଗଦ୍ୟଶିଳ୍ପୀ ଫକୀର-ମୋହନଙ୍କ ସ୍ୱରୂପ ଆକଳନ ଅପପ୍ରୟାସ ମାତ୍ର ।

---

(୧୬) ଫକୀରମୋହନ ସେନାପତି–ନନାଙ୍କ ପାଞ୍ଜି–ଫକୀରମୋହନ ଗ୍ରନ୍ଥାବଳୀ–
୨ୟ ଖଣ୍ଡ (୨ୟ ସଂସ୍କରଣ-୧୯୬୩) ପୃ. ୬୬୬ ।



ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର, ବ୍ରହ୍ମପୁର-୭

# ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ— ତୁଳନାମୂଳକ ଆଲୋଚନା

କୃଷ୍ଣଚନ୍ଦ୍ର ଭୂୟାଁ

ସାହିତ୍ୟ ସମ୍ରାଟ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଜନ୍ମ ୧୮୩୮ ଓ ମୃତ୍ୟୁ ୧୮୯୪ । ବ୍ୟାସକବି ଫକୀରମୋହନ ସେନାପତିଙ୍କ ଜନ୍ମ ୧୮୪୩ ଓ ମୃତ୍ୟୁ ୧୯୧୮ । ଉଭୟ ଯଥାକ୍ରମେ ୫୬ ଓ ୭୫ ବର୍ଷ ଜୀବିତ ଥିଲେ । ଫକୀରମୋହନଙ୍କ ଜୀବନକାଳ ବଙ୍କିମଚନ୍ଦ୍ରଙ୍କ ଅପେକ୍ଷା ୧୯ ବର୍ଷ ଅଧିକ ଥିଲା । ବଙ୍କିମଚନ୍ଦ୍ର ଥିଲେ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମ ଗ୍ରାଜୁଏଟ ଓ ଲ ଗ୍ରାଜୁଏଟ । ଫକୀରମୋହନଙ୍କ ଶିକ୍ଷା ଥିଲା ବାଲେଶ୍ୱର ବାରବାଟୀ ସ୍କୁଲରେ ମାତ୍ର ପ୍ରଥମ ଶ୍ରେଣୀ ପର୍ଯ୍ୟନ୍ତ, ବାଲ୍ୟ-ଜୀବନରେ ବଙ୍କିମଚନ୍ଦ୍ରଙ୍କୁ ଦାରିଦ୍ର୍ୟ ସ୍ପର୍ଶ ନ କରିଥିବା ବେଳେ ଫକୀରମୋହନ ବାଲ୍ୟଜୀବନରେ ଚରମ ଦାରିଦ୍ର୍ୟ ଓ ଦୁର୍ଗତିର ସମ୍ମୁଖୀନ ହୋଇଥିଲେ । ବଙ୍କିମ ଚନ୍ଦ୍ରଙ୍କ କର୍ମଜୀବନ କଟିଥିଲା ଡେପୁଟି ମାଜିଷ୍ଟ୍ରେଟ ଓ ଡେପୁଟି କଲେକ୍ଟର ଭାବରେ । କିଛିଦିନ ଶିକ୍ଷକତା ଛଡ଼ା ଫକୀରମୋହନ ଗଡ଼ଜାତ ରାଜ୍ୟଗୁଡ଼ିକରେ କିରାଣୀ, ମ୍ୟାନେଜର ଓ ଦେବାନ ଭାବରେ କାର୍ଯ୍ୟ ତୁଲାଇଥିଲେ । ଉଭୟଙ୍କର ପୁଲିସ, ପ୍ରଶାସନ, ଆଇନ ଅଦାଲତ ଓ ବିଭିନ୍ନ ସ୍ତରର ଜନ-ଜୀବନ ସହିତ ଗଭୀର ସମ୍ପର୍କ ଥିଲା । ବଙ୍କିମଙ୍କୁ ଯେତେବେଳେ ୧୧ ବର୍ଷ ବୟସ ଜଣେ ପଞ୍ଚ ବର୍ଷୀୟା ବାଳିକା ସହିତ ତାଙ୍କର ବିବାହ ସମ୍ପନ୍ନ ହୁଏ । ଫକୀରମୋହନଙ୍କ ବିବାହ ହୋଇ-ଥିଲା ୧୩ ବର୍ଷ ବୟସରେ ମାଣିକଖମ୍ବ ନିବାସୀ ନାରାୟଣ ପରିଡ଼ାଙ୍କ କନ୍ୟା ଲୀଳାବତୀଙ୍କ ସହିତ । ପ୍ରଥମ ପତ୍ନୀଙ୍କ ମୃତ୍ୟୁ ପରେ ବଙ୍କିମଚନ୍ଦ୍ର ୧୮୬୦ ରେ ହାଲିସହରର ଚୌଧୁରୀ ବଂଶର କନ୍ୟା ରାଜଲକ୍ଷ୍ମୀଙ୍କୁ ଦ୍ୱିତୀୟ ବିବାହ କରିଥିଲେ । ପ୍ରଥମ ପତ୍ନୀଙ୍କ ମୃତ୍ୟୁ ପରେ ଫକୀରମୋହନ ୧୮୭୧ରେ ଶିବ ପ୍ରସାଦ ଚୌଧୁରୀଙ୍କ

କନ୍ୟା କୃଷ୍ଣକୁମାରୀଙ୍କୁ ବିବାହ କରିଥିଲେ । ଉଭୟ ଥିଲେ ନିଜ ନିଜର ଦ୍ୱିତୀୟ ପତ୍ନୀଙ୍କ ପ୍ରତି ଗଭୀର ଅନୁରକ୍ତ । ଜୀବନ ସଙ୍ଗିନୀ ରୂପେ ରାଜଲକ୍ଷ୍ମୀ ଦେବୀ ସୁଖ ଦୁଃଖ, ବିପଦ ଆପଦ ସବୁ ସମୟରେ ପତିଙ୍କର ସହାୟ ଥିଲେ । ବଙ୍କିମଚନ୍ଦ୍ର କୁହନ୍ତି "ଆମାର ଜୀବନ ଅବିଶ୍ରାନ୍ତ ସଂଗ୍ରାମେର ଜୀବନ । ଏକ ଜନେର ପ୍ରଭାବ ଆମର ଜୀବନେ ବଡ଼ ବେଶି ରକମେର– ଆମାର ପରିବାରେର । ଆମାର ଜୀବନୀ ଲିଖିତେ ହଇଲେ ତାଁହାର ଓ ଲିଖିତେ ହୟ । ତିନି ନା ଥାକିଲେ ଆମି କି ହଇତାମ, ବଲିତେ ପାରିନା ।"

କୃଷ୍ଣକୁମାରୀଙ୍କ ସମ୍ପର୍କରେ ଫକୀରମୋହନଙ୍କ ଅଭିମତ ହେଉଛି, "ସାଂସାରିକ ସମସ୍ତ ପ୍ରକାର ଦୁଃଖ ଦୁର୍ଦ୍ଦଶା ମୋଚନ, ସୌଭଗ୍ୟ ସୁଖ ସମ୍ପଦ ବର୍ଦ୍ଧନ ନିମନ୍ତେ ଦୟାମୟ ପରମେଶ୍ୱର କୃଷ୍ଣକୁମାରୀଙ୍କୁ ଭର୍ଯାରୂପେ ମୋହ ନିକଟକୁ ପଠାଇଥିଲେ । ସତ୍ୟ, ନିଷ୍ଠା, ଜାତି ପକ୍ଷୟଣତା, ଧାର୍ମିକତା ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା ।"

ବଙ୍ଗଳା, ଇଂରଜୀ ଓ ସଂସ୍କୃତ ଭାଷାରେ ବଙ୍କିମଚନ୍ଦ୍ରଙ୍କର ପାଣ୍ଡିତ୍ୟ ଥିଲା । ଫକୀରମୋହନ ଅଳ୍ପ ଶିକ୍ଷିତ ହେଲେ ହେଁ ଓଡ଼ିଆ, ପାର୍ଶୀ' ସଂସ୍କୃତ, ବଙ୍ଗଳା ଓ ଇଂରଜୀ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଉପନ୍ୟାସ, କବିତା, ଧର୍ମତତ୍ତ୍ୱ, ପୁରାଣ ବିଷୟକ ପ୍ରବନ୍ଧ ଇତ୍ୟାଦିର ରଚୟିତା ବଙ୍କିମଚନ୍ଦ୍ର ଜଣେ ସାର୍ଥକ ସାହିତ୍ୟ ସ୍ରଷ୍ଟା ଥିଲେ । କାବ୍ୟ କବିତା, ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ପାଠ୍ୟ ପୁସ୍ତକ ଓ ଅନୁବାଦ ସାହିତ୍ୟ ଇତ୍ୟାଦି ଥିଲା ଫକୀରମୋହନଙ୍କ ସାହିତ୍ୟ କୀର୍ତ୍ତି ଅନ୍ତର୍ଭୁକ୍ତ ଓ ସଫଳତାର ମାପକାଠି 'ବଙ୍ଗଦର୍ଶନ', 'ବୋଧଦାୟିନୀ' ଓ 'ବାଲେଶ୍ୱର ସମ୍ବାଦ ବାହିକା' ପତ୍ରିକା ସମ୍ପାଦନା କ୍ଷେତ୍ରରେ ଯଥାକ୍ରମେ ଉଭୟ ଥିଲେ ପାରଦର୍ଶୀ । ସାହିତ୍ୟର ବିଭିନ୍ନ ବିଭାଗରେ କଲମ ଚଳାଇ ଉଭୟ ପାରଦର୍ଶିତାର ପରିଚୟ ଦେଇଥିଲେ ହେଁ ଔପନ୍ୟାସିକ ଭାବରେ ଉଭୟଙ୍କର ଯୁଗାନ୍ତକାରୀ ଭୂମିକା ଥିଲା । ଅଧିକନ୍ତୁ ଗଳ୍ପ ଲେଖକ ଭାବରେ ଫକୀରମୋହନ ଥିଲେ ଅନବଦ୍ୟ ଓ ଅପ୍ରତିଦ୍ୱନ୍ଦ୍ୱୀ ।

ସଂଖ୍ୟା ଦୃଷ୍ଟିରୁ ବିଗ୍ଭରକଲେ ବଙ୍କିମଚନ୍ଦ୍ର ଥିଲେ ଫକୀରମୋହନଙ୍କ ଠାରୁ ଶକ୍ତିଶାଳୀ । ଦୁର୍ଗେଶ ନନ୍ଦିନୀ, କପାଳ କୁଣ୍ଡଳା, ମୃଣାଳିନୀ, ବିଷବୃକ୍ଷ, ଇନ୍ଦିରା, ଯୁଗଳାଙ୍ଗୁରୀୟ ଚନ୍ଦ୍ରଶେଖର, ରାଧାରାଣୀ, ରଜନୀ, କୃଷ୍ଣକାନ୍ତେର ଉଇଲ,

ରାଜ ସିଂହ, ଆନନ୍ଦ ମଠ, ଦେବୀ ଚୌଧୁରାଣୀ, ସୀତାରାମ ପ୍ରଭୃତି ୧୪ଟି ଉପନ୍ୟାସର ସେ ସ୍ରଷ୍ଟା । ସଂଖ୍ୟା ଦୃଷ୍ଟିରୁ ଫକୀରମୋହନଙ୍କ ସ୍ଥାନ ଯଥେଷ୍ଟ ନିମ୍ନରେ । ଛ'ମାଣ ଆଠଗୁଣ୍ଠ, ଲଛମା, ମାମୁଁ, ପ୍ରାୟଶ୍ଚିତ– ଏଇ ଚାରିଖଣ୍ଡ ଉପନ୍ୟାସ ରଚନା କରି ସେ ହୋଇଛନ୍ତି ସ୍ମରଣୀୟ । ସମାଲୋଚକମାନେ ମତ ଦିଅନ୍ତି ବିଷବୃକ୍ଷ ହେଉଛି ବଙ୍କିମ ପ୍ରତିଭାର ଶ୍ରେଷ୍ଠ ଉପଢୌକନ । ଛ'ମାଣ ଆଠଗୁଣ୍ଠ ନିଃସନ୍ଦେହରେ ଫକୀରମୋହନଙ୍କ ଶ୍ରେଷ୍ଠ ଓ କାଳଜୟୀ ଉପନ୍ୟାସ । ୧୮୭୨ରେ ବଙ୍ଗଦର୍ଶନରେ ପ୍ରଥମ ସଂଖ୍ୟାରୁ ଧାରାବାହିକ ଭାବରେ ବିଷବୃକ୍ଷ ପ୍ରକାଶିତ ହୋଇ ୧୮୭୩ରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିବା ସ୍ଥଳେ ୧୮୯୭ରେ ଉତ୍କଳ ସାହିତ୍ୟରେ ଧାରାବାହିକ ଭାବରେ ପ୍ରକାଶିତ ହୋଇ ୧୯୦୨ରେ ଛ'ମାଣ ଆଠଗୁଣ୍ଠ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉତ୍କଳ ସାହିତ୍ୟରୁ ଛ'ମାଣ ଆଠଗୁଣ୍ଠର ନାୟକ ଅଭିଯୁକ୍ତ ମଙ୍ଗରାଜଙ୍କ ବିଚାର ପ୍ରସଙ୍ଗ ପାଠ କରି ମଫସଲର ଲୋକମାନେ ମକଦ୍ଦମାର ରାୟ ଶୁଣିବାକୁ କଟକ ଛୁଟି ଆସିଥିଲେ । ବିଷବୃକ୍ଷ ବଙ୍ଗଦର୍ଶନର ପୃଷ୍ଠା ମଣ୍ଡନ କରୁଥିବା ବେଳେ ପାଠକମାନଙ୍କ ମନରେ ଏଭଳି ଆଲୋଡ଼ନ ସୃଷ୍ଟି କରି ନଥିଲା ।

ଉଭୟ ଉପନ୍ୟାସର ମୂଳ ବିଷୟବସ୍ତୁ ଭିନ୍ନ ଓ ସ୍ୱତନ୍ତ୍ର । ସଂକ୍ଷେପରେ ବିଷବୃକ୍ଷର କଥାବସ୍ତୁ ହେଲା– ଗୋବିନ୍ଦପୁରର ଅଧିବାସୀ ନଗେନ୍ଦ୍ରନାଥ ଦତ୍ତ ଜଣେ ସମ୍ଭ୍ରାନ୍ତ ଜମିଦାର । ପତ୍ନୀ ସୂର୍ଯ୍ୟମୁଖୀ ଅତ୍ୟନ୍ତ ପତି ପରାୟଣା ଓ ସୁଗୃହିଣୀ । ନଗେନ୍ଦ୍ର କୁନ୍ଦନନ୍ଦିନୀ ନାମଧେୟା ଜଣେ ପିତୃମାତୃହୀନା ସୁନ୍ଦରୀ ବିଧବା ଯୁବତୀକୁ ଭଲ ପାଇବାରୁ ସେମାନଙ୍କ ଦାମ୍ପତ୍ୟ ଜୀବନ ବିଘ୍ନିତ ହେଲା । ନଗେନ୍ଦ୍ରଙ୍କ ପରିବାରରେ ଆଶ୍ରିତା କୁନ୍ଦ ମଧ୍ୟ ସୁନ୍ଦର ଓ ସୁପୁରୁଷ ନଗେନ୍ଦ୍ରଙ୍କୁ ଭଲ ପାଇ ବସିଲା । ସୂର୍ଯ୍ୟମୁଖୀ ନିଜର ପ୍ରତିକ୍ରିୟା ସୁଖ ଦୁଃଖର ସାଥି ନଗେନ୍ଦ୍ରଙ୍କ ଭଉଣୀ କମଳମଣି ଓ ଭିଣୋଇ ଶ୍ରୀଶଚନ୍ଦ୍ର ମିତ୍ରଙ୍କୁ ଜଣାଇଥିଲେ ହେଁ ସେମାନେ ଏହା ପ୍ରଥମେ ବିଶ୍ୱାସ କରି ନଥିଲେ । ସୂର୍ଯ୍ୟମୁଖୀ ହୃଦୟ ଯନ୍ତ୍ରଣାରେ ସନ୍ତୁଳିହୋଇ କୁନ୍ଦକୁ ଦିନେ ଧିକ୍କାର କରିବା ଦ୍ୱାରା ସେ ଘରଛାଡ଼ି ଯାଇଥିଲା । ଏହାପରେ ପ୍ରଚଣ୍ଡ ମାନସିକ ଯନ୍ତ୍ରଣାରେ ନଗେନ୍ଦ୍ରଙ୍କ ଜୀବନ ଦୁଃସହ ହୋଇ ପଡ଼ିଥିଲା । ଘଟଣା ଚକ୍ରରେ ପଡ଼ି କୁନ୍ଦ ନଗେନ୍ଦ୍ରଙ୍କ ଗୃହ ପରିଚାରିକା ହୀରାର ଘରେ ଆତ୍ମ-ଗୋପନ କରିବାକୁ ବାଧ୍ୟ ହୋଇଥିଲା । ଲୋଭ ସମ୍ଭାଳି ନପାରି ଦିନେ ରାତିରେ ସେ

ନଗେନ୍ଦ୍ରଙ୍କୁ ଦେଖିବାକୁ ଆସି ସୂର୍ଯ୍ୟମୁଖୀଙ୍କ ଆଖିରେ ଧରାପଡ଼ିଗଲା । ସୂର୍ଯ୍ୟମୁଖୀ ତାକୁ ଖୋଜି ପାଇବାକୁ ଆତୁର ହୋଇ ପଡ଼ିଥିଲା । ସେ ନଗେନ୍ଦ୍ରଙ୍କୁ ଖୁସି କରିବାକୁ କୁନ୍ଦକୁ ତାଙ୍କ ସହିତ ବିବାହ ଦେଇ କେଉଁ ଆଡ଼େ ଘର ଛାଡ଼ି ଚାଲିଗଲେ । କୁନ୍ଦ ସହିତ ସମସ୍ତ ପ୍ରେମବନ୍ଧନ ଛିନ୍ନ କରି ନଗେନ୍ଦ୍ର ସୂର୍ଯ୍ୟମୁଖୀଙ୍କୁ ପାଇବାକୁ ଚେଷ୍ଟା କରି ମଧ୍ୟ ବିଫଳ ହେଲେ । ଶେଷରେ ଅନୁସନ୍ଧାନ କରି ସେ ଜାଣି ପାରିଲେ ଯେ ସୂର୍ଯ୍ୟମୁଖୀଙ୍କର ମୃତ୍ୟୁ ହୋଇ ଯାଇଛି । ଜମିଦାରୀ, ସମ୍ପତ୍ତି ଓ ସଂସାର ପ୍ରତି ବିତୃଷ୍ଣ ନଗେନ୍ଦ୍ର ସବୁ କିଛି ପରିତ୍ୟାଗ କରି ଚାଲିଯିବା ପୂର୍ବରୁ ରାତିରେ ସୂର୍ଯ୍ୟମୁଖୀଙ୍କ ଶୟନକକ୍ଷରେ ମାନସିକ ଭାରସାମ୍ୟ ନଥିବା ଅବସ୍ଥାରେ ସୂର୍ଯ୍ୟମୁଖୀଙ୍କ କୋଳରେ ନିଜକୁ ଆବିଷ୍କାର କରନ୍ତି । କମଳମଣି ଓ ଶ୍ରୀଶଚନ୍ଦ୍ର ଏଇ ମହା ମିଳନର ଆନନ୍ଦରେ ମିଳିତ ହେବା ବେଳକୁ ନଗେନ୍ଦ୍ର ଦ୍ୱାରା ଉପେକ୍ଷିତା କୁନ୍ଦନନ୍ଦିନୀ ହୀରା ନିକଟରେ ଥିବା ବିଷ ଆଣି ଖାଇ ଦେଇ ଯନ୍ତ୍ରଣାରେ ଛଟପଟ ହୁଏ ଏବଂ ସେଇ-ଥିରେ ହିଁ ତାର ମୃତ୍ୟୁ ହୁଏ ।

ଦେବେନ୍ଦ୍ର ଓ ନଗେନ୍ଦ୍ର ଏକ ବଂଶ ସମ୍ଭୂତ ହେଲେ ହେଁ ଉଭୟ ପରିବାର ମଧ୍ୟରେ ଶତ୍ରୁତା ଥିଲା । ଦେବୀପୁରର ଅଧିବାସୀ ଦେବେନ୍ଦ୍ର ପତ୍ନୀ ଦ୍ୱାରା ଉପେକ୍ଷିତ ହୋଇ ମଦ୍ୟପାନ ଓ କୁସଙ୍ଗରେ ଜୀବନଯାପନ କରୁଥିଲା । ସେ କୁନ୍ଦର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ହରିଦାସୀ ବୈଷ୍ଣବୀ ସାଜି ନଗେନ୍ଦ୍ରଙ୍କ ଘରେ ତାକୁ ଭେଟିଥିଲା ଏବଂ ପରେ ହୀରା ମାଧ୍ୟମରେ କୁନ୍ଦକୁ ପାଇବାକୁ ଇଚ୍ଛାୟିତ ହୋଇଥିଲା । ହୀରା ଦ୍ୱାରା ଦେବେନ୍ଦ୍ର ଲାଞ୍ଛିତ ହେବା ପରେ ସେ ପ୍ରତି-ଶୋଧ ପରାୟଣ ହୋଇ ହୀରାର ନାରୀତ୍ୱ ଲୁଣ୍ଠନ କରିଥିଲା । ଏଥିରେ ହୀରା ଉତ୍କ୍ଷିପ୍ତା ହୋଇ ଦେବେନ୍ଦ୍ର କିମ୍ବା ଦେବେନ୍ଦ୍ରର ପ୍ରଣୟିନୀ କୁନ୍ଦକୁ ବିଷଦେଇ ମାରିଦେବାକୁ ସିଦ୍ଧାନ୍ତ ନେଇଥିଲା । ସେ ଉନ୍ମାଦିନୀ ଅବସ୍ଥାରେ ଦେବେନ୍ଦ୍ରକୁ ଆକ୍ରମଣ କରିବାକୁ ଯିବାବେଳକୁ ଦେବେନ୍ଦ୍ର ରୋଗ ଶଯ୍ୟାରେ ମୃତ୍ୟୁକୁ ଅପେକ୍ଷା କରିଥିଲା ।

ଛ'ମାଣ ଆଠଗୁଣ୍ଠର ମୂଳ ବିଷୟ ହେଉଛି– ବାପ ମାଆ ଛେଉଣ୍ଡ ଗୋବିନ୍ଦପୁରର ଅଧିବାସୀ ରାମଚନ୍ଦ୍ର ମଙ୍ଗରାଜ ହେଉଛନ୍ତି ଫତେପୁର ସରଖଣ୍ଡର ଜମିଦାର । କୂଟକୌଶଳ ପ୍ରୟୋଗ କରି ସେ ମେଦିନୀପୁରର ଦିଲଦାର ମିଆଁ ଠାରୁ ଜମିଦାରୀ ଲାଭ କରିବା ପରେ ପ୍ରଜାଙ୍କ ସମ୍ପତ୍ତି ଓ ପରଧନ ଲୁଣ୍ଠନ କରିବା

ସଙ୍ଗେ ସଙ୍ଗେ ଚୌକିଦାର ଗୋବର ଜେନା ମାର୍ଫତ ଚୌରୀ ଧନ ସଂଗ୍ରହ କରିବାକୁ ମଧ୍ୟ ପଛେଇ ଯାଇ ନାହାନ୍ତି । ଶେଷରେ ତାଙ୍କର ଆଖି ପଡ଼ିଲା ଭଗୀଚନ୍ଦର ଛ'ମାଣ ଆଠଗୁଣ୍ଠ ଜମି ଉପରେ । ଜମିକୁ ଓ ଭଗୀର ନେତ ନାମକ ଗାଈକୁ ସେ ମଧ୍ୟ କରଗତ କଲେ । ସବୁ ହରାଇ ଭଗିଆ ପାଗଳ ହୋଇଗଲା ଓ ତା'ର ସ୍ତ୍ରୀ ଭେଜ ଉପାସରେ ପ୍ରାଣ ହରାଇଲା । ମଙ୍ଗରାଜ ରକ୍ଷଣୀ ଚମ୍ପା ସାହାଯ୍ୟରେ ଛ'ମାଣ ଆଠଗୁଣ୍ଠ ଜମି କରଗତ କରିବା ସଙ୍ଗେ ସଙ୍ଗେ ତାଙ୍କର ପରମ ଶତ୍ରୁ ରତନପୁରର ବାଘସିଂହ ଘର ପୋଡ଼ିଦେବା ଭଳି ନାରକୀୟ କାର୍ଯ୍ୟ ସାଧନ କରିଥିଲେ । ଏହି ଘଟଣା ଘଟିବା ପରେ ତାଙ୍କର ପତିପରାୟଣା ଦେବୋପମା ସ୍ତ୍ରୀ ପ୍ରବଳ ମାନସିକ ଯନ୍ତ୍ରଣା ସହି ନପାରି ମୃତ୍ୟୁବରଣ କରିଥିଲେ । ସାରିଆକୁ ହତ୍ୟା କରିଥିବା ଅଭିଯୋଗରେ ମଙ୍ଗରାଜ ଗିରଫ ହୋଇଥିଲେ ଓ ମକଦ୍ଦମାରେ ନେତକୁ ହରଣ କରିବା ଅପରାଧରେ ଜେଲ ଦଣ୍ଡ ଭୋଗିଥିଲେ । ଜେଲରେ ପାଗଳ ଭଗିଆ ମଙ୍ଗରାଜଙ୍କ ନାକ କାମୁଡ଼ି ଦେବାରୁ ଓ ରତନପୁରର କୟେଦୀମାନେ ତାଙ୍କୁ ମାଡ଼ ଦେବାରୁ ସେ ଗୁରୁତର ଅସୁସ୍ଥ ହୋଇ ପଡ଼ିଲେ । ରକ୍ଷକ ମୁକୁନ୍ଦା ତାଙ୍କୁ ଜେଲରୁ ଆଣି କବିରାଜୀ ଚିକିତ୍ସା କରାଇଥିଲେ ହେଁ କିଛି ଫଳ ନ ହେବାରୁ ଶେଷରେ ସେ ମୃତ୍ୟୁବରଣ କରିଥିଲେ । ଇତି ପୂର୍ବରୁ ରକ୍ଷଣୀ ଚମ୍ପା ଓ ଗୋବିନ୍ଦା ଭଣ୍ଡାରୀ ମଙ୍ଗରାଜଙ୍କ ସମସ୍ତ ଚୋରୀଧନକୁ ନେଇ ପଳାଇ ଯାଇଥିଲେ । ସେହି ଧନ କରଗତ କରିବାକୁ ଚମ୍ପାକୁ ଗୋବିନ୍ଦା ହତ୍ୟା କରେ ଓ ନିଜେ ନଈକୁ ଡେଇଁ ମୃତ୍ୟୁବରଣ କରେ ।

ବହୁ ବିବାହ, ବିଧବା ବିବାହ ଓ ଅବୈଧ ପ୍ରଣୟକୁ ଆଧାର କରି ବିଷବୃକ୍ଷ ରଚିତ ହୋଇଥିବା ବେଳେ ଜମିଦାରୀ ପୀଡ଼ନ, ପ୍ରଶାସନିକ ତ୍ରୁଟି-ବିଚ୍ୟୁତି, ସାମାଜିକ ଶୋଷଣ, ନିର୍ଯ୍ୟାତନା କୁସଂସ୍କାର ପ୍ରତି କଟୂକ୍ତି ଇତ୍ୟାଦି ହୋଇ ଉଠିଛି ଛ'ମାଣ ଆଠଗୁଣ୍ଠର ପ୍ରାଣକେନ୍ଦ୍ର । ବହୁ ବିବାହ, ବିଧବା ବିବାହ ଓ ଅବୈଧ ପ୍ରେମ ହିଁ ବଙ୍କିମଙ୍କ ଦୃଷ୍ଟିରେ ବିଷବୃକ୍ଷ ଏବଂ ଏଇ ବିଷବୃକ୍ଷ ନାମରେ ହିଁ ଉପନ୍ୟାସ ନାମିତ । ଯେଉଁ ଛ'ମାଣ ଆଠଗୁଣ୍ଠ ଜମିପାଇଁ ମଙ୍ଗରାଜଙ୍କ ବିପର୍ଯ୍ୟୟ ଘଟିଛି ତାହା ହିଁ ଫକୀରମୋହନଙ୍କ କଲମରେ ଉପନ୍ୟାସର ନାମ ଗ୍ରହଣ କରିଛି । କେବଳ ବିଷୟବସ୍ତୁ ନୁହେଁ, ନାମକରଣ ଦୃଷ୍ଟିରୁ ମଧ୍ୟ ଛ'ମାଣ ଆଠଗୁଣ୍ଠ ନିକଟରେ ବିଷବୃକ୍ଷ ଦୁର୍ବଳ । ବ୍ରାହ୍ମଧର୍ମାବଲମ୍ବୀ ତାରାଚରଣକୁ ବିବାହ କରି କୁନ୍ଦ ନନ୍ଦିନୀ ବିଧବା ହେବା ପରେ ନଗେନ୍ଦ୍ର ତାକୁ ଦ୍ୱିତୀୟ ବିବାହ କରିଛନ୍ତି । ବିଧବା

ସହିତ ମଦ୍ୟପୀ ଦେବେନ୍ଦ୍ରର ପାପପ୍ରଣୟ ଘଟିଛି । ହୀରା ଉନ୍ମାଦିନୀ ହୋଇଛି ଏବଂ କୁନ୍ଦ ଓ ଦେବେନ୍ଦ୍ରଙ୍କର ମୃତ୍ୟୁ ହୋଇଛି । ବିଷ ବୃକ୍ଷର ପରିଣତି ଏଇଠାରେ । ଉପନ୍ୟାସରୁ ଅନୁମିତ ହୁଏ ବଙ୍କିମଚନ୍ଦ୍ର ବିଧବା ବିବାହ ସଙ୍ଗେ ସଙ୍ଗେ ବହୁ ବିବାହ ଓ ଅବୈଧ ପ୍ରେମକୁ ମୋଟେ ଗ୍ରହଣ କରି ପାରି ନାହାନ୍ତି । ମଙ୍ଗରାଜଙ୍କ ଘରର ଗୃହକାରଣୀ ବିଧବା ଶାରୁଆ ପୂର୍ବ ପରିଚିତ ପ୍ରେମିକ ଲଳିତା ଦାସ ବାବାଜୀ ସହିତ ପଳାଇ ଯାଇଥିଲେ ହେଁ ଫକୀରମୋହନ ତାହାର ମୃତ୍ୟୁ ଘଟାଇ ନାହାନ୍ତି । ଯେଉଁ ଛ'ମାଣ ଆଠଗୁଣ୍ଠ ପାଇଁ ବାଘ ସିଂହ ଘରର ପତନ ହୋଇଛି, ଭଗିଆ, ସାରିଆଙ୍କର ସର୍ବନାଶ ହୋଇଛି ଏବଂ ଉପନ୍ୟାସର ନାୟକ ରାମଚନ୍ଦ୍ର ମଙ୍ଗରାଜଙ୍କ ଜୀବନ ଆକାଶରେ କଳାମେଘ ଘୋଟି ଆସିଛି ସେହି ଛ'ମାଣ ଆଠଗୁଣ୍ଠ ହିଁ ଯଥାର୍ଥରେ ଉପନ୍ୟାସର ନାମକରଣ ହୋଇଛି । ବିଷବୃକ୍ଷରେ ବଙ୍କିମଚନ୍ଦ୍ର ଆକାଶକୁ ହାତବଢ଼ାଇବା ବେଳେ ଫକୀରମୋହନ ଛ'ମାଣ ଆଠଗୁଣ୍ଠରେ ମାଟିକୁ ଛୁଇଁ ମାଟିର ମଣିଷଙ୍କ କଥା କହିଛନ୍ତି । ବିଷବୃକ୍ଷରେ ଲେଖକ ସାଧୁଭାଷା ଓ ସ୍ଥଳ-ବିଶେଷରେ ପ୍ରଚଳିତ ଭାଷା ବ୍ୟବହାର କରିଛନ୍ତି । ପ୍ରଚଳିତ ଭାଷା ପ୍ରୟୋଗରେ ତାଙ୍କର ସିଦ୍ଧହସ୍ତତାର ପରିଚୟ ମିଳେନା । ଛ'ମାଣ ଆଠଗୁଣ୍ଠରେ ସାଧୁ ଭାଷାର ପ୍ରୟୋଗ ନାହିଁ । ପ୍ରଚଳିତ ଭାଷା ବ୍ୟବହାରରେ ସେ ସଫଳତା ପ୍ରଦର୍ଶନ କରିଛନ୍ତି । ତାଙ୍କର ଆହୁରି ସଫଳତା ଲକ୍ଷ୍ୟ କରାଯାଏ ବ୍ୟଙ୍ଗ ଓ ହାସ୍ୟରସ ପରିବେଷଣରେ ; ଯାହାର ଅଭାବ ବିଷବୃକ୍ଷରେ ବିଶେଷ ଭାବରେ ଅନୁଭୂତ ହୁଏ ।

ଫକୀରମୋହନ ଓଡ଼ିଆ ଭାଷାରେ ପ୍ରଚଳିତ କେତେଗୁଡ଼ିଏ ଇଂରାଜୀ ଶବ୍ଦକୁ ଯଥାସ୍ଥାନରେ ଗ୍ରହଣ କରିଥିବା ବେଳେ ବଙ୍କିମଚନ୍ଦ୍ର ବଙ୍ଗଳା ଭାଷାରେ ଅଗୃହୀତ କେତେଗୁଡ଼ିଏ ଇଂରାଜୀ ଶବ୍ଦ ବ୍ୟବହାର କରିଛନ୍ତି ଯଥା— ଫ୍ଲେଟେଡ, ରିଫର୍ମ, ଓଲ୍ଡଫୁଲ୍ ପ୍ଲେଟେଡ ଜଗ, ରେଷ୍ଟ ମର୍ଟନ କଟଲେଟ୍, ହଟଓ୍ୱାଟର ପ୍ଲେଟ, ପୋର୍ଟଓ୍ୱାଇନ, ଡ୍ରିସ୍ପେନସାରୀ, ସିରଫେରି, ମିଉରେଟିସ୍ । ଅନ୍ୟ ପକ୍ଷରେ ଫକୀରମୋହନ ବେକୁବ, କମବଖତ, ଇଜାହାର, ଇମାନଦାର, ବଗମତ, ଗୁଦସ୍ତ, ଜାଲିମବାଜ, ଚପକନ, ରେସମ ପ୍ରଭୃତି ଶତାଧିକ ପାର୍ଶି ଶବ୍ଦ ବ୍ୟବହାର କରିଛନ୍ତି । ସମଗ୍ର ବିଷ ବୃକ୍ଷରେ ହୁଏତ ଦୁଇ ଚାରେଟି ପାର୍ଶିଶବ୍ଦ ମିଳିପାରେ ।

ବିଷବୃକ୍ଷର ପଞ୍ଚାଶତମ ପରିଚ୍ଛେଦରେ ସମାପ୍ତ ହୋଇଥିବା ବେଳେ ଛ'ମାଣ ଆଠଗୁଣ୍ଠ ଅଷ୍ଟବିଂଶ ପରିଚ୍ଛେଦରେ ସମାପ୍ତ ହୋଇଛି । ଉଭୟ ଉପନ୍ୟାସର

ଆରମ୍ଭରେ ଯଥାକ୍ରମେ ନଗେନ୍ଦ୍ର ଓ ରାମଚନ୍ଦ୍ର ମଙ୍ଗରାଜଙ୍କର ଆବିର୍ଭାବ ଘଟିଛି । ବିଷବୃକ୍ଷର ପ୍ରଥମ ପରିଛେଦର ଶୀର୍ଷକ 'ନଗେନ୍ଦ୍ରର ନୌକା ଯାତ୍ରା'ରେ କୁହାଯାଇଛି– "ନଗେନ୍ଦ୍ର ଦତ୍ତ ନୌକାରୋହଣେ ଯାଇତେ ଛିଲେନ । ଜ୍ୟେଷ୍ଠମାସ, ତୁଫାନେର ସମୟ, ଭାର୍ଯ୍ୟା ସୂର୍ଯ୍ୟମୁଖୀ ମାଥାର ଦିବ୍ୟ ଦିୟା ବଲିୟା ଦିୟା ଛିଲେନ, ଦେଖିଓ ନୌକା ସାବଧାନେ ଲଇୟା ଯାଇଓ, ତୁଫାନ ଦେଖିଲେ ଲଗାଇଓ ।" ଛ'ମାଣ ଆଠଗୁଣ୍ଠର ପ୍ରଥମ ପରିଛେଦ 'ରାମଚନ୍ଦ୍ର ମଙ୍ଗରାଜ' ଶୀର୍ଷକରେ କୁହାଯାଇଛି– "ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର ଜମିଦାର, ମଧ୍ୟ ମହାଜନ– ନଗଦ ଟଙ୍କା କାରବାର ଠାରୁ ଧନର ମହାଜନୀ ବେଶି ।" ବିଷବୃକ୍ଷର ସମାପ୍ତିରେ ନାୟକ ନଗେନ୍ଦ୍ର ଅନୁପସ୍ଥିତ । ସମାପ୍ତିରେ ଉପନାୟିକା ହୀରା ଓ ଉପ ନାୟକ ଦେବେନ୍ଦ୍ରଙ୍କର କୃତ କର୍ମର ପରିଣତି ବର୍ଣ୍ଣିତ ହୋଇଛି । କଳଙ୍କିତ ଦେବେନ୍ଦ୍ରର ମୃତ୍ୟୁ ପରେ ଉନ୍ମାଦିନୀ ହୀରାର କଣ୍ଠରୁ ଶୁଣାଯାଉଛି "ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ, ଦେହି ପଦ ପଲ୍ଲବ ମୁଦାରଂ ।" ଏହାପରେ ଔପନ୍ୟାସିକ ନିଜେ କହୁଛନ୍ତି– "ଆମରା ବିଷବୃକ୍ଷ ସମାପ୍ତ କରିଲାମ । ଭରସା କରି, ଇହାତେ ଗୃହେ ଗୃହେ ଅମୃତ ଫଲିବେ ।" ଛ'ମାଣ ଆଠଗୁଣ୍ଠରେ ମୃତ୍ୟୁକୁ ଅପେକ୍ଷା କରି ରହିଥିବା ମଙ୍ଗରାଜଙ୍କ କ୍ଷୀଣ କଣ୍ଠରୁ ଏକାଧିକ ଥର ଥ-ମା-ଆ-ଗୁଁ ଉଚ୍ଚାରିତ ହୋଇଛି । ହୋଇଛି । କାରଣ ସେ ଜାଣିଥିଲେ ଛ'ମାଣ ଆଠଗୁଣ୍ଠ ଅଧିକାର କରି ବିପଦକୁ ଡାକି ଆଣିଥିଲେ । ମଙ୍ଗରାଜଙ୍କ ମୃତ୍ୟୁପରେ "ଉଆସରେ ଚହଳ ପଡ଼ିଗଲା, ହରିବୋଲ, ହରିବୋଲ ହରିହରି ବୋଲ ।" ଏହା ଉପନ୍ୟାସର ଶେଷ ବାକ୍ୟ । କେବଳ ନାମକରଣ ଦୃଷ୍ଟିରୁ ନୁହେଁ, ଉପନ୍ୟାସର କଳାତ୍ମକ ଚେହେରାଟି ଏହା ମଧ୍ୟରେ ଫୁଟି ଉଠିଛି । ବିଷବୃକ୍ଷରେ ବଙ୍କିମଚନ୍ଦ୍ର ପ୍ରାଚୀନ ପରମ୍ପରାକୁ ହାତମୁଠାରେ ଜାବୁଡ଼ି ଧରିଥିବା ବେଳେ ଛ'ମାଣ ଆଠଗୁଣ୍ଠରେ ଫକୀରମୋହନ ଆଧୁନିକତାର ଶିଖରଦେଶରେ ପହଞ୍ଚି ଭବିଷ୍ୟତକୁ ହାତବଢ଼ାଇଛନ୍ତି ।

ଉଭୟ ଉପନ୍ୟାସର ନାୟକ ହେଉଛନ୍ତି ଜମିଦାର ଓ ସେମାନଙ୍କ ଗ୍ରାମର୍ ନାମ ହେଉଛି ଗୋବିନ୍ଦପୁର । ଜମିଦାରୀ ହରାଇଥିବା ଦେବୀପୁରର ଦେବେନ୍ଦ୍ରଙ୍କ ପରିବାର ସହିତ ନଗେନ୍ଦ୍ରଙ୍କ ପରିବାରର ଯେଉଁଳି ଶତ୍ରୁତା ଥିଲା, ସେଇଭଳି ଜମିଦାରୀ ହରାଇଥିବା ରତନପୁରର ବାଘ ସିଂହ ପରିବାର ସହିତ ମଙ୍ଗରାଜଙ୍କର ଶତ୍ରୁତା ଥିଲା । ଏଇ ଶତ୍ରୁତା ଛ'ମାଣ ଆଠଗୁଣ୍ଠରେ ଉତ୍କଟତର ।

ଦୂଇ ଜମିଦାର ପରିବାରରେ ଚମ୍ପା ନାମରେ ଦୁଇଜଣ ଗୃହକଣୀଙ୍କୁ ଦେଖିବାକୁ ମିଳେ । କିନ୍ତୁ ଛ'ମାଣ ଆଠଗୁଣ୍ଠର ଚମ୍ପା କାର୍ଯ୍ୟକଳାପ ସହିତ ବିଷବୃକ୍ଷର ହୀରାର କାର୍ଯ୍ୟକଳାପର କେତେକାଂଶରେ ମେଳ ରହିଛି ।

ନଗେନ୍ଦ୍ର ଦତ୍ତଙ୍କ ଘର ଆଭିଜାତ୍ୟ ଓ ବଂଶ ଗୌରବ ଯେଭଳି ଉଠିଛି ଏବଂ ବର୍ଣ୍ଣନାରେ ଯେଉଁ ଗାମ୍ଭୀର୍ଯ୍ୟ ପ୍ରକାଶିତ ହୋଇଛି ତାହା ରାମଚନ୍ଦ୍ର ମଙ୍ଗରାଜଙ୍କ ଘରର ବର୍ଣ୍ଣନାରେ ନାହିଁ. ନଗେନ୍ଦ୍ର ଦତ୍ତଙ୍କ ଘରେ "ବହୁ ସଂଖ୍ୟକ ଆତ୍ମୀୟ କୁଟୁମ୍ବ-କନ୍ୟା, ମାଯୀ, ମାସୀତ ଭଗିନୀ, ପିସୀ, ପିସୀତ ଭଗିନୀ, ବିଧବା ମାସୀ, ସଧବା ଭଗିନେୟୀ, ପିସୀତ ଭାଇୟେର ସ୍ତ୍ରୀ, ମାସୀ ତ ଭାଇୟେର ମେୟେ ଇତ୍ୟାଦି ନାନାବିଧ କୁଟୁମ୍ବିନୀତେ କାକ ସମାକୁଳ ବଟବୃକ୍ଷେର ନ୍ୟାୟ ରାତ୍ରିଦିବା କଲକଲ କରିତ । ଏବଂ ଅନୁକ୍ଷଣ ନାନା ପ୍ରକାର ଚିତ୍କାର, ହାସ୍ୟ, ପରିହାସ, କଳହ, କୁତର୍କ, ଗଳ୍ପ, ପରନିନ୍ଦା"ରେ ଲାଗି ରହିଥାନ୍ତି । ମଙ୍ଗରାଜଙ୍କ ଘରର ବୋହୂ-ମାନଙ୍କ ମଧ୍ୟରେ କଳି ଲଗାଇଦେବା, କଳି ଭାଙ୍ଗିବା, ହସିବା ବସିବାରେ ଅଧଗତି ହୋଇଯାଏ । ରୁକୁଣୀ, ମରୁଆ, ଚେମା, ନାକଫୋଡ଼ୀ, ଟେରୀ, ବିମଳୀ, ଶୁକୀ, ପାଟ, କୌଶଲ୍ୟାକୁ ଛାଡ଼ି ଆହୁରି କେତେଗୁଡ଼ିଏ ପୋଇଲି ଅଛନ୍ତି । × × × କେହି ବାଳ ବିଧବା– କେହି ଯୁବତୀ ବିଧବା, କେହି ଆଜନ୍ମ ବିଧବା, କେହି ବା ସଧବା– ନାନା ପକ୍ଷୀ ଏକ ବୃକ୍ଷରେ ବାସ କଲାପରି ମଙ୍ଗରାଜଙ୍କ ଘରେ ଆଶ୍ରୟ ନେଇଛନ୍ତି ।" ନଗେନ୍ଦ୍ର ଘରେ ଆଶ୍ରୟ ନେଇଥିବା ଗୃହକଣୀ "ପାଡ଼ାର ନିନ୍ଦା, ସ୍ତ୍ରୀବେର ନିନ୍ଦା, ପରସ୍ପରକେ ଗାଲାଗାଲି କରିତେଛେ । ଏବଂ ଗୋଲାପୀ ଅଳ୍ପ ବୟସେ ବିଧବା ହଇଲ, ଚାଁଦିର ସ୍ୱାମୀ ବଡ଼ ମାତାଲ, କୈଳାସୀର ଜାମାଇୟେର ବଡ଼ ଚାକିରି ହଇୟାଛେ– ସେ ଦାରୋଗାର ମୁହୂରୀ, ଗୋପାଲେ ଉଡ଼େର ଯାତ୍ରାର ମତ ପୃଥିବୀତେ ଏମନ ଆର କିଛୁଇ ନାଇ, ପାର୍ବତୀର ଛେଲେର ମତ ଦୁଷ୍ଟଛେଲେ ଆର ବିଶ୍ୱ ବାଙ୍ଗଲାୟ ନାଇ, ଇଂରେଜେରା ନାକି ରାବଣେର ବଂଶ" ଇତ୍ୟାଦି ନାନା ବିଷୟ ଆଲୋଚନା କରିଛନ୍ତି । ଏଭଳି ଆଲୋଚନା ଛ'ମାଣ ଆଠଗୁଣ୍ଠରେ 'ଅସ୍ତୁର-ଦୀଘୀ'ରେ ଶୁଣିବାକୁ ମିଳେ । ଗଲା ରାତିରେ କାହା ଘରେ କ'ଣ ରନ୍ଧା ହୋଇ-ଥିଲା, ଆଜି ରନ୍ଧଣାର ବ୍ୟବସ୍ଥା, କିଏ କେତେବେଳେ ଶୋଇଲା, କାହାକୁ କେତେ ମଶା କାମୁଡ଼ିଲା, କାହା ଘରେ ଲୁଣ ନଥିଲା, କିଏ ତେଲ ଟିକିଏ କାଲି ଆଣିଛି, ରମାମାଆ ଘର ନୂଆ ବୋହୂଟା ବଡ଼ ଲାଜକୁଳୀ, କାଲି ଆସି ଆଜି ଶାଶୁକୁ

ଜବାବ ଦେଲଣି ; କମଳା କେବେ ଶାଶୁ ଘରକୁ ଯିବେ, ସରସ୍ୱତୀ ଝିଅ ବଡ଼ ଭଲ, ଗନ୍ଧେ ଯେପରି ଲାଜ ସରମ ସେହିପରି । ଏହା ମାଇପଙ୍କ କଥା । ଗାଧୋଇବା ବେଳେ ପୁରୁଷମାନଙ୍କ ତୁଣ୍ଡରୁ ମଧ୍ୟ ଅନୁରୂପ ସ୍ୱର ଶୁଣାଯାଏ । ଏହାଛଡ଼ା ନଗେନ୍ଦ୍ରଙ୍କ ନୌକାଯାତ୍ରା ବେଳେ ନଦୀ ଘାଟରେ ଉପସ୍ଥିତ ମହିଳାମାନଙ୍କର କାର୍ଯ୍ୟର ବର୍ଣ୍ଣନା ସହିତ ଅସୁର ଦୀଘୀର ଗାଧୁଆ ତୁଠରେ କାର୍ଯ୍ୟରତ ମହିଳାମାନଙ୍କର ବର୍ଣ୍ଣନାର ସାଦୃଶ୍ୟ ରହିଛି । ପ୍ରଦତ୍ତ ଦୃଷ୍ଟାନ୍ତରୁ ଜଣାଯାଏ ଫକୀରମୋହନ ଅତି ସୂକ୍ଷ୍ମ ଭାବରେ ବଙ୍କିମଚନ୍ଦ୍ରଙ୍କୁ ଅନୁସରଣ କରିଛନ୍ତି ଏବଂ ବଙ୍କିମଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ।

ବିଷବୃକ୍ଷର ଦ୍ୱିତୀୟ ପରିଚ୍ଛେଦରେ କୁନ୍ଦନନ୍ଦିନୀର ପିତୃଗୃହର ବର୍ଣ୍ଣନା ସହିତ ଛ'ମାଣ ଆଠଗୁଣ୍ଠର ଜମିଦାର ଦିଲ୍‌ଦାର ମିଆଁଙ୍କ ଘର ବର୍ଣ୍ଣନାରେ ସାମଞ୍ଜସ୍ୟ ଥିବାର ଲକ୍ଷ୍ୟ କରାଯାଏ । ସେହି ଦ୍ୱିତୀୟ ପରିଚ୍ଛେଦରେ କୁନ୍ଦର ପିତାଙ୍କ ମୃତ୍ୟୁ ଦୃଶ୍ୟ ବର୍ଣ୍ଣନା କରିବାକୁ ଯାଇ ବଙ୍କିମ ଲେଖିଛନ୍ତି– "ଗୃହ ମଧ୍ୟେ ନିର୍ବାଣୋନ୍ମୁଖ ଚଞ୍ଚଳ କ୍ଷୀଣ ପ୍ରଦୀପାଲୋକ, କ୍ଷଣେ କ୍ଷଣେ ଶବମୁଖେ ପଡ଼ିୟା ଆବାର କ୍ଷଣେ କ୍ଷଣେ ଅନ୍ଧକାରବତ୍ ହଇତେ ଛିଲ । ସେ ପ୍ରଦୀପେ ଅନେକ କ୍ଷଣ ତୈଲ ସେକ ହୟନାଇ । ଏଇ ସମୟେ ଦୁଇ ଗ୍ରବାର ଉଜ୍ଜ୍ୱଳତର ହଇୟା ପ୍ରଦୀପ ନିବିୟା ଗେଲ ।" ଛ'ମାଣ ଆଠଗୁଣ୍ଠର ଦ୍ୱାବିଂଶ ପରିଚ୍ଛେଦରେ ଗୋପୀ ସାହୁ ଦୋକାନ ଘରେ ଗୋବିନ୍ଦା ଭଣ୍ଡାରୀ ଚମ୍ପାକୁ ହତ୍ୟା କରିଛି । ସେଇ ଘଟଣାର ବର୍ଣ୍ଣନା କରିବାକୁ ଯାଇ ଲେଖକ ଲେଖିଛନ୍ତି– ଗୋବିନ୍ଦା "ଡାହାଣ ଗୋଡ଼ଟିକୁ ଆଗକୁ ପକାଇବା ମାତ୍ରେ ଗୋଟାଏ ଜ୍ୟୋତି ଚକ୍ ଚକ୍ କରି ଚମ୍ପା ଉପର ଦେଇ କାନ୍ଥରେ ବୁଲିଗଲା, × × × ଠିକ୍ ସେହି ସମୟରେ ଦୀପଟା ଗର୍ଭକୁ ପଡ଼ିଯାଇ ଦପ୍ କରି ଜଳି ଉଠି ଲିଭି ଯିବାରୁ କିଛି ଦିଶିଲା ନାହିଁ ।"

ବିଷବୃକ୍ଷର ତୃତୀୟ ପରିଚ୍ଛେଦରେ 'ଛାୟା ପୂର୍ବଗାମିନୀ'ରେ କୁନ୍ଦର ସ୍ୱପ୍ନଦର୍ଶନ ଘଟଣାଟି ଫକୀରମୋହନଙ୍କୁ ଅନୁପ୍ରାଣିତ କରିଛି । ଆକାଶରେ ଚନ୍ଦ୍ରମଣ୍ଡଳ ମଧ୍ୟବର୍ତ୍ତିନୀ ଯେଉଁ ଅପୂର୍ବ ଜ୍ୟୋତିର୍ମୟୀ ଦେବୀ ମୂର୍ତ୍ତିକୁ କୁନ୍ଦ ସ୍ୱପ୍ନରେ ଦେଖିଛି ସେ ହେଉଛି ତା'ର ମୃତା ମାଆ । ସେହି ଛାୟା ମୂର୍ତ୍ତି କୁନ୍ଦକୁ ନିକଟକୁ ଯିବାକୁ ନିମନ୍ତ୍ରଣ କରୁଛି । ପରେ ପରେ ସେ ଦେଖିବାକୁ ପାଇଲା ଏକ ପ୍ରଶାନ୍ତ ଲଲାଟ ବିଶିଷ୍ଟ ସୌମ୍ୟ ପୁରୁଷ ମୂର୍ତ୍ତି ଓ ଉଜ୍ଜ୍ୱଳ ଶ୍ୟାମାଙ୍ଗୀ ପଦ୍ମ ପଲାସ ନୟନୀ ଏକ

ଯବତୀ ମୂର୍ତ୍ତି । ଏଇ ଦୁଇଜଣ ହେଉଛନ୍ତି ନଗେନ୍ଦ୍ର ଓ ହୀରା । ପ୍ରଥମ ଛାୟା ମୂର୍ତ୍ତି ଏଇ ଛାୟାମୂର୍ତ୍ତି ପ୍ରତି ସତର୍କ ରହିବାକୁ କୁନ୍ଦକୁ ନିର୍ଦ୍ଦେଶ ଦେଉଛି । ଏଇ ଦୁଇଜଣଙ୍କ ସହିତ କୁନ୍ଦର ପରବର୍ତ୍ତୀ ସମୟରେ ସାକ୍ଷାତ ହୋଇଛି । ଛ'ମାଣ ଆଠଗୁଣ୍ଠର ଶେଷ ପରିଛେଦରେ ମୃତ୍ୟୁ ପୂର୍ବରୁ ମଙ୍ଗରାଜ ଛାଇ ଆକାଶରେ ଦେଖି-ଛନ୍ତି ରତ୍ନ ସିଂହାସନରେ ବିରାଜିତା ଏକ ଜ୍ୟୋତିର୍ମୟୀ ନାରୀ ମୂର୍ତ୍ତିଙ୍କୁ । ସେ ହେଉଛନ୍ତି ତାଙ୍କର ପତ୍ନୀ । ସେ ପୁଣି ଦେଖିଛନ୍ତି ଏକ ଭୟଙ୍କର ନାରୀ ମୂର୍ତ୍ତି ବଡ଼ ବଡ଼ ଧଳା ଧଳା ଦାନ୍ତ, ଦୁଇତିନି ହାତ ଲମ୍ବ ଜିଭ ଲହ ଲହ କରି ତାଙ୍କୁ ଖାଇବାକୁ ଧାଇଁଛି । ମଙ୍ଗରାଜ ଏହାପରେ ଦେଖିଲେ ଏକ ଭୟଙ୍କର ନରକଙ୍କାଳ ଦିଗନ୍ତ-ଗଗନରେ ଦେହ ଲୁଗ୍ଣଇ ମୁଖବ୍ୟାଦାନ ପୂର୍ବକ ତାଙ୍କୁ ଗ୍ରାସ କରିବା ନିମନ୍ତେ ଯେମନ୍ତ ଏକ ଧ୍ୟାନରେ ନୀରବରେ ଗ୍ଣହିଁ ରହିଛି । ଏ ଦୁଇ ଛାୟା ମୂର୍ତ୍ତି ସାରିଆ ଓ ଭଗିଆ ବ୍ୟତୀତ ଆଉ କେହି ନୁହନ୍ତି । ବିଷ ବୃକ୍ଷର ଊନଚତ୍ୱାରିଂଶ ପରିଚ୍ଛେଦରେ ନଗେନ୍ଦ୍ର ଚେତନାହତ ଅବସ୍ଥାରେ ସ୍ୱର୍ଗରେ ରତ୍ନ ସିଂହାସନରେ ବସିଥିବା ସୂର୍ଯ୍ୟମୁଖୀଙ୍କୁ ଦେଖିବା ସଙ୍ଗେ ସଙ୍ଗେ ନିଜେ ଅସୁରଙ୍କ ଦ୍ୱାରା ବେତ୍ରାଘାତ ପାଇଛନ୍ତି ଓ ଅନ୍ୟାନ୍ୟ ଭୟଙ୍କର ଦୃଶ୍ୟ ଦେଖିଛନ୍ତି । ଫକୀରମୋହନ ବରଂ ମଙ୍ଗରାଜଙ୍କ ସ୍ୱପ୍ନ ଦର୍ଶନ କ୍ଷେତ୍ରରେ ଏଇ ବର୍ଣ୍ଣନାକୁ ଅଧିକ ଗ୍ରହଣ କରିଛନ୍ତି ।

ବିଷବୃକ୍ଷରେ ସ୍ୱପ୍ନଦର୍ଶନ ଘଟଣା ବାରମ୍ବାର ଉଲ୍ଲେଖ କରଯାଇଥିବାରୁ ପାଠକମାନଙ୍କୁ ବିଶେଷ ଆକୃଷ୍ଟ କରେନା । ବାଲ୍ୟ ବିଧବାଙ୍କ ଜୀବନରେ ଯେଉଁ ଚାରିତ୍ରିକ ସ୍ଖଳନ ଦେଖା ଦେଉଥିଲା ତାହା ଉଭୟ ଶିଳ୍ପୀଙ୍କ ଲେଖନୀରେ ସ୍ଥାନ ପାଇଛି । ବିଷ ବୃକ୍ଷର ଶ୍ରୀମତୀ ଓ ଛ'ମାଣ ଆଠଗୁଣ୍ଠର ମଗୁଆ ହେଉଛନ୍ତି ସମାଜର ଦୁଇଟି ଦୃଷ୍ଟାନ୍ତ ମାତ୍ର ।

ବିଷବୃକ୍ଷର ଅଷ୍ଟମ ପରିଚ୍ଛେଦରେ କୁନ୍ଦନନ୍ଦିନୀର ବିବାହ ପ୍ରସଙ୍ଗ ବର୍ଣ୍ଣନା କରିବାକୁ ଯାଇ ଔପନ୍ୟାସିକ କୁହନ୍ତି— "ଚିରକାଳେର ପ୍ରଥା ଆଛେ ଯେ ନାୟିକାର ସଙ୍ଗେ ଯାହାର ପରିଣୟ ହୟ, ସେ ପରମ ସୁନ୍ଦର ହଇବେ, ସର୍ବଗୁଣେ ଭୂଷିତ, ବଡ଼ ବୀର ପୁରୁଷ ହଇବେ ।" ଛ'ମାଣ ଆଠଗୁଣ୍ଠରେ ଚମ୍ପାର ରୂପ ବର୍ଣ୍ଣନା ପ୍ରସଙ୍ଗରେ ଲେଖକ କୁହନ୍ତି— "ଗ୍ରନ୍ଥସ୍ଥ ନାୟକ ନାୟିକାମାନଙ୍କ ରୂପଗୁଣ ବର୍ଣ୍ଣନା କରିବାକୁ ଲେଖକମାନେ ସାହିତ୍ୟ ଆଇନ ଅନୁସାରେ ବାଧ୍ୟ ।" ପୁଣି ଦଶମ ପରିଚ୍ଛେଦରେ ଭଗିଆ ଆଉ ସାରିଆଙ୍କ ଦାମ୍ପତ୍ୟ ଜୀବନରେ ପରିଚୟ ଦେବାକୁ

ଯାଇ ସେ କୁହନ୍ତି "ଯେବେ ଶୁଣିବେ ଫଲଣା ଜମିଦାର, ହାତରେ ଢେର ଟଙ୍କା ଅଛି, ତକ୍ଷଣେ ବୁଝିଯିବେ, ସେ ରୂପବାନ, ଗୁଣବାନ, ଦାତା, ଦୟାଳୁ ଇତ୍ୟାଦି ଇତ୍ୟାଦି ।" ଉଭୟ ବକ୍ତବ୍ୟ ମଧ୍ୟରେ ପାର୍ଥକ୍ୟ ଥିଲେ ହେଁ ଏଠାରେ ଫକୀର-ମୋହନଙ୍କ ଉପରେ ବଙ୍କିମଚନ୍ଦ୍ରଙ୍କ ପ୍ରଭାବ ପଡ଼ିଥିବା ଲକ୍ଷ୍ୟ କରଯାଏ ।

ବିଷବୃକ୍ଷର ନବମ ପରିଚ୍ଛେଦରେ 'ହରିଦାସୀ ବୈଷ୍ଣବୀ' ଓ ଛ'ମାଣ ଆଠଗୁଣ୍ଠର ଷୋଡ଼ଶ ପରିଚ୍ଛେଦରେ 'ଟାଙ୍ଗୀ ମାଉସୀ' ଉପାଖ୍ୟାନ ଆଲୋଚନାର ଅପେକ୍ଷା ରଖେ । ଦେବେନ୍ଦ୍ର ଦତ୍ତ କୁନ୍ଦର ପ୍ରେମରେ ପଡ଼ି ହରିଦାସୀ ବୈଷ୍ଣବୀ ବେଶରେ ଆସିଛି କୁନ୍ଦକୁ ଭେଟିବାକୁ । ଚମ୍ପା ଟାଙ୍ଗୀମାଉସୀ ବେଶରେ ବାଘସିଂହ ଘରେ ଅଗ୍ନି ସଂଯୋଗ କରିବାକୁ ଆସିଛି । "ବୈଷ୍ଣବୀ ଗେଲେ ସ୍ତ୍ରୀ ଲୋକେର ଅନେକକ୍ଷଣ କେବଲ ବୈଷ୍ଣବୀର ପ୍ରସଙ୍ଗ ଲଇୟାଇ ରହିଲ । ପ୍ରଥମେ ତାହାର ବଡ଼ ସୁଖ୍ୟାତି ଆରମ୍ଭ ହଇଲ । ପରେ କ୍ରମେ ଏକଟୁ ଖୁଁତ ବାହିର ହଇତେ ଲାଗିଲ । ବିରଜ ବଲିଲ, "ତା ହୌକ, କିନ୍ତୁ ନାକଟା ଏକଟୁ ଋପା," ତଖନ ବାମା ବଲିଲ, "ରଙ୍ଗଟା ବାପୁ ବଡ଼ ଫେଁକାସେ ।" ତଖନ ଚନ୍ଦ୍ରମୁଖୀ ବଲିଲ "ଚୁଲ ଗୁଲେ ଯେନ ଶଣେରଦଡ଼ି ।" ତଖନ ଗୁଁଏା ବଲିଲ "କପାଲଟା ଏକଟୁ ଉଁଚୁ ।" କମଲ ବଲିଲ "ଠୌଁଟ ଦୁଖାନା ପୁରୁ ।" ହାରଣୀ ବଲିଲ "ଗଡ଼ନଟା ବଡ଼ କାଟ କାଟ ।" ପ୍ରମଦା ବଲିଲ "ମାଗୀର ବୁକେର କାଛଟା ଯେନ ଯାତ୍ରାର ସଖୀ ଦେର ମତ, ଦେଖେ ଘୃଣା କରେ ।" ଏଇ ରୂପେ ସୁନ୍ଦରୀ ବୈଷ୍ଣବୀ ଶୀଘ୍ରଇ ଅଦ୍ୱିତୀୟ କୁତ୍ସିତ ବଲିୟା ପ୍ରତିପନ୍ନ ହଇଲ । ତଖନ ଲଲିତା ବଲିଲ "ଦେଖତେ ଯେମନ ହଉକ, ମାଗୀ ଗାୟ ଭାଲ ।" ତାତେଓ ନିସ୍ତାର ନାଇ । ଚନ୍ଦ୍ରମୁଖୀ ବଲିଲ, "ତାଇ ବା କି, ମାଗୀର ଗଲା ମୋଟା ।" ମୁକ୍ତକେଶୀ ବଲିଲ "ଠିକ୍ ବୋଲେଛ– ମାଗୀ ଯେନ ଷାଁଡ଼ ଡାକେ ।"

ଟାଙ୍ଗୀ ମାଉସୀ ବାଘ ସିଂହ ଘରୁ "ବିଦାୟ ହୋଇଗଲା ବାଦ ତାଙ୍କ ରୂପଗୁଣ ବିଷୟରେ ଢେର ସମାଲୋଚନା ହେଲା । ସମସ୍ତେ ପ୍ରଶଂସା କଲେ ; କେହି ରୂପର, କେହି ଗୁଣର, କେହି ଅଳଙ୍କାରର, କେହି ପାଚିଲା କଦଳୀର । ମାତ୍ର ମାଣିକ କହିଲା "ହେଲା ହଁ ; ବଡ଼ ଲୋକ ଘର, ରୂପଟା ଏକା ସେ ରୂପ ନୁହେଁ, ଛାମୁ ଦାନ୍ତ ଦୁଇଟା ବାହାଡ଼ା, ଗାଲ ଦୁଇଟା ଉଆଉ ଫଡ଼ା ପରି ।" ହଗୁରି ମା କହିଲା "କଥାଟାରେ ଏକା ମିଠା ନାହିଁ, ଠୋସ ଠୋସ ।" ମୁତୁ ରୀ ମା କହିଲା

"ଗୁଲିଟା ଧସ ଧସ୍ ।" ଶଂକ୍ରି କହିଲା "ହଁ ହସଟା ଫସ ଫସ ।" ଶୁକ୍ରି କହିଲା, "ଗୁହାଣୀଟା କସମସ ।" ମୁହୂର୍ତ୍ତ ମଧ୍ୟରେ 'ଏକେହି ଗୁଣରେ ଦୋଷ ସନ୍ନିପାତ' ହୋଇ ଗଲା ।" ଫକୀରମୋହନ କେଉଁ ପରିମାଣରେ ବଙ୍କିମଙ୍କ ଦ୍ୱାରା ଅନୁପ୍ରାଣିତ ଓ ପ୍ରଭାବପୁଷ୍ଟ ହୋଇଥିଲେ ଉର୍ଦ୍ଦିଷ୍ଟ ଉଦାହରଣରୁ ଜଣାପଡେ ।

ମଦ୍ୟପୀ ଦେବେନ୍ଦ୍ରର ଆସର ପ୍ରକୋଷ୍ଠ ଓ ମଦ୍ୟପୀ ଦିଲଦାର୍ ମିଆଁର ମଜଲିସ ପ୍ରକୋଷ୍ଠ ମଧ୍ୟରେ ସାମଞ୍ଜସ୍ୟ ଥିଲେ ହେଁ ଫକୀରମୋହନଙ୍କ କଲମରେ ଦିଲଦାର ମିଆଁର ପ୍ରକୋଷ୍ଠର ବର୍ଣ୍ଣନା ଅଧିକ ପ୍ରାଣବନ୍ତ ହୋଇ ଉଠିଛି ।

ଉଭୟ ଶିଳ୍ପୀ ଘଟଣା ବିନ୍ୟାସକୁ ସୁନ୍ଦର ଓ ବର୍ଣ୍ଣନାକୁ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ କରିବାକୁ ଆବଶ୍ୟକ ସ୍ଥଳ ବିଶେଷରେ ବହୁ ଅନାବଶ୍ୟକ ଚରିତ୍ରର ମଧ୍ୟ ଅବତାରଣା କରିଛନ୍ତି । ଛ'ମାଣ ଆଠଗୁଣ୍ଠରେ ନାୟିକା ଚମ୍ପା ଯେଉଁ ପ୍ରଭାବ ବିସ୍ତାର କରିଛି ବିଷବୃକ୍ଷରେ ହୀରା ସେହି ପ୍ରଭାବ ବିସ୍ତାର କରିପାରି ନାହିଁ କି ସେ ଚମ୍ପାର ସମକକ୍ଷ ଚରିତ୍ର ହୋଇ ପାରିନାହିଁ । ହୀରାର ଉପସ୍ଥିତି ଅଗ୍ରଗତି ଓ ପରିଣତି ସାମଞ୍ଜସ୍ୟ ବିହୀନ । ଚମ୍ପା ଭାରତୀୟ ଉପନ୍ୟାସ ସାହିତ୍ୟରେ ଏକ ସଫଳ ଅପ୍ରତିଦ୍ୱନ୍ଦୀ ଓ ଅନବଦ୍ୟ ଚରିତ୍ର । ଚମ୍ପାକୁ ଫକୀରମୋହନଙ୍କ ପ୍ରଥମ ସ୍ତ୍ରୀ ଓ ସାଆନ୍ତାଣୀଙ୍କୁ ଦ୍ୱିତୀୟ ସ୍ତ୍ରୀର ମଡେଲ କୁହାଯାଇ ପାରେ ସେଇଭଳି ସୂର୍ଯ୍ୟମୁଖୀ ଓ କୁନ୍ଦନନ୍ଦିନୀ ହେଉଛନ୍ତି ଯଥାକ୍ରମେ ବଙ୍କିମ ଚନ୍ଦ୍ରଙ୍କର ପତ୍ନୀ ଓ କନ୍ୟାର ମଡେଲ ।

ବିଷବୃକ୍ଷର ଷୋଡ଼ଶ ପରିଚ୍ଛେଦରେ କୁନ୍ଦନନ୍ଦିନୀ ପୁଷ୍କରିଣୀରେ ଆତ୍ମହତ୍ୟା କରିବାକୁ ଉଦ୍ୟମ କରିଛି ଏବଂ ଛ'ମାଣ ଆଠଗୁଣ୍ଠର ଦ୍ୱାବିଂଶ ପରିଚ୍ଛେଦରେ ଗୋବିନ୍ଦା କର୍ତ୍ତୃକ ଚମ୍ପାକୁ ହତ୍ୟା କରାଯାଇଛି । ଏଠାରେ ପରିବେଶକୁ ଭୟଙ୍କର ଓ ଆତଙ୍କଜନକ କରିବାକୁ ଉଭୟ ଲେଖକ ଯତ୍ନଶୀଳ ହୋଇଛନ୍ତି । ଉଭୟ ଶିଳ୍ପୀ ଅନ୍ଧକାର, ବାଦୁଡ଼ି ଓ ଶୃଗାଳ ପ୍ରଭୃତି ଜୀବଜନ୍ତୁଙ୍କୁ ଉପଜୀବ୍ୟ କରିଛନ୍ତି ।

ବିଷବୃକ୍ଷର ସପ୍ତଦଶ ପରିଚ୍ଛେଦରେ ମାତାଲ ଅବସ୍ଥାରେ ଦେବେନ୍ଦ୍ରର ହୀରା ବନ୍ଦନା ଓ ଛ'ମାଣ ଆଠଗୁଣ୍ଠର ସପ୍ତମ ପରିଚ୍ଛେଦରେ ବୁଢ଼ୀମଙ୍ଗଳା ବନ୍ଦନାରେ ଯଥାକ୍ରମେ ଦୁଇ ଶିଳ୍ପୀ ବ୍ୟଙ୍ଗୋକ୍ତି ପ୍ରୟୋଗରେ ସମାନ ପାରଦର୍ଶିତା ପ୍ରଦର୍ଶନ କରିଥିଲେ ହେଁ ଫକୀରମୋହନଙ୍କ ବୁଢ଼ୀମଙ୍ଗଳା ବନ୍ଦନା ଅଧିକ ସାମାଜିକ

ମୂଲ୍ୟ ବହନ କରେ । କହିବା ବାହୁଲ୍ୟ ଯେ ଫକୀରମୋହନ ହୀଗବନ୍ଦନାକୁ ଅନୁସରଣ କରିଛନ୍ତି । ହୀଗବନ୍ଦନାରେ କୁହାଯାଇଛି—

ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।
ଯାଦେବୀ ବଟବୃକ୍ଷେଷୁ ଛାୟା ରୂପେଣ ସଂସ୍ଥିତା ॥
× × ×
ଯାଦେବୀ ଦତ୍ତଗୃହେଷୁ ହୀଗ ରୂପେଣ ସଂସ୍ଥିତା ॥
× × ×
ଯାଦେବୀ ପୁକୁରଘାଟେଷୁ ଚୁପୁଡ଼ି ହସ୍ତେନ ସଂସ୍ଥିତା ॥
× × ×
ଯାଦେବୀ ଘର ଦ୍ୱାରେଷୁ ଝାଁଟା ହସ୍ତେନ ସଂସ୍ଥିତା ॥
× × ×
ଯାଦେବୀ ମମଗୃହେଷୁ ପତ୍ନୀ ରୂପେଣ ସଂସ୍ଥିତା ॥

ଫକୀରମୋହନଙ୍କ ବୁଢ଼ୀମଙ୍ଗଳା ବନ୍ଦନା ସଂକ୍ଷିପ୍ତ, ସଂସ୍କାରମୁଖୀ ଓ ସମୟୋପଯୋଗୀ ।

"ଯା ଦେବୀ ବୃକ୍ଷ ମୂଳେଷୁ ଶିଳା ରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥
ମୃତ୍ତିକାଶ୍ଚ ଗଙ୍ଗାରୂଢ଼ା ବନ୍ଧ୍ୟାୟୋଃ ପୁତ୍ର ଦାୟିନୀ ।
ବାଡ଼ି ସଂହାରିଣୀ ଦେବୀ ନାରାୟଣୀ ନମୋସ୍ତୁତେ ॥"

ହୀଗ ନିଜଘରେ (ଊନବିଂଶ ପରିଛେଦ) ଅଳ୍ପନା ଦେଇଛି ପଦ୍ମଫୁଲ, ପକ୍ଷୀ, ଆଉ ଠାକୁର । ଉପନ୍ୟାସର ଚତୁଶ୍ଚତ୍ୱାରିଂଶ ପରିଛେଦରେ ନଗେନ୍ଦ୍ର ଓ ସୂର୍ଯ୍ୟମୁଖୀଙ୍କ ଶଯ୍ୟା ଗୃହର ପରିବେଶ ଅତ୍ୟନ୍ତ ଉନ୍ନତ ଓ ଶିଳ୍ପ ସମ୍ମତ ହୋଇଛି ଓ ପ୍ରାଚୀରରେ ବିଭିନ୍ନ ଚିତ୍ରକଳାର ବିସ୍ତୃତ ବର୍ଣ୍ଣନା ଦିଆ ହୋଇଛି । ଏହା ପାଠକ ମନରେ ବିରକ୍ତି ସଞ୍ଚାର କରେ । ଏଭଳି ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଙ୍ଗରାଜ କିମ୍ବା ଦିଇଦାର ମିଆଁଙ୍କ ଘରେ ଦେଖିବାକୁ ମିଳେ ନାହିଁ । ଚମ୍ପା ମଙ୍ଗରାଜଙ୍କ କାନ୍ଥ ଦିଆଲରେ ଆଙ୍କିଛି ବିବିଧ ରଙ୍ଗର ପଦ୍ମ, ବାନର, ରାକ୍ଷସ ଓ ରାମ-ରାବଣ ଯୁଦ୍ଧ ଚିତ୍ର ଇତ୍ୟାଦି ।

ବିଂଶ ପରିଚ୍ଛେଦରେ ହୀରା କୁହେ "କୁନ୍ଦ ହେଲେ ବୋକା ମେୟେ, ଆମି ହଲେମ ସେୟାନା ମେୟେ ; ଆମି କୁନ୍ଦକେ ଶୀଘ୍ର ବଶ କରିତେ ପାରିବ । ଛ'ମାଣ ଆଠଗଣ୍ଡରେ ଧୂର୍ତ୍ତା ଚମ୍ପା ବଶ କରିଛି ସାରିଆକୁ ।

ମଙ୍ଗରାଜଙ୍କ ଜୀବନରେ ଦୁଇଟି ନଦୀ ପ୍ରବାହିତ ହୋଇଥିଲା (ଅଷ୍ଟାଦଶ ପରିଚ୍ଛେଦ) । ଗୋଟିଏ ସର୍ପ କୁମ୍ଭୀର ସଙ୍କୁଳା, ଅନ୍ୟଟି ପୂତସଲୀଳା ଫଲ୍‌ଗୁ । ସେହି ନଦୀ ହେଉଛନ୍ତି ଚମ୍ପା ଓ ସାଆନ୍ତାଣୀ । କୁନ୍ଦର ଜୀବନରେ (ତ୍ରୟୋଦଶ ପରିଚ୍ଛେଦ) ଲଜ୍ଜାସ୍ରୋତ ଓ ପ୍ରଣୟ ସ୍ରୋତ ପ୍ରବାହିତ ହୋଇଛି । ନଗେନ୍ଦ୍ରଙ୍କ ଜୀବନ ସ୍ରୋତରେ ଦୁଇଜଣ ନାରୀଙ୍କର ଆବିର୍ଭାବ ଘଟିଛି । ସେମାନେ ହେଉଛନ୍ତି ସୂର୍ଯ୍ୟମୁଖୀ ଓ କୁନ୍ଦନନ୍ଦିନୀ । କୁନ୍ଦନନ୍ଦିନୀଙ୍କୁ ଭଲପାଇ, ବିବାହ କରି ଓ ସୂର୍ଯ୍ୟମୁଖୀଙ୍କୁ ଉପେକ୍ଷା କରି ନଗେନ୍ଦ୍ର ପ୍ରଚଣ୍ଡ ମାନସିକ ଯନ୍ତ୍ରଣା ଭୋଗିଛନ୍ତି ଓ ଅନୁତାପ କରିଛନ୍ତି (ଦ୍ୱାତ୍ରିଂଶତମ ପରିଚ୍ଛେଦ) । ସେହି ଯନ୍ତ୍ରଣା ମଙ୍ଗରାଜ ଭୋଗି-ଛନ୍ତି ଓ ଅନୁତାପ ଅନଳରେ ମଧ୍ୟ ଦଗ୍ଧ ହୋଇଛନ୍ତି (ଅଷ୍ଟାଦଶ ପରିଚ୍ଛେଦ) । ଫକୀରମୋହନ ଏଠାରେ ପ୍ରଭାବିତ ହୋଇଥିଲେ ହେଁ ଉଭୟ ଔପନ୍ୟାସିକ ନିଜ ନିଜ ପରିସର ମଧ୍ୟରେ ସଫଳତାର ପରିଚୟ ଦେଇଛନ୍ତି । ନଗେନ୍ଦ୍ରଙ୍କ ଦୃଷ୍ଟିରେ ସୂର୍ଯ୍ୟମୁଖୀ "ସମ୍ବନ୍ଧେ ସ୍ତ୍ରୀ, ସୌହାର୍ଦ୍ଦେ ଭ୍ରାତା, ଯତ୍ନେ ଭଗିନୀ, ଆପ୍ୟାୟିତ କରିତେ କୁଟୁମ୍ବିନୀ, ସ୍ନେହେ ମାତା, ଭକ୍ତିତେ କନ୍ୟା, ପ୍ରମୋଦେ ବନ୍ଧୁ, ପରାମର୍ଶେ ଶିକ୍ଷକ, ପରିଚର୍ଯ୍ୟାୟ ଦାସୀ ।" (ଅଷ୍ଟତ୍ରିଂଶତମ ପରିଚ୍ଛେଦ) । ଫକୀରମୋହନ କହନ୍ତି (ଅଷ୍ଟାଦଶ ପରିଚ୍ଛେଦ) "ଯେ ସ୍ତ୍ରୀ ଧର୍ମକାର୍ଯ୍ୟରେ ସହଧର୍ମିଣୀ— ପ୍ରାଣାଧିକ ସନ୍ତାନସନ୍ତତିଙ୍କ ଜନନୀ, ଯେ ସୁଖ ଦୁଃଖରେ ଏକମାତ୍ର ସମଭାଗିନୀ, ଯେ ସ୍ତ୍ରୀ ରୋଗରେ ଶୁଶ୍ରୂଷାକାରିଣୀ, ବିପଦରେ ମନ୍ତ୍ରୀ, ଶରୀର ରକ୍ଷାରେ ଧାତ୍ରୀ × × × ତାହାର ବିଚ୍ଛେଦ ଯନ୍ତ୍ରଣା ଅବଶ୍ୟ ଭୋଗ କରିବାକୁ ହେବ ।"

"ଜଗଦୀଶ୍ୱର ତାଁହାକେ (ନଗେନ୍ଦ୍ର) ସକଲ ସୁଖେର ଅଧିପତି କରିୟା ପୃଥିବୀତେ ପାଠାଇୟା ଛିଲେନ । କତରୂପ ; କତ ଐଶ୍ୱର୍ଯ୍ୟ ; ନିରୋଗ ଶରୀର, ସର୍ବବ୍ୟାପିନୀ ବିଦ୍ୟା, ସୁଶୀଲ ଚରିତ୍ର, ସ୍ନେହମୟୀ ସାଧ୍ୱୀ ସ୍ତ୍ରୀ ; ଏ ସକଲ ଏକ ଜନେର ଭାଗ୍ୟେ ପ୍ରାୟ ଘଟେନା । × × × ଅବିଚ୍ଛିନ୍ନ ସୁଖ, ଦୁଃଖେର ମୂଲ ; ପୂର୍ବଗାମୀ ଦୁଃଖ ବ୍ୟତୀତ ସ୍ଥାୟୀ ସୁଖ ଜନ୍ମେନା ।" (ଉନବିଂଶ ପରିଚ୍ଛେଦ) । ବିଷବୃକ୍ଷର ନାୟକ ନଗେନ୍ଦ୍ରଙ୍କ ବିଷୟରେ ବଙ୍କିମଚନ୍ଦ୍ର ଏ କଥା କହିଲା ବେଳେ

ଛ'ମାଣ ଆଠଗୁଣ୍ଠରେ ଫକୀରମୋହନ ଭଗିଆ ସାରିଆଙ୍କ ଦାମ୍ପତ୍ୟ ପ୍ରେମ ବିଷୟରେ କୁହନ୍ତି "ଆମ୍ଭମାନଙ୍କ ତନ୍ତୁବାୟ ଦମ୍ପତିର କୌଣସି ପଦାର୍ଥର ଅଭାବ ନଥିଲା । ପବିତ୍ର ଦାମ୍ପତ୍ୟ ସ୍ନେହ, ବିଶୁଦ୍ଧ ପ୍ରେମ, ଅତ୍ୟନ୍ତ ସନ୍ତୋଷ, ନିରବଚ୍ଛିନ୍ନ ସ୍ୱାସ୍ଥ୍ୟ, ସରଳ ଧର୍ମଭାବ ପ୍ରଭୃତି ସ୍ୱର୍ଗୀୟ" ଗୁଣର ସେମାନେ ଅଧିକାରୀ ଥିଲେ । ପରମେଶ୍ୱର "ନିରବଚ୍ଛିନ୍ନ ସୁଖବିଧି ମନୁଷ୍ୟ ଲଲାଟରେ ଲେଖି ନାହାନ୍ତି ।" (ଦଶମ ପରିଚ୍ଛେଦ) । ଉଭୟ ଲେଖକଙ୍କ ପତ୍ନୀ ପ୍ରେମର ଛାୟା ଏଠାରେ ପ୍ରତିଫଳିତ ହୋଇଥିଲେ ହେଁ ଫକୀରମୋହନ ବଙ୍କିମଚନ୍ଦ୍ରଙ୍କୁ ଅନୁସରଣ କରିବାର ଲୋଭ ସମ୍ବରଣ କରିପାରି ନାହାନ୍ତି ।

ମଙ୍ଗରାଜ ଘରର ଗୃହକର୍ତ୍ତ୍ରୀ ଚମ୍ପାର ପ୍ରାଧାନ୍ୟ ସହିତ ଦତ୍ତ ଘରର ହୀରାର ପ୍ରାଧାନ୍ୟର କେତେକାଂଶରେ ସାଦୃଶ୍ୟ ରହିଛି । ଛ'ମାଣ ଆଠଗୁଣ୍ଠରେ ଚମ୍ପା ବିଷୟରେ (ଷଷ୍ଠ ପରିଚ୍ଛେଦ) କୁହାଯାଇଛି "ଚମ୍ପା ମଙ୍ଗରାଜ ଘରେ ଦାସୀ କି ସାଆନ୍ତାଣୀ ବ୍ୟବହାର ଦ୍ୱାରା ବୁଝିବାର କାହାର ଶକ୍ତି ନାହିଁ । କେବଳ ଏତିକି ମାତ୍ର କହିପାରୁ ଯେ ମଙ୍ଗରାଜଙ୍କ ଉଆସ ମଧ୍ୟରେ ଚମ୍ପାର କ୍ଷମତା ସୀମାତୀତ । ଅଧିକ କ'ଣ, ସାଆନ୍ତାଣୀଙ୍କ କ୍ଷମତା ଠାରୁ ଢେର ବେଶି ।" ବଙ୍କିମଚନ୍ଦ୍ରଙ୍କ ଭାଷାରେ (ତ୍ରୟତ୍ରିଂଶ ପରିଚ୍ଛେଦ) "କୁନ୍ଦ ପ୍ରଭୁପତ୍ନୀ ହଇଯାଓ ଦାସୀର ନିକଟ ଦାସୀର ମତ ଥାକିତେ ଲାଗିଲ, ହୀରା ଦାସୀ ହଇଯାଓ ପ୍ରଭୁପତ୍ନୀର ପ୍ରଭୁ ହଇଯା ବସିଲ ।"

ମଦ୍ୟପୀ ଦେବେନ୍ଦ୍ର ଊର୍ଣ୍ଣନାଭ ମକ୍ଷିକା ପାଇଁ ଜାଲ ବିସ୍ତାର କଲାଭଳି (ଷଟତ୍ରିଂଶତମ ପରିଚ୍ଛେଦ) ହୀରା ପାଇଁ ଜାଲ ପାତିଥିଲା । ହୀରା ସହଜରେ ସେ ଜାଲରେ ଛନ୍ଦି ହୋଇଗଲା । ଏଇ ଜାଲ ପକାଇଥିଲେ ମଙ୍ଗରାଜ ସେଖ ଦିଲଦାର ମିଆଁ ପାଇଁ (ଅଷ୍ଟମ ପରିଚ୍ଛେଦ) । ମିଆଁ ବି ଜାଲରେ ପଡ଼ିଯାଇଥିଲେ । ଦିଲଦାରଙ୍କ ମଜଲିସ ଘରେ ମଧ୍ୟ ଊର୍ଣ୍ଣନାଭ ଜାଲ ବିସ୍ତାର କରିଥିଲା ମଶା ଓ ମାଛି ଧରିବାକୁ । ଫକୀରମୋହନ ଭିନ୍ନ ଭିନ୍ନ ଘଟଣାର ବର୍ଣ୍ଣନା କଲାବେଳେ ଏଇଭଳି ଅଜସ୍ର କ୍ଷୁଦ୍ର କ୍ଷୁଦ୍ର ଦୃଷ୍ଟାନ୍ତ ବଙ୍କିମଚନ୍ଦ୍ରଙ୍କ ଠାରୁ ଗ୍ରହଣ କରିଛନ୍ତି ।

ନଗେନ୍ଦ୍ର ପାଲିଙ୍କିରେ ବସି (ସପ୍ତତ୍ରିଂଶତମ ପରିଚ୍ଛେଦ) ସୂର୍ଯ୍ୟମୁଖୀଙ୍କୁ ଖୋଜିବାକୁ ଗଲାବେଳେ ପାଲିଙ୍କି ମଧ୍ୟସ୍ଥ ଯାତ୍ରୀଙ୍କ ସମ୍ପର୍କରେ ଜାଣିବାକୁ ଗ୍ରାମ୍ୟ ମହିଳାମାନଙ୍କ ମନରେ କୌତୂହଳ ସୃଷ୍ଟି ହୋଇଛି । ଲୋକମାନଙ୍କ ମଧ୍ୟରୁ କେହି ସାହେବ, କେହି ବୋହୂ, କେହି ଦାରେଗା, କେହି ପୁଣି ବରକନ୍ଦାଜ ଆସିଛନ୍ତି

ବୋଲି କରିଛନ୍ତି । ଛ'ମାଣ ଆଠଗୁଣ୍ଠରେ ଷୋଡ଼ଶ ପରିଚ୍ଛେଦରେ ଟାଙ୍ଗୀ ମାଉସୀ ଡୋଲୀରେ ରତନପୁର ଗାଁ ଦାଣ୍ଡରେ ଯିବା ବେଳେ ଅବିକଳ ସେହି କୌତୁହଳ ସୃଷ୍ଟି ହୋଇଛି ଏବଂ ଡୋଲ୍ୟାରୋହୀଙ୍କୁ କେହି ବୋହୂ, କେହି ସାହେବ ଓ କେହି ଜମାଦାର ହୋଇଥିବେ ବୋଲି କୁହା କୁହି ହେଉଛନ୍ତି ।

ବିଷବୃକ୍ଷର "ଗୋବିନ୍ଦପୁରରେ ଏକ ଜନ ଗଣ୍ଡାଲ ଚିକିତ୍ସା ବ୍ୟବସାୟ କରିତ । ସେ କେବଳ ଗଣ୍ଡାଲଦି ଇତର ଜାତିର ଚିକିତ୍ସା କରିତ । ଚିକିତ୍ସା ବା ଔଷଧ କିଛୁଇ ଜାନିତ ନା—" ଛ'ମାଣ ଆଠଗୁଣ୍ଠର ଉପସଂହାରରେ ତିନିଜଣ ବୈଦ୍ୟ ଯଥା— ଶିବା ଚମାର, କାର୍ତ୍ତିକ ନାୟକ, ଗୋପିଆ ତନ୍ତୀ ଓରଫ ଗୋପୀ କବିରାଜ ପ୍ରଭୃତି ମଙ୍ଗରାଜଙ୍କ ଚିକିତ୍ସା କରିଥିବା କଥା ଉଲ୍ଲେଖ କରଯାଇଛି । ଏମାନଙ୍କ ମଧ୍ୟରେ ଅନ୍ତତଃ ଦୁଇଜଣ ନିମ୍ନବର୍ଗର ।

ନଗେନ୍ଦ୍ର ଦତ୍ତଙ୍କ ଦ୍ୱାରରକ୍ଷୀ (ଏକଚତ୍ୱାରିଂଶ ପରିଚ୍ଛେଦ) ସମ୍ପର୍କରେ ବାଳକମାନେ କୁହନ୍ତି-

"ରାମ ଚରଣ ଦୋବେ, ସନ୍ଧ୍ୟା ବେଲା ଶୋବେ,
ଚୋର ଏଲେ କୋଥାୟ ପାଲାବେ ?"

ପୁଣି— "ଲାଲଗୁଁଦ ସିଂ, ନାଚେ ଡିଙ୍ଗ୍ ମିଙ୍ଗ୍,
ଡାଲ ରୁଟିର ଯମ, କିନ୍ତୁ କାଜେ ଘୋଡ଼ାର ଡ଼ିମ ।"

ଛ'ମାଣ ଆଠଗୁଣ୍ଠରେ ପିଲାଗୁଡ଼ାକ ହାତତାଳି ଦେଇ (ଶେଷ ପରିଚ୍ଛେଦ) ନାଚି ନାଚି କୁହନ୍ତି "ଖବରଦାର, ଗୋବର୍ଦ୍ଧ ଜେନା ଚୌକିଦାର ।" ଉପନ୍ୟାସର ଏକାଦଶ ପରିଚ୍ଛେଦରେ ଫକୀରମୋହନ ବିଶେଷ ଭାବରେ ଗୋବର ଜେନାର ଚରିତ୍ର ବର୍ଣ୍ଣନା କରିଛନ୍ତି । ବଙ୍କିମଚନ୍ଦ୍ରଙ୍କ କବିତା ପଙ୍‌କ୍ତିକୁ ଅନୁସରଣ କରି ଫକୀରମୋହନ ଗୋବର ଜେନାର ଚରିତ୍ର ଚିତ୍ରଣ କଲାଭଳି ମନେହୁଏ । ଛ'ମାଣ ଆଠଗୁଣ୍ଠରେ ଗୋବର ବା ମୁକୁନ୍ଦା ବା ଆଉ କେତେକ କ୍ଷୁଦ୍ର ଚରିତ୍ରଗୁଡ଼ିକୁ ଫକୀର-ମୋହନ ଯେଭଳି କାରୁକାର୍ଯ୍ୟରେ ମଣ୍ଡିତ କରିଛନ୍ତି ସେଭଳି ବିଙ୍କିମଚନ୍ଦ୍ର କରିପାରି ନାହାନ୍ତି ।

ବଙ୍କିମ ସୀତାରାମ ଉପନ୍ୟାସରେ ଓଡ଼ିଶାର ଲଳିତଗିରିର ସୂକ୍ଷ୍ମ କଳା ଭାସ୍କର୍ଯ୍ୟର ବର୍ଣ୍ଣନା କରିବାକୁ ଯାଇ କବି କାଳିଦାସଙ୍କର ଯେଉଁ ଶ୍ଳୋକଟି ଉଦ୍ଧାର ତାହା ହେଉଛି—

"ତନ୍ୱୀ ଶ୍ୟାମା ଶିଖର ଦଶନା ପକ୍ୱବିମ୍ବା ଧରୋଷ୍ଠୀ,
ମଧ୍ୟେ କ୍ଷାମା ଚକିତହରିଣୀ ପ୍ରେକ୍ଷଣା ନିମ୍ନ ନାଭିଃ–"

ଏଇ ଶ୍ଳୋକର ପ୍ରଥମ ପାଦଟି ଅନୁସରଣ କରି ଫକୀରମୋହନ ବ୍ୟାଙ୍ଗାତ୍ମକ ଭଙ୍ଗୀରେ ଚମ୍ପାର ରୂପ ବର୍ଣ୍ଣନା କରିଛନ୍ତି । ଚମ୍ପାର ରୂପ ବର୍ଣ୍ଣନାରେ ସେ ଜଣେ ଭକ୍ତମାନର ଶିଳ୍ପୀର ପରିଚୟ ଦେଇଛନ୍ତି ।

ଉପନ୍ୟାସ ଭାବରେ ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ ସଫଳ ସୃଷ୍ଟି ଉଭୟ ଉପନ୍ୟାସର ନାଟ୍ୟରୂପ ହିଁ ସଫଳତାର ସ୍ୱାକ୍ଷରୀ । ବାସ୍ତବତା, ସାମାଜିକ ଓ ମାନବୀୟ ମୂଲ୍ୟବୋଧ ଦୃଷ୍ଟିରୁ ଛ'ମାଣ ଆଠଗୁଣ୍ଠର ସ୍ଥାନ ବିଷବୃକ୍ଷର ଉପରେ । ଛ'ମାଣ ଆଠଗୁଣ୍ଠର ରଚନା ପାଇଁ ଫକୀରମୋହନ ବଙ୍କିମଚନ୍ଦ୍ରଙ୍କ ନିକଟରେ ଋଣୀ ହେଲେ ହେଁ ସେ ବଙ୍କିମ ପ୍ରତିଭାକୁ ଅତିକ୍ରମ କରିଯାଇଛନ୍ତି । କେବଳ ସେତିକି ନୁହେଁ ନାଟକୀୟତା, ଶିଳ୍ପଗୌରବ ଓ ସାମାଜିକ ମୂଲ୍ୟବୋଧ ଦୃଷ୍ଟିରୁ ଛ'ମାଣ ଆଠଗୁଣ୍ଠ ହେଉଛି ଭାରତୀୟ ସାହିତ୍ୟ ଜଗତରେ ଏକ ଅବିସ୍ମରଣୀୟ କୀର୍ତ୍ତି ।



ପ୍ରିୟନାଥ ବେନାର୍ଜୀ ଷ୍ଟ୍ରୀଟ୍, କଲିକତା - ୭୦୦ ୦୦୯

# ଫକୀରମୋହନଙ୍କ କାବ୍ୟ-କବିତାରେ ଛନ୍ଦର ସ୍ୱରୂପ

ଡଃ ଅଶୋକ କୁମାର ରଥ

ଫକୀରମୋହନ ଉଭୟ ଦୀର୍ଘ କାବ୍ୟ ଓ କ୍ଷୁଦ୍ର କବିତାର ରଚୟିତା । ମହାଭାରତ, ରାମାୟଣ, ଶ୍ରୀମଦ୍ ଭଗବତ ଗୀତା, ଖିଳ ହରିବଂଶ, ଉପନିଷଦ ସଂଗ୍ରହ, ଛାନ୍ଦୋଗ୍ୟ ଉପନିଷତ୍, ସମବାୟ ଋଣ ପ୍ରସଙ୍ଗ, ବୌଦ୍ଧାବତାର କାବ୍ୟ, ଦୀର୍ଘ କୌତୁକ କାବ୍ୟ ଉତ୍କଳ ଭ୍ରମଣଂ ଓ ବିଭିନ୍ନ ଛୋଟ-ବଡ଼ ଆୟତନର୍ ସାତଟି କବିତା ସମଗ୍ରର ରଚୟିତା । ଏଗୁଡ଼ିକ ମଧ୍ୟରୁ ଅନୁବାଦ କାବ୍ୟ ଭାବରେ ରାମାୟଣ (୭ଟି କାଣ୍ଡ) ମହାଭାରତ (ଆଦି, ସଭା, ବନ ଓ ବିରାଟ ପର୍ବ) ଶ୍ରୀମଦ୍ ଭଗବତ ଗୀତା ଓ ଖିଳହରିବଂଶ ଆଦି ପ୍ରକାଶିତ ହୋଇଥିଲେ ହେଁ ରଚନାବଳୀରେ ସ୍ଥାନୀତ ହୋଇ ନାହିଁ । ସେଇପରି କ୍ଷୁଦ୍ର କବିତା ସମଗ୍ର ମଧ୍ୟରୁ ପୁଷ୍ପମାଳା (୫୫ଟି କବିତା), ଅବସର ବାସରେ (୧୯୬ : ୭ ଭାଗରେ ବିଭକ୍ତ) ପୂଜାଫୁଲ (୨୬ଟି), ଧୂଳି (୩୩ଟିରୁ ଅଧିକାଂଶ ସନେଟ), ପରିଶିଷ୍ଟ କବିତାବଳୀ (୪୬ଟି) ପ୍ରଭୃତି ଗ୍ରନ୍ଥାବଳୀରେ ସ୍ଥାନିତ ହୋଇଥିବା ବେଳେ ଉପହାର ଓ ପ୍ରାର୍ଥନା କବିତା ସଂକଳନ ଦ୍ୱୟ ଗ୍ରନ୍ଥାବଳୀ ଭୁକ୍ତ ହୋଇ ନାହିଁ । ଗ୍ରନ୍ଥାବଳୀରେ ସ୍ଥାନପାଇ ନଥିବା ଏହି ପୁସ୍ତକ ଦ୍ୱୟର ଦୁଷ୍ପ୍ରାପ୍ୟତା ହେତୁ ଆଲୋଚ୍ୟ ନିବନ୍ଧ କେବଳ ମାତ୍ର ଗ୍ରନ୍ଥାବଳୀସ୍ଥ ଫକୀରମୋହନଙ୍କ ପଦ୍ୟ ରଚନାରେ ଛନ୍ଦର ସ୍ୱରୂପ ଭିତରେ ସୀମାବଦ୍ଧ ।

୧

ଛନ୍ଦର ସ୍ୱରୂପ ଦ୍ୱିବିଧ– ରୀତି ଓ ରୂପ । ରୀତି ଛନ୍ଦର ଅନ୍ତଃ ପ୍ରକୃତିର ପରିଚ୍ଛାୟକ । ଯାହା ନିର୍ଣ୍ଣିତ ହୁଏ ପଦ୍ୟର ଧ୍ୱନି ସମାବେଶ ନୀତି ଦ୍ୱାରା । ରୂପ

ଛନ୍ଦର ବହିଃରଙ୍ଗ ପ୍ରକାଶକ । ଏହା ସୂଚିତ ହୁଏ ପର୍ବ ଓ ପଦସମାବେଶ ପ୍ରଣାଳୀ ଦ୍ୱାରା । ଏଇ ନିକଷରେ ପରୀକ୍ଷା କଲେ, ଫକୀରମୋହନଙ୍କ ଉପରୋକ୍ତ ସମସ୍ତ ପଦ୍ୟରଚନା ଗୋଟିଏ ପ୍ରକାର ଧ୍ୱନି ସମାବେଶ ନୀତି ଉପରେ ପ୍ରତିଷ୍ଠିତ । ତାହା ହେଲା ତଥାକଥିତ ଅକ୍ଷରବୃତ୍ତ ରୀତି । ଯାହାର ଆଧୁନିକ ବିଜ୍ଞାନ ସମ୍ମତ ପରିଭାଷା ମିଶ୍ର କଳାବୃତ୍ତ ଶୈଳୀ ।

କିନ୍ତୁ ଆକୃତି ଦୃଷ୍ଟିରୁ ଫକୀରମୋହନଙ୍କ ପଦ୍ୟ ସମଗ୍ର ବହୁରୂପ ବିଶିଷ୍ଟ । ଏଗୁଡ଼ିକରେ ମୋଟ ୨୫ ପ୍ରକାରର ଛନ୍ଦ-ରୂପ ଲକ୍ଷ୍ୟ କରଯାଇଥାଏ । ଆଲୋଚନାର ସୁବିଧା ନିମିତ୍ତ ଏଗୁଡ଼ିକୁ ସମ-ବିଷମ ଭେଦରେ ଦୁଇଟି ମୁଖ୍ୟ ବିଭାଗରେ ବିଭକ୍ତ କରଯାଇ ପାରେ । ସମବୃତ୍ତରେ ପଙ୍କ୍ତିର ଦୈର୍ଘ୍ୟ ନିୟମିତ ଭାବରେ ସମାନ ରହେ ଓ ଏହା ସ୍ୱାଧୀନ ଭାବରେ ଗଠିତ ହୁଏ । ପ୍ରାନ୍ତ ମେଳଯୁକ୍ତ ଦୁଇ ବା ଚାରି ପଙ୍କ୍ତିରେ ଏହାର ସ୍ତବକ ନିର୍ଦ୍ଧାରିତ ହୁଏ । ପକ୍ଷାନ୍ତରେ ବିଷମ ବୃତ୍ତରେ ପଙ୍କ୍ତିର ଦୈର୍ଘ୍ୟ ଆନୁକ୍ରମିକ ଭାବରେ ଅସମାନ ବା ତାରତମ୍ୟ ଘଟେ । ଜଟିଳ ପ୍ରାନ୍ତମେଳଯୁକ୍ତ ଦୁଇରୁ ସାତ ପଙ୍କ୍ତି ସମନ୍ୱୟରେ ଏହାର ସ୍ତବକ ନିର୍ମିତ ହୁଏ । ଏକାଧିକ ସମଛନ୍ଦର ସଂଯୋଜନ ଓ ସମିଶ୍ରଣରେ ଏହାର କଳେବର ଅଭିରଚିତ । ବର୍ତ୍ତମାନ ଫକୀର୍‌ମୋହନଙ୍କ ଦ୍ୱାରା ବ୍ୟବହୃତ ପଦ୍ୟ ରୂପାଦର୍ଶଗୁଡ଼ିକ ଆମର ବିଚାର୍ଯ୍ୟ ।

୩

ସମଛନ୍ଦ :

ଫକୀରମୋହନଙ୍କ ପଦ୍ୟରଚନାରେ ମୋଟ ଦଶ ପ୍ରକାର ସମଛନ୍ଦର ନିଦର୍ଶନ ମିଳେ । ସେଗୁଡ଼ିକ ମଧ୍ୟରେ (୧) ତ୍ରିମାତ୍ରିକ ପର୍ବ ବିଶିଷ୍ଟ ନବାକ୍ଷରୀ ଏକପଦୀ ; (ଉପନିଷଦ୍ ସଂଗ୍ରହ ; ବୌଦ୍ଧାବତାର କାବ୍ୟ : ୩, ୧୦, ୧୩, ୧୭ ସର୍ଗ, ଅବସର ବାସରେ : ଲ ୮, ୧୦୩, ୧୨୨, ୧୨୯, ୧୪୬, ୧୬୯ ସଂଖ୍ୟକ କବିତା ଓ ପରିଶିଷ୍ଟ କବିତାବଳୀର ପ୍ରଥମ କବିତା) (୨) ଚତୁର୍ମାତ୍ରିକ ପର୍ବ ଏକାଦଶାକ୍ଷରୀ ଏକପଦୀ (ପୁଷ୍ପମାଳା : ୩୬, ଅବସର ବାସରେ : ୩୧) ଚତୁର୍ମାତ୍ରିକ ପର୍ବ ଏକାଦଶାକ୍ଷରୀ ଏକପଦୀ (ବୌଦ୍ଧାବତାର କାବ୍ୟ ୭ମ ସର୍ଗ, ଅବସର ବାସରେର ୧୬ଟି କବିତା) ; (୪) ସପ୍ତମାତ୍ରିକ ପର୍ବ, ଦ୍ୱାଦଶାକ୍ଷରୀ ଏକପଦୀ (ବୌଦ୍ଧାବତାର କାବ୍ୟ : ୫-୮ ସର୍ଗ, ପୁଷ୍ପମାଳା : ୧୭, ୧୮, ୨୩, ୨୮

ଓ ୨୯ ପାଞ୍ଚଟି କବିତା, ଅବସର ବାସରେ ; ୩୨, ୮୦, ୯୩, ୯୪, ୧୦୫, ୧୦୮, ୧୧୭, ୧୮୬, ୧୮୭ ଓ ୧୮୮ ସଂଖ୍ୟକ ଦଶଟି କବିତା, ପୂଜାଫୁଲ : ୧୩ ସଂଖ୍ୟକ କବିତା) (୫) ଚତୁର୍ମାତ୍ରିକ ପର୍ବ ଚତୁର୍ଦ୍ଦଶାକ୍ଷରୀ ଦ୍ୱିପଦୀ ପୟାର (ଉତ୍କଳ ଭ୍ରମଣ, ଉପନିଷଦ୍ ସଂଗ୍ରହ, ବୌଦ୍ଧାବତାର କାବ୍ୟ : ୧୦ଟି ସର୍ଗ, ଛାନ୍ଦୋଗ୍ୟ ଉପନିଷଦ୍ : ୬ଟି ପରିଚ୍ଛେଦ, ପୁଷ୍ପମାଳା-୩୬ଟି କବିତା, ଅବସର ବାସରେ-୯୫ଟି କବିତା, ପୂଜାଫୁଲ-୧୬ଟି କବିତା, ଧୂଳି ୬ଟି କବିତା ଓ ପରିଶିଷ୍ଟ କବିତାବଳୀର ୨୮ଟି କବିତା) (୬) ତ୍ରିମାତ୍ରିକ ପର୍ବ ଷୋଡ଼ଶାକ୍ଷରୀ ଦ୍ୱିପଦୀ (ପୁଷ୍ପମାଳା-୩୩, ୩୫, ୪୧, ୪୫ ସଂଖ୍ୟକ ୪ଟି କବିତା, ଅବସର ବାସରେ ୧୮ ୭୭, ୭୮, ୧୫୬, ୧୮୪ ସଂଖ୍ୟକ ୫ଟି କବିତା, ପୂଜାଫୁଲ-୨୧, ଧୂଳି-୩ ଓ ପରିଶିଷ୍ଟ କବିତାବଳୀର ୩୮ ସଂଖ୍ୟକ କବିତା); (୭) ପଞ୍ଚମାତ୍ରିକ ପର୍ବ ଦ୍ୱିପଦୀ (ଏକମାତ୍ର ପୂଜାଫୁଲର ଜଳାପ୍ରାହାଡ଼ କବିତା) ; (୮) ଷଡ଼ମାତ୍ରିକ ପର୍ବ ଅଷ୍ଟ-ଦଶାକ୍ଷରୀ ଦ୍ୱିପଦୀ ମହାପୟାର (ଏକମାତ୍ର କବିତା ପରିଶିଷ୍ଟର ଉଦ୍‌ଭଟ କବିତା) ; (୯) ଷଡ଼ମାତ୍ରିକ ପର୍ବ ବିଂଶାକ୍ଷରୀ ତ୍ରିପଦୀ (ପୁଷ୍ପମାଳା-୩୮, ୪୮, ଅବସର ବାସରେ- ୨୮ଟି କବିତା, ପୂଜାଫୁଲ-୮ଟି କବିତା, ଧୂଳି ୩ଟି କବିତା, ପରିଶିଷ୍ଟ-୪ଟି କବିତା) ; (୧୦) ଚତୁର୍ମାତ୍ରିକ ପର୍ବ ତ୍ରିଂଶାକ୍ଷରୀ ଚଉପଦୀ (ଅବସର ବାସରେ-୩ଟି କବିତା) ।

ବିଷମ ଛାନ୍ଦ :

ପୂର୍ବ ସୂଚନା ଅନୁଯାୟୀ ଯେଉଁସବୁ ଛନ୍ଦ ଏକାଧିକ ସମଛନ୍ଦର ସଂଯୋଜନ ବା ସମ୍ମିଶ୍ରଣରେ ଗଢିଉଠେ ତାହା ବିଷମ ଛନ୍ଦ । ଏଗୁଡ଼ିକ ସମଛନ୍ଦ ଅପେକ୍ଷା ଜଟିଳ ରୂପାଦର୍ଶ ଭିତ୍ତିକ । ବିଶେଷ ଭାବରେ ମଧ୍ୟଯୁଗୀୟ ଓଡ଼ିଆ ପଦ୍ୟ ରଚନାରେ ଏଇସବୁ ଛନ୍ଦର ବ୍ୟବହାର ବହୁଳତା ଲକ୍ଷଣୀୟ । ପ୍ରାଚୀନ ଓଡ଼ିଶାରେ ସଙ୍ଗୀତ କଳାର ପ୍ରାବଲ୍ୟ ହେତୁ ଏଇସବୁ ଛନ୍ଦ ସଙ୍ଗୀତ କଳାର ଭିତ୍ତି ଉପରେ ପ୍ରତିଷ୍ଠିତ । ସୁତରାଂ ଏଗୁଡ଼ିକୁ ସଙ୍ଗୀତ କଳାମୂଳକ ଛନ୍ଦ କହିବା ଅନୁଚିତ ହେବ ନାହିଁ । ଆଧୁନିକତାର ପ୍ରାଙ୍ଗଣରେ ରହି ମଧ୍ୟ ଫକୀରମୋହନ ତାଙ୍କ କାବ୍ୟ କବିତାରେ ଏଇ ଧରଣର କିଛି ଛନ୍ଦ ରୂପ ସୃଷ୍ଟି କରିଥିବା ଲକ୍ଷ୍ୟ କରଯାଏ । ଯାର ସଂଖ୍ୟା ମାତ୍ର ପନ୍ଦର । ଏଗୁଡ଼ିକ ତଥାକଥିତ ଓ ପୂର୍ବପ୍ରଚଳିତ ଆହାରୀ, ଚିନ୍ତା-କେଦାର, ରସକୁଲ୍ୟା, ଆଷାଢ଼ଶୁକ୍ଳ, ଗୁର୍ଜରୀ, କାମୋଦୀ, କେଦାର ଓ ପାହାଡ଼ିଆ

କେଦାର ପ୍ରଭୃତି ନାଁରେ ପରିଚିତ । କିନ୍ତୁ ନାମକରଣଗତ ସାମଞ୍ଜସ୍ୟ ଥିବା ସତ୍ତ୍ୱେ ଏଗୁଡ଼ିକ ମଧ୍ୟରୁ କିଛି ଛନ୍ଦର ରୂପଗତ ଅସାମଞ୍ଜସ୍ୟ ସୁସ୍ପଷ୍ଟ । ଉଦାହରଣ ସ୍ୱରୂପ ଗୁଣ୍ଡିଚା ଛନ୍ଦକୁ ନିଆଯାଇପାରେ । ପ୍ରାଚୀନ ଗୁଣ୍ଡିଚା ଏପରିକି ମଧୁସୂଦନ ରାଓ ବ୍ୟବହୃତ ଗୁଣ୍ଡିଚା ଗଠନ ସହିତ ଫକୀରମୋହନଙ୍କ ଗୁଣ୍ଡିଚାର ପାର୍ଥକ୍ୟ ରହିଛି । ସେହିପରି ପାହାଡ଼ିଆ କେଦାର ଛନ୍ଦ କଥା ବିଗ୍ରହକୁ ନିଆଯାଇ ପାରେ । ପ୍ରାଚୀନ କବିତାରେ ପାହାଡ଼ିଆ କେଦାର ଏକ ବଳିଷ୍ଠ ଓ ସର୍ବଦୀର୍ଘ ଆୟତନ ବିଶିଷ୍ଟ ଛନ୍ଦ । ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ (୧ମ ଛାନ୍ଦ), ଦୀନକୃଷ୍ଣଙ୍କ ରସକଲ୍ଲୋଳ (୧୬ଶ ଛାନ୍ଦ) ଓ ବ୍ରଜନାଥ ବଡ଼ଜେନାଙ୍କ ସମର ତରଙ୍ଗରେ ବ୍ୟବହୃତ ଏଇ ଛନ୍ଦ ରୂପଟି ୧୨୯ ମାତ୍ରା ବିଶିଷ୍ଟ ହୋଇଥିବା ବେଳେ ଫକୀରମୋହନ ମାତ୍ର ୩୫ ମାତ୍ରାରେ ରଚନା କରିଛନ୍ତି । ଏଇଥିରୁ ଅନୁମାନ କରିହୁଏ ବିଷମାକୃତ ଛନ୍ଦ ଯୋଜନାରେ ସେ କେତେ ଦୁର୍ବଳ । ତେବେ ତଥାକଥିତ ଆଷାଢ଼ଶୁକ୍ଳ, ଆହାରୀ, କାମୋଦୀ ଓ ରସକୂଲ୍ୟା ଆଦିଛନ୍ଦକୁ ଯଥାଯଥ ଭାବରେ ଉପସ୍ଥାପନ କରିପାରିଛନ୍ତି ।

୪

ପାଶ୍ଚାତ୍ୟଛାନ୍ଦ ସନେଟ୍ :

ମୂଳରୁ କହି ରଖିବା ଉଚିତ୍ ସନେଟ ଏକ ଛନ୍ଦ ରୂପ ନୁହେଁ । ଏକ କାବ୍ୟ ରୂପ । ଯାହା ରାଧା-ମଧୁ ଫକୀରଙ୍କ ସମୟରେ ଆମ ସାହିତ୍ୟକୁ ଅନୁପ୍ରବେଶ କରିଛି । ସାମୟିକ ସୁଯୋଗ କ୍ରମେ ଫକୀରମୋହନ ଏଇ ନୂତନ ପାଶ୍ଚାତ୍ୟାଗତ କାବ୍ୟ ରୂପଟି ପ୍ରତି ଆକୃଷ୍ଟ ହୋଇଛନ୍ତି । ଏଇ କାବ୍ୟରୂପଟି ଓଡ଼ିଆରେ ଚତୁର୍ଦ୍ଦଶପଦୀ କବିତା ଭାବରେ ସର୍ବଜନାଦୃତ । କିନ୍ତୁ ବାସ୍ତବରେ ସନେଟ ଚତୁର୍ଦ୍ଦଶପଦୀ/ପାଦୀ ଅଥବା ଚତୁର୍ଦ୍ଦଶ ପଙ୍କ୍ତିକ ରଚନା ନୁହେଁ । ଚତୁର୍ଦ୍ଦଶ ପଙ୍କ୍ତି ସହିତ ଅଉକିଛି ଆନୁଷଙ୍ଗିକ ଗୁଣ ଏଇ କାବ୍ୟରୂପରେ ରହିବା ଏକାନ୍ତ ଆବଶ୍ୟକ । ସେଇ ଗୁଣ ମଧ୍ୟରୁ ପ୍ରଧାନ ହେଲା ଏହାର ପ୍ରାନ୍ତମେଳ । ଏହାର ଅସାଧାରଣ ପ୍ରାନ୍ତମେଳ ଓ ସ୍ତବକ ସଜାରୁ ବିଶିଷ୍ଟ ଛନ୍ଦସ୍ପନ୍ଦ ଜନ୍ମନିଏ । ସୁତରାଂ ବିଶେଷ ମେଳବନ୍ଧନ ଥାଇ ଏକ ପ୍ରଣାଳୀବଦ୍ଧ କବିତା ସନେଟ । ପ୍ରବହମାନତା ଦୃଷ୍ଟିରୁ କବିତାରେ ଦୁଇ ଧରଣର ଛନ୍ଦ ଉପଲବ୍ଧ । ଅମେଳ ପ୍ରବହମାନତା ଓ ସମେଳ ପ୍ରବହମାନତା । ସନେଟ ଏଇ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ । ଯେଉଁଥିରେ ସାଧାରଣ କବିତା ପରି ଭାବପ୍ରବାହ ଓ ଛନ୍ଦପ୍ରବାହ ସମାନ ଭାବରେ ଗତି କରନ୍ତି ନାହିଁ । ବିଦେଶାଗତ ଏଇ କାବ୍ୟରୂପଟିର ଯେଉଁସବୁ ଆନୁଷଙ୍ଗିକ ଗୁଣ ବା

ଗଠନଗତ ବିଧି ରହିବାକଥା ତାହା କେବଳ ଫକୀରମୋହନ ନୁହେଁ ଅଧିକାଂଶ ଓଡ଼ିଆ କବିଙ୍କ କ୍ଷେତ୍ରରେ ଲକ୍ଷ୍ୟ କରଯାଏ ନାହିଁ । ଫକୀରମୋହନ ଯେଉଁସବୁ ସନେଟଧର୍ମୀ କବିତା ରଚନା କରିଛନ୍ତି ସେଗୁଡ଼ିକ ତାଙ୍କର ଅବସର ବାସରେ (୨୩ଟି କବିତା), ପୂଜାଫୁଲ (୩ଟି କବିତା), ଧୂଳି (୨୨ଟି କବିତା) ଓ ପରିଶିଷ୍ଟ କବିତାବଳୀରେ (୩ଟି କବିତା) ଦେଖିବାକୁ ମିଳେ । ଏଗୁଡ଼ିକରେ ସନେଟର ଧର୍ମ ବା ଆଚରଣ ନଥିଲେ ମଧ୍ୟ ବସ୍ତୁତଃ ସେଇ ଗତାନୁଗତିକ ଧାରରେ କିଛି ଅନନ୍ୟ ସିଦ୍ଧି ପରିଲକ୍ଷିତ ହୁଏ ନାହିଁ । ତେବେ ମୌଳଗତ ଅସାଧାରଣ କବିକର୍ମ ନଥିଲେ ମଧ୍ୟ କିଛି କବିତାରେ ରୂପଗତ ଶୃଙ୍ଖଳା ବର୍ତ୍ତମାନ । ଏଗୁଡ଼ିକ କେବଳ ଚତୁର୍ଦ୍ଦଶ ପଙ୍‌କ୍ତିକ ନୁହନ୍ତି ଅନେକ ପରିମାଣରେ ସନେଟଧର୍ମୀ ।

ଫକୀରମୋହନ ମୁଖ୍ୟତଃ ଗଦ୍ୟକାର । ଗଦ୍ୟକାର କହିବାର ତାତ୍ପର୍ଯ୍ୟ, ସେଥିରେ ସେ ଯେତେ ସିଦ୍ଧହସ୍ତ ଓ ସେଇ ସିଦ୍ଧତା ଯୋଗୁଁ ପ୍ରଖ୍ୟାତ, କବିତାର ଛନ୍ଦ ବିଗ୍ରହରେ ସେଇ ସିଦ୍ଧହସ୍ତତା ଅବଶ୍ୟ ନଗଣ୍ୟ । ତଥାପି ଅନୁବାଦ କାବ୍ୟ-ଗୁଡ଼ିକୁ ବାଦଦେଲେ ଯେଉଁ କେତୋଟି ପଦ୍ୟ ସଂଗ୍ରହ ଆଲୋଚନାର ପରିସରଭୁକ୍ତ କରଯାଇଛି ସେଗୁଡ଼ିକରେ କେଉଁଠି ଛନ୍ଦ ଶୈଥିଲ୍ୟ ପରିଲକ୍ଷିତ ହୁଏ ନାହିଁ । ବିଶେଷଭବରେ ବିଷମଛନ୍ଦ ରଚନା କ୍ଷେତ୍ରରେ ପ୍ରାଚୀନ ଡାଞ୍ଚାରେ ସେ ପରିବର୍ତ୍ତନର ପ୍ରୟାସୀ । ଏହା ହିଁ ତାଙ୍କର ଛନ୍ଦମନସ୍କତାର ପ୍ରମାଣ ।



ବିଶ୍ୱଭରତୀ ଓଡ଼ିଆ ବିଭଗ
ଶାନ୍ତିନିକେତନ

# ମାର୍କସୀୟ ସାହିତ୍ୟତତ୍ତ୍ୱ : ଏକ ପ୍ରାଥମିକ ଆଲୋଚନା

ମୂଳରଚନା : ଶ୍ୟାମଲ କୁମାର ସରକାର
ଅନୁବାଦ : ନୀଳାଦ୍ରି ଭୂଷଣ ହରିଚନ୍ଦନ

ଐତିହାସିକ ବସ୍ତୁବାଦ, ଐତିହାସିକ ଓ ସାମାଜିକ ଗତିଶୀଳତାର ବ୍ୟାଖ୍ୟା ଓ ତାର କାରଣ ଅନୁସନ୍ଧାନ କରିଚାଲିଛି । ତେଣୁ ଶିଳ୍ପ ସାହିତ୍ୟ ପରି ସାମାଜିକ ମନୁଷ୍ୟର ଏତେ ଗୁରୁତ୍ୱପୂର୍ଣ୍ଣ ଆତ୍ମପ୍ରକାଶ ସମ୍ପର୍କରେ ମଧ୍ୟ ଐତିହାସିକ ବସ୍ତୁବାଦର ବ୍ୟାଖ୍ୟା, ବିଶ୍ଳେଷଣ ରହି ନପାରେ । ଐତିହାସିକ ବସ୍ତୁବାଦର ପଞ୍ଜିକୃତ୍ ମାର୍କସ ଓ ଏଙ୍ଗଲସ୍‌ଙ୍କର ବିଶେଷତଃ ମାର୍କସ୍‌ଙ୍କର ସାହିତ୍ୟ ସମ୍ପର୍କରେ ଅନେକ ବିଶ୍ଳେଷଣ ରହିଛି । ତେବେ ଅନେକ ହେଲେ ମଧ୍ୟ ସୁସମ୍ପର୍କ ତତ୍ତ୍ୱ ଗଢି ତୋଳିବା ଲାଗି ତାହା ଯଥେଷ୍ଟ ନୁହେଁ । ସେମାନଙ୍କ ମୃତ୍ୟୁ ପରଠାରୁ ଆଜିପର୍ଯ୍ୟନ୍ତ ଐତିହାସିକ ବସ୍ତୁବାଦର ଧାରରେ ଅନେକ ଚିନ୍ତାବିତ୍ ଅନେକ ଧାରରେ ଓ ଉପ-ଧାରରେ ଅନେକ ବକ୍ତବ୍ୟ ଉପସ୍ଥାପିତ କରିଛନ୍ତି । ତଥାପି ବୋଧହୁଏ ଏ କଥା କହିବାର ସମୟ ଏବେ ମଧ୍ୟ ଆସିନାହିଁ ଯେ ଗୋଟିଏ ଐତିହାସିକ ବସ୍ତୁବାଦୀ ସାହିତ୍ୟତତ୍ତ୍ୱ ପରିପୂର୍ଣ୍ଣ ରୂପ ଲାଭ କରିଛି । ଅନେକ ପ୍ରଶ୍ନ ସମାଧାନର ଅପେକ୍ଷାରେ ରହିଛି । ବିଶେଷ କରି ପ୍ରଚଳିତ ନନ୍ଦନତତ୍ତ୍ୱ ଓ ସମାଲୋଚନା ତତ୍ତ୍ୱର ଭୂମିରୁ ଅନେକ ଜଟିଳ ପ୍ରଶ୍ନ ଉଠାଇବା ସମ୍ଭବ । ଯାହାର ସଦୁତ୍ତର ବର୍ତ୍ତମାନ ଦେବା ସମ୍ଭବ ହେବ ନାହିଁ ।

ପ୍ରଚଳିତ ସାହିତ୍ୟତତ୍ତ୍ୱ କଥା ମନେରଖି ପ୍ରଥମେ ମୋଟାମୋଟି ଭାବେ ଇଙ୍ଗିତ ଦେଇ ରଖିବା ଭଲ । ଐତିହାସିକ ବସ୍ତୁବାଦୀ ସାହିତ୍ୟତତ୍ତ୍ୱ କି ଧରଣର

ଜିନିଷକୁ ଆଲୋଚନାର ପରିଧିରୁ ସିଧାସଳଖ ବାଦ ଦେବ ଏବଂ କି ଧରଣର ଜିନିଷକୁ ବିଶ୍ଳେଷଣର ବ୍ୟାପାର ହିସାବରେ ମାନିନେବ, କେଉଁ ମାନଦଣ୍ଡରେ ଗୋଟିଏ କବିତା ବା ନାଟକ ବା ଉପନ୍ୟାସର ସାହିତ୍ୟିକ ଉତ୍କର୍ଷ, ଅପକର୍ଷ ବିଗ୍ରହ କରିବ ବା ଏପରି ଦୁଇଟି ସାହିତ୍ୟ କର୍ମ ମଧ୍ୟରେ ଗୋଟିକର ଶ୍ରେଷ୍ଠତ୍ୱ ନିର୍ଣ୍ଣୟ କରିବ, ଏ ଧରଣର ବିଶ୍ଳେଷଣ ବସ୍ତୁବାଦୀ ସାହିତ୍ୟତତ୍ତ୍ୱର ବିଷୟ ନୁହେଁ । ମନସ୍ତାତ୍ତ୍ୱିକ ବା Feminist ବା Post-Structuralist ଧରଣର ଆଉ ଗୋଟିଏ ସମାଲୋଚନାତତ୍ତ୍ୱ ଲାଗି ଐତିହାସିକ ବସ୍ତୁବାଦ ଚିନ୍ତିତ ନୁହେଁ । ବରଂ କେଉଁ ଐତିହାସିକ ସାମାଜିକ ଅବସ୍ଥାନରେ କେଉଁ Ideologyର ଅମୋଘ ପ୍ରଭାବରେ ଗୋଟିଏ ବିଶେଷ ସମାଲୋଚନା ରୀତିର ଉଦ୍ଭବ ଓ ପ୍ରତିପତ୍ତି ସଂଘଟିତ ହେଲା, ତାହା ଅନୁସନ୍ଧାନ କରିବା ଏଇ ସାହିତ୍ୟ ତତ୍ତ୍ୱର ଗୋଟିଏ କର୍ତ୍ତବ୍ୟ ହୋଇ-ପାରେ । ତେବେ କୌଣସି ସାହିତ୍ୟକର୍ମ ବା ସମାଲୋଚନା ରୀତି ବା ସାହିତ୍ୟ ତତ୍ତ୍ୱର ପ୍ରକୃତି ବିଶ୍ଳେଷଣ କରିବାର ଚେଷ୍ଟା ତାହାକୁ ନଷ୍ଟ କରିଦେବାର ଅଭିସନ୍ଧି ନୁହେଁ । ସମାଲୋଚନା ବା ସାହିତ୍ୟ ତତ୍ତ୍ୱ ନାମରେ ଏତେ ଦିନ ଧରି ଯାହା ଯାହା ପ୍ରଚଳିତ, ଏକ ଧାଡ଼ରୁ ତାହାର ଭୁଲ ପ୍ରମାଣ କରିବା ଐତିହାସିକ ବସ୍ତୁବାଦର ଉଦ୍ଦେଶ୍ୟ ନୁହେଁ ।

ଏଇ ପ୍ରବନ୍ଧ ପରିସରରେ ମାତ୍ର ଛୋଟ ଗୋଟିଏ ବିଷୟ ଆଲୋଚନାରେ ନିଜକୁ ସୀମାବଦ୍ଧ ରଖିବ । କୌଣସି ଏକ ବିଶେଷ ସାହିତ୍ୟ କର୍ମକୁ ଐତିହାସିକ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀ ନେଇ କିପରି ଦେଖାଯାଏ, ତା ହିଁ ଆଲୋଚନା କରିବି । ଗୋଟିଏ ମୌଳିକ ଦୃଷ୍ଟିଭଙ୍ଗୀରୁ ଦେଖିଲେ ମଧ୍ୟ ବସ୍ତୁଟିକୁ ନାନା ଦିଗରୁ ନାନା ସମୟରେ ନିରୀକ୍ଷଣ କରଯାଇଛି ଅର୍ଥାତ୍ ନୂତନ ନୂତନ ଜଟିଳତା ଆଡ଼କୁ ଦୃଷ୍ଟି ଆକର୍ଷଣ କରଯାଇଛି ଏବଂ ପରବର୍ତ୍ତୀ ଚିନ୍ତାବିତ୍‌ମାନଙ୍କର ଦାନରେ ଆଲୋଚନାର କ୍ଷେତ୍ର କ୍ରମଶଃ ପ୍ରସାରିଲାଭ କରିଛି । ଏଇ ଛୋଟ ଆଲୋଚନାରେ ସେଇ ପ୍ରସାର-ଲାଭ ଦିଗଟି ତୋଳି ଧରଯିବ । ତେବେ ପ୍ରସାରଲାଭ ମାନେ ବିବର୍ତ୍ତନ ବା ପ୍ରଗତି, ଏ କଥା ମନେ କରିବା ଠିକ୍ ହେବ ନାହିଁ ।

ଏ କଥା ସମସ୍ତେ ଜାଣନ୍ତି ଯେ ବିଶେଷ ଭାବେ ସାହିତ୍ୟ ତତ୍ତ୍ୱ ଉପରେ ସ୍ୱତନ୍ତ୍ର ମାର୍କସ ଲିଖିତ କୌଣସି ପୁସ୍ତକ ନାହିଁ । ପ୍ରଧାନତଃ ଯେ ସମସ୍ତ ବହିରେ ସାହିତ୍ୟତତ୍ତ୍ୱ ସମ୍ପର୍କରେ ପ୍ରାସଙ୍ଗିକ ମାର୍କସୀୟ ମନ୍ତବ୍ୟ ବା ବିଶ୍ଳେଷଣ ଇତସ୍ତତଃ ରହିଛି (ଚିଠିପତ୍ର ବ୍ୟତୀତ), ସେଗୁଡ଼ିକ ହେଉଛି :

Economic and Philosophic, MSS 1844
The Holy Family, 1845
The German Ideology, 1845-46
The Class Struggles in Fance, 1848-50
The Eighteenth Brumaire of Louis Napoleon, 1852
Pre-Capitalist Economic Formation, 1858
A contribution to the critique of Political Econcmy 1859
Theories of Surplus value, 1861-62

Capital 1867 ଇତ୍ୟାଦି ଏଇ ସମସ୍ତ ଲେଖା ଭିତରେ ଯେଉଁ କେତୋଟି ବିଷୟ ପ୍ରଧାନ ହୋଇଉଠିଛି, ସାହିତ୍ୟରେ ବାସ୍ତବବାଦର ସମସ୍ୟା ବ୍ୟତୀତ ତା ଭିତରେ ରହିଛି, ଶ୍ରମ-ପ୍ରକ୍ରିୟା ମାଧ୍ୟମରେ ମନୁଷ୍ୟର ନାନ୍ଦନିକ ଚେତନାର ଉନ୍ମେଷ, ପଣ୍ୟତାନ୍ତ୍ରିକ ଉତ୍ପାଦନ ବ୍ୟବସ୍ଥାରେ ସର୍ବଗ୍ରାସୀ ବିଚ୍ଛିନ୍ନତା-ବୋଧରେ (Alienation), ମନୁଷ୍ୟର ଶିଳ୍ପବୋଧ କିପରି ବିନଷ୍ଟ ହେବାକୁ ବାଧ୍ୟ ଏବଂ ସାମ୍ୟବାଦୀ ବ୍ୟବସ୍ଥାରେ କିପରି ଭାବେ ତାର ପୁନରୁଦ୍ଧାର ସମ୍ଭବ ; ଅର୍ଥନୈତିକ, ରାଜନୈତିକ କ୍ଷେତ୍ରରେ ଶ୍ରେଣୀ ବିରୋଧିତାର ଚିହ୍ନ ଓ ପ୍ରଭାବ କିପରି ସାହିତ୍ୟରେ ରହିଯିବାକୁ ବାଧ୍ୟ ଇତ୍ୟାଦି । ମିଖାଇଲ ଲିଫ୍‌ଶିଟ୍‌ସ ବା ଷ୍ଟେଫାନ୍ ମୋରାଓସ୍କିଙ୍କ ପରି ଲେଖକମାନେ ମାର୍କସଙ୍କ ସାହିତ୍ୟତତ୍ତ୍ୱର ଉଲ୍ଲିଖିତ ବିଷୟର ଆଲୋଚନାରେ ୧୮୪୪ ସାଲରେ Economic and Philosophic MSSକୁ ଖୁବ୍ ପ୍ରାଧାନ୍ୟ ଦେଇଛନ୍ତି । ଅନ୍ୟ ଦିଗରେ ଆଲଥ୍ୟୁସାର (Althusser) ମନେ କରନ୍ତି ଯେ ଜୀବନର ଏଇ ପର୍ଯ୍ୟାୟରେ ମାର୍କସ ସମ୍ପୂର୍ଣ୍ଣ ଭାବେ କାଣ୍ଟ, ଫିଶ୍‌ଟେଙ୍କ ଭାବବାଦୀ ଚିନ୍ତା ବା ଫାୟାରବାକ (Fewerbach)ଙ୍କ ଚିନ୍ତାର ଆଚ୍ଛନ୍ନତାରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇପାରି ନାହାନ୍ତି । ଅବଶ୍ୟ ମାତ୍ର ୧୯୩୨ ସାଲରେ Economic and Philosopic MSSର ପାଣ୍ଡୁଲିପି ଉଦ୍ଧାର କରଯାଇଥିଲା । ଏହା ପୂର୍ବରୁ ପ୍ରାୟ ପଲ ଲଫାର୍କ (Paul Lafarque 1842-1911) ଜର୍ମାନୀର ଫ୍ରାନ୍‌ଜ ମେହରିଙ୍ଗ (Franz Mehring 1846-1919) ଏବଂ ଋଷିଆର ଜର୍ଜି ପ୍ଲେଖାନଭ Georgi Plekhanov 1856-1918) କେତେକ ପରିମାଣରେ ସଂକୀର୍ଣ୍ଣ ଓ ଖଣ୍ଡିତ ରୂପେ ମାର୍କସଙ୍କ ସାହିତ୍ୟତତ୍ତ୍ୱର ଆଲୋଚନା କରି ଚେଷ୍ଟା କରିଥିଲେ । ଶିଳ୍ପର ସମାଜ ଓ ଶ୍ରେଣୀ ନିର୍ଭରତା କଥା ଉଦ୍‌ଘାଟନ କରିବାକୁ ଯାଇ ଲଫର୍କ ମାଧ୍ୟମ ଭାବରେ ଶିଳ୍ପର ନିଜସ୍ୱତାର କଥା ଏକାବେଳକେ ଉପେକ୍ଷା କରିଥିଲେ ।

ମେରିଙ୍ଗ୍ ଅନ୍ୟ ଦିଗରେ ଶିଳ୍ପର ଆଙ୍ଗିକକୁ ପ୍ରାଧାନ୍ୟ ଦେବାକୁ ଯାଇ କାଣ୍ଟଙ୍କ ନନ୍ଦନତତ୍ତ୍ୱକୁ ଟାଣି ଆଣିଛନ୍ତି । ପ୍ଲେଖାଭେଜି ସମୟରୁ ମାର୍କସୀୟ ସାହିତ୍ୟତତ୍ତ୍ୱକୁ କେବଳ ସାହିତ୍ୟର ବିଷୟବସ୍ତୁ ଉପରେ ବିଶ୍ଳେଷଣ କରି ଏହାକୁ ଗୋଟିଏ ପୁରାପୂରି ସମାଜତାତ୍ତ୍ୱିକ ଉପାଦାନ ସଂଗ୍ରହର ମାଧ୍ୟମ ବୋଲି ବ୍ୟବହାର କରିବାର ପ୍ରବଣତା ପ୍ରସ୍ତୁତ ହେବାକୁ ଲାଗିଲା । ଶିଳ୍ପର ସାମାଜିକ-ଐତିହାସିକ ସମ୍ପର୍କ କଣ ଏବଂ ମାର୍କସୀୟ ଦୃଷ୍ଟିରେ ସାହିତ୍ୟତତ୍ତ୍ୱର ମୂଳ କେଉଁଠି ତାହା ଜାଣିବାକୁ ହେଲେ ଆମକୁ ଆରମ୍ଭ କରିବାକୁ ପଡ଼ିବ– A contribution to the critique of political Economy 1853 ପୁସ୍ତକର ବହୁ ପଠିତ, ବହୁ ଆଲୋଚିତ ମାର୍କସଙ୍କ ଭୂମିକାର ଅଶେଷ ଗୁରୁତ୍ୱ ସମ୍ପନ୍ନ କେତୋଟି ପଙ୍କ୍ତିରୁ ମାର୍କସ୍‌ଙ୍କ ନିଜ କଥାରୁ ଏଇ ପଙ୍କ୍ତି କେତୋଟିରେ ତାଙ୍କର ସମସ୍ତ ବକ୍ତବ୍ୟର ମୂଳସୂତ୍ର ଧରି ରଖାଯାଇଛି । ତା ମଧ୍ୟରେ କେତୋଟି ପ୍ରାସଙ୍ଗିକ ପଙ୍କ୍ତି ହେଉଛି ;

In the social production of their existence men inevitably enter into definite relations, which are independent of their will, namely, relations of productions appropriate to a given stage in the development of their material forces of production. The totality of these relations of production constitutes the economic structure of society, the real foundation on which arises a legal and political superstructure and to which correspond definite forms of social consciousness. The mode of production of material life conditions, the general process of social, political and intellectul life. It is not the consciousness of men that determines their existence, but their social existence that determines their consciousness.

ଏଇ ପରିସ୍ଥିତିରେ 'Definite forms of social consciousness' ବାକ୍ୟାଂଶଟି ଏଇ ଗୋଟିଏ ପାରାଗ୍ରାଫ୍‌ରେ ଆହୁରି କେତୋଟି ପଙ୍କ୍ତି ପରେ ମାର୍କସ 'The legal political, religious, artistic or philosophic- in short ideological forms ବୋଲି ଉଲ୍ଲେଖ କରିଛନ୍ତି । ଅର୍ଥାତ୍ ଆଇନ୍‌ଶାସ୍ତ୍ର, ରାଷ୍ଟ୍ରନୀତି, ଧର୍ମଶାସ୍ତ୍ର, ଦର୍ଶନ, ଶିଳ୍ପ ଆଦି ସମସ୍ତ ଜିନିଷକୁ ମାର୍କସ ସୁପର ଷ୍ଟ୍ରକଚରର Ideological ଅଂଶର ଅନ୍ତର୍ଭୁକ୍ତ କରିଛନ୍ତି ।

ସାମାଜିକ-ଐତିହାସିକ ବିନ୍ୟାସ ସମ୍ପର୍କରେ ମାର୍କସଙ୍କର ଏହି ବିବରଣଟି ସ୍ପଷ୍ଟତଃ ତୁଳନାତ୍ମକ । ଲୁଇ ଆଲଥୁସାର (Louis Althusser 1918-1988) ଆହୁରି ସ୍ପଷ୍ଟ କରି କହିଛନ୍ତି ଯେ ଗୋଟିଏ ପରିପୂର୍ଣ୍ଣ ସାମାଜିକ ଅବସ୍ଥାନକୁ ମାର୍କସ ଏକ ଦୋତାଲା ଘର ସହିତ ତୁଳନା କରିଛନ୍ତି । ଗୋଟିଏ ଭିତ୍ତି ଉପରେ ଯେପରି ଘର ଠିଆ ହୋଇଥାଏ, ସେପରି ସମାଜ ବିନ୍ୟାସର ଭିତ୍ତିରେ ଅଛି ସେଇ ସମାଜର ଉତ୍ପାଦନ ଶକ୍ତିର ବିକାଶର ଠିକ୍ ତତ୍କାଳୀନ ରୂପ ଏବଂ ସେଇ ଅନୁଯାୟୀ ଉତ୍ପାଦନ କାର୍ଯ୍ୟରେ ନିୟୋଜିତ ସମାଜର ସମସ୍ତ ମନୁଷ୍ୟର ପାରସ୍ପରିକ ଶ୍ରେଣୀଗତ ସାମାଜିକ ସମ୍ପର୍କ । ଏଇ ଭିତ୍ତି ଉପରେ ଘରର ଏକ ମହଲା ସେଇ ଉତ୍ପାଦନ ସମ୍ପର୍କକୁ ରକ୍ଷା କରିବା ପାଇଁ ପ୍ରୟୋଜନୀୟ ଆଇନ୍‌ର ଓ ରାଷ୍ଟ୍ରର ଢାଞ୍ଚାଟି ଏବଂ ଦ୍ୱିତୀୟ ଉପର ମହଲା ହେଲା Ideological superstructure or forms of social consciousness ବା ଧର୍ମ, ଶିଳ୍ପ, ଦର୍ଶନ ଇତ୍ୟାଦି । ଏଇ ଦୋତାଲା ଘର ଉପମାର ଏକ ତାତ୍ପର୍ଯ୍ୟ ରହିଛି । ଘରର ଉପର ମହଲା ଯେପରି ଭିତ୍ତି ଛଡ଼ା ଗଢି ଉଠିପାରେ ନାହିଁ ବା ଠିଆ ହୋଇପାରେ ନାହିଁ, ସେପରି ଶିଳ୍ପ-ସାହିତ୍ୟ ଭଳି ଦୋତାଲା Ideological super structure ଅର୍ଥନୈତିକ ଭିତ୍ତି ଅର୍ଥାତ୍ ଉତ୍ପାଦନ ଶକ୍ତି ଓ ସମ୍ପର୍କ ଏବଂ ପ୍ରଥମ ମହଲା ଅର୍ଥାତ୍ ରାଜନୈତିକ, ରାଷ୍ଟ୍ରିକ super structure ସହିତ କାର୍ଯ୍ୟକାରଣ ସମ୍ପର୍କରେ ସମ୍ପର୍କାନ୍ୱିତ । ଗୋଟିଏ ପ୍ରକୃତିରେ ଅପର ପ୍ରକୃତି ନିର୍ମିତ ହେବାକୁ ବାଧ୍ୟ, ଅର୍ଥାତ୍ ଯେ କୌଣସି ସମୟରେ ମୌଳିକ, ଅର୍ଥନୈତିକ ଓ ରାଜନୈତିକ ଅବସ୍ଥାରୁ ସମ୍ପୂର୍ଣ୍ଣ ନିରପେକ୍ଷତା ଅବଲମ୍ବନ କରି ଶିଳ୍ପ ସାହିତ୍ୟର ସୃଷ୍ଟି ହୋଇପାରେ ନାହିଁ, ଶିଳ୍ପ ସାହିତ୍ୟର ସ୍ୱରୂପ ନିର୍ଣ୍ଣିତ ହୋଇପାରେ ନାହିଁ । ଐତିହାସିକ ବସ୍ତୁବାଦ ବ୍ୟତୀତ ଆଉ କୌଣସି ଦର୍ଶନ ବା ତତ୍ତ୍ୱ ଧର୍ମ, ଦର୍ଶନ, ସାହିତ୍ୟ ଇତ୍ୟାଦିର ଅର୍ଥନୈତିକ, ରାଜନୈତିକ ନିର୍ଭରତା ସ୍ୱୀକାର କରେ ନାହିଁ । ଏଇ ନିର୍ଭରତା-ତତ୍ତ୍ୱ ହିଁ ବସ୍ତୁବାଦୀ ସାହିତ୍ୟ-ତତ୍ତ୍ୱର ପ୍ରଧାନ ଏବଂ ମୌଳିକ ନିର୍ଦ୍ଦେଶକ ନୀତି । ଅବଶ୍ୟ ଏକ ସଙ୍ଗେ ଏଠାରେ ଉଲ୍ଲେଖ କରିବା ଦରକାର ଯେ ମାର୍କସ ମନେ କରନ୍ତି ଧର୍ମ, ଦର୍ଶନ, ଶିଳ୍ପ ସଂକ୍ରାନ୍ତ ଭାବନା ଏକାବେଳକେ ପରିପୂର୍ଣ୍ଣତା ଅର୍ଜନ କରିବାପରେ ଏକ ଧରଣର ଆପେକ୍ଷିକ ନିରପେକ୍ଷତା ଲାଭ କରେ । ଅର୍ଥାତ୍ କେତେକ ପରିମାଣରେ ନିଜ ଗତିରେ ଆଗେଇ ଯାଇପାରେ । ଏପରିକି ସାମାଜିକ ଚେତନାରେ ମଧ୍ୟ ଏପରି ପ୍ରଭାବ ବିସ୍ତାର କରିପାରେ ଯେ ସେହି ପ୍ରଭାବ ଅର୍ଥନୈତିକ, ରାଜନୈତିକ ଶକ୍ତିର ବିରୋଧୀ

ଶକ୍ତି ହୋଇ ସଂଘର୍ଷ କରିପାରେ । ତେବେ ଏଇ ନିରପେକ୍ଷତା ନିହାତି ଆପେକ୍ଷିକ —କୌଣସି ଅବସ୍ଥାରେ ମଧ୍ୟ Ideological super structureର ଶକ୍ତି ସାମାଜିକ ଅର୍ଥନୈତିକ ଷ୍ଟ୍ରକଚରର ଓ ସର୍ଜନ ଶକ୍ତିର ତୁଲ୍ୟ ମୂଲ୍ୟ ହୋଇପାରେ ନାହିଁ । ମାର୍କସଙ୍କର ଦ୍ୱିତୀୟ ଏକ ମନ୍ତବ୍ୟ ତତ୍ତ୍ୱ ଦିଗରୁ ଯଥେଷ୍ଟ ତାତ୍ପର୍ଯ୍ୟପୂର୍ଣ୍ଣ । କୌଣସି ସମାଜର ରାଜନୀତିକ ଆର୍ଥନୀତିକ ବିକାଶ ସହିତ ସେହି ସମାଜର ସାହିତ୍ୟ ଓ ଶିଳ୍ପ ବିକାଶର କୌଣସି ସମତାଗତ ବା ଆନୁପାତିକ ସମ୍ପର୍କ ରହି ନପାରେ । ମାର୍କସ ଏଥିରେ ଅବାକ୍ ହୋଇଛନ୍ତି, ବ୍ୟାଖ୍ୟା କରିପାରି ନାହାନ୍ତି । କାରଣ ପ୍ରାଚୀନ ଗ୍ରୀସ ପରି ଏକ ପଶ୍ଚାଦ୍‌ଗାମୀ ସମାଜରେ ଏତେ ସମୃଦ୍ଧ ଏକ ସାହିତ୍ୟ ଗଢି ଉଠିଲା ଯେ ପରବର୍ତ୍ତୀ ଯେ କୌଣସି ସମୟରେ, ଯେ କୌଣସି ସମାଜରେ ରାଜନୈତିକ-ଅର୍ଥନୈତିକ ବିକାଶର ଯେ କୌଣସି ପର୍ଯ୍ୟାୟରେ ଗ୍ରୀସର ଏଇ ସାହିତ୍ୟ ଗୋଟିଏ ଆକାଂକ୍ଷିତ ଆଦର୍ଶ ହୋଇ ରହିଯିବ ।

ଯାହା ହେଉ, ଆମେ ଆଲୋଚନାର ମୂଳକୁ ଫେରି ଆସି କହିପାରୁ ଯେ ମାର୍କସଙ୍କ ପରବର୍ତ୍ତୀ ସମୟରେ ତାଙ୍କର ପ୍ରଦର୍ଶିତ ପନ୍ଥାରେ ଯେଉଁମାନେ ତାତ୍ତ୍ୱିକ ଆଲୋଚନା କରିଛନ୍ତି, ସେମାନଙ୍କ ଅନୁସନ୍ଧାନର ବିଷୟ ହେଲା, ଶିଳ୍ପ ଓ ସାହିତ୍ୟ ସାମାଜିକ ଶକ୍ତି ସାପେକ୍ଷ । ତଥାପି ଠିକ୍ କିପରି ସମାଜ ସେଇ ଶିଳ୍ପର ଓ ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରେ ?

ସାଧାରଣ ଆଲୋଚନାରେ ଆମେ ସାହିତ୍ୟର ବିଷୟବସ୍ତୁ ଓ ସାହିତ୍ୟର ରୂପାବୟବର ଏପରି ଏକ ବିଭଜନ କଳ୍ପନା କରୁ, ଏପରି ମନେ କରିବା ସ୍ୱାଭାବିକ ଯେ ସାହିତ୍ୟର ବିଷୟବସ୍ତୁ ମଧ୍ୟରେ ସାମାଜିକ ପ୍ରଭାବ ବା ନିୟନ୍ତ୍ରଣର ପରିଚୟ ଲକ୍ଷ୍ୟ କରି ହେବ । କିନ୍ତୁ ଏକଥା ଆଂଶିକ ସତ୍ୟ ମାତ୍ର । ବିଷୟବସ୍ତୁ ମଧ୍ୟରେ ଯେଉଁ ସାମାଜିକ ନିୟନ୍ତ୍ରଣର ପରିଚୟ ମିଳେ ତାହା ଗୌଣ । ସେ ନିୟନ୍ତ୍ରଣର ମୁଖ୍ୟ ପରିଚୟ ସାହିତ୍ୟର ରୂପାବୟବର ନାନା ଧରଣର ବୈଶିଷ୍ଟ୍ୟ ; ଏ କଥାଟି ମାନି ନେଲେ ପରେ ସେଉଁ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼େ, ତା ହେଉଛି ବିଷୟ-ବସ୍ତୁ ବା ରୂପାବୟବ । ଯେ କୌଣସି ଦିଗରୁ ସାହିତ୍ୟ ସହିତ ସମାଜର ଅବିଚ୍ଛେଦ୍ୟ ସମ୍ପର୍କ ଥାଉ ନା କାହିଁକି ଏ ସମ୍ପର୍କ ସଞ୍ଚାରର ପଥ ନିଶ୍ଚୟ ସାହିତ୍ୟ-ସ୍ରଷ୍ଟାର ଚେତନା, ଏକଥା ଠିକ୍ । ସାହିତ୍ୟିକର ଚେତନାକୁ ପ୍ରଭାବିତ କରେ ସମାଜ । ଆଉ ସାହିତ୍ୟର ବିଷୟବସ୍ତୁ ଓ ରୂପାବୟବରେ ତାର ଅନିର୍ବାର୍ଯ୍ୟ ନିଦର୍ଶନ

ରହିଯାଏ । କିନ୍ତୁ ଏଇ ପ୍ରଭବ କିପରି କାର୍ଯ୍ୟ କରିଛି ଏବଂ କିପରି କାର୍ଯ୍ୟ କରୁଛି ବୋଲି ସାମାଜିକ ସମ୍ପର୍କର ବାହାନାରେ ବିଷୟବସ୍ତୁ ବା ରୂପାବୟବ ଗୋଟିଏ ଗୋଟିଏ ବିଶେଷ ଧରଣର ହେବାକୁ ବାଧ୍ୟ ହୋଇଛି ଏବଂ ଅନ୍ୟ ଧରଣର ହୋଇପାରି ନାହିଁ, ଏଇ ଅବଶ୍ୟମ୍ଭାବୀତାର ନିର୍ଣ୍ଣୟ କରିବା ସହଜ ନୁହେଁ । ସାହିତ୍ୟତତ୍ତ୍ୱ ସମ୍ପର୍କରେ ଐତିହାସିକ ବସ୍ତୁବାଦୀ ଆଲୋଚନା ପଦ୍ଧତି ବର୍ତ୍ତମାନ ଏପରି ସୂକ୍ଷ୍ମତା ଓ ନିଶ୍ଚୟତା ଅର୍ଜନ କରିବାକୁ ସମର୍ଥ ହୋଇନାହିଁ ଯେ, ସମାଜ ଓ ସାହିତ୍ୟର ପାରସ୍ପରିକ ସମ୍ପର୍କ ସନ୍ଦେହାତୀତ ସ୍ପଷ୍ଟତାରେ ନିର୍ଣ୍ଣୟ କରାଯିବ । ଏହାଠାରୁ ଗୁରୁତ୍ୱପୂର୍ଣ୍ଣ ଆଉ ଏକ ବିଷୟ ହେଲା ଏହାର ସାମାଜିକ ସମ୍ପର୍କ କେବଳ ରଚୟିତାର ଚେତନାର ମାଧ୍ୟମରେ ଓ ରଚନା ପ୍ରକ୍ରିୟାର ମଧ୍ୟଦେଇ ସାହିତ୍ୟ କର୍ମରେ ସଂଶ୍ଳିଷ୍ଟ ହୋଇଥାଏ, ତା ନୁହେଁ, ଯେ ସାହିତ୍ୟ ସମ୍ଭୋଗ କରନ୍ତି ସେ ଏକ ବିଶେଷ ସାମାଜିକ ଐତିହାସିକ ପରିସ୍ଥିତିରେ ସମ୍ଭୋଗ କରନ୍ତି । ଏବଂ ତା ଫଳରେ ତାଙ୍କର ସମ୍ଭୋଗ କ୍ରିୟାଟି ମଧ୍ୟ ଶିଳ୍ପବସ୍ତୁର ପ୍ରଭବରେ ଏକ ଧରଣର ସାମାଜିକ ପ୍ରକ୍ରିୟାରେ ପର୍ଯ୍ୟବସିତ ହୁଏ ।

ପ୍ରଥମ ମହାଯୁଦ୍ଧର ସମୟରୁ ଆରମ୍ଭ କରି, ବିଶେଷ କରି ଦ୍ୱିତୀୟ ମହାଯୁଦ୍ଧ ପରେ ୟୁରୋପରେ ମାର୍କସ ଧାରାରେ ଐତିହାସିକ ବସ୍ତୁବାଦର ଯେଉଁ ଚର୍ଚ୍ଚା ପ୍ରାୟ ସାତ ଦଶକର ଶେଷ ପର୍ଯ୍ୟନ୍ତ ଚାଲିଛି, ତାକୁ ନାମ ଦିଆଯାଇଛି Western Marxism । Western Marxismର ବେଶ୍ କେତେକ ଅଂଶ ଜଡ଼ିତ ହୋଇ ରହିଛି super structurର ନାନା ବିଶେଷତ୍ୱ ନେଇ ଆଲୋଚନା ଶିଳ୍ପ ଓ ସାହିତ୍ୟ ସମ୍ବନ୍ଧରେ ଆହୁରି ଅନ୍ତର୍ଦୃଷ୍ଟି ଲାଭର ଚେଷ୍ଟା ଭିତରେ । ସେ ସମସ୍ତ ଆଲୋଚନାର ଅନେକଗୁଡ଼ିଏ ଏଠାରେ ଅନୁଲ୍ଲେଖିତ ରହିଯିବ । ଯେତିକି ଉଲ୍ଲେଖ କରାଯିବା ସମ୍ଭବ, Teug Eagletonଙ୍କୁ ଅନୁସରଣ କରି ତାହାକୁ ଦୁଇଟି ପ୍ରଧାନ ଭାଗରେ ଭାଗ କରାଯାଏ । (୧) କୌଣସି ନା କୌଣସି ଗଠନର ଧାରଣା ଦେଇ ସାହିତ୍ୟ ଓ ସମାଜର ସମ୍ପର୍କକୁ ବୁଝିବାର ଚେଷ୍ଟା । (୨) ଶିଳ୍ପ-ସୃଷ୍ଟିର ପରିସ୍ଥିତିରେ ବିଶେଷ କରି Ideological କାରଣର ପ୍ରଭବ ପରିଣତି ହିସାବରେ ରୂପାବୟବର ବିଶିଷ୍ଟ ଧରଣ ଲାଭ । ପ୍ରଥମ ଭାଗରେ ଯେଉଁ ସମସ୍ତ ତାତ୍ତ୍ୱିକମାନଙ୍କର ନାମ ସ୍ମରଣୀୟ, ସେମାନେ ହେଲେ Georg Lukacs (ଗେୟର୍ଗ ଲୁକାଚ୍ : ୧୮୮୫-୧୯୭୧), Lucien Goldmann (ଲୁସିଆନ୍ ଗୋଲଡମ୍ୟାନ୍ : ୧୯୧୩-୧୯୭୦), Jean Paul Sartre (ଜାଁ ପାଁ ସାର୍ତ୍ତ :

୧୯୦୫-୧୯୮୦) ଏବଂ ଏମାନଙ୍କ ଛଡ଼ା ଆହୁରି ଅନେକେ ଯେଉଁମାନଙ୍କ ବକ୍ତବ୍ୟ ସମ୍ପର୍କରେ ଏହି ପ୍ରବନ୍ଧରେ ସାମାନ୍ୟ ମାତ୍ର ଉଲ୍ଲେଖ ପର୍ଯ୍ୟନ୍ତ କରଯିବ ନାହିଁ ।

ଆଉ ଦ୍ୱିତୀୟ ବିଭାଗର ଆଲୋଚନାରେ ଆମେ କେବଳ ମାତ୍ର Beatrolt Brecht (ବେର୍ଟୋଲ୍ଟ ବ୍ରେଶଟ ୧୮୯୮-୧୯୫୬), Louis Althuisser (ଲୁଇ ଆଲତୁସାର : ୧୯୧୮-୧୯୮୮) ଓ Piere Macherey (ପିୟାର ମାସ୍‌ରେ)ଙ୍କ ବକ୍ତବ୍ୟର ଉଲ୍ଲେଖ କରିବି । ଏ ସମସ୍ତ ନାମ ଭିତରେ କୌଣସି ଇଂରେଜ ଭଷାଭଷୀଙ୍କ ନାମ ନାହିଁ । କାରଣ ଐତିହାସିକ ବସ୍ତୁବାଦୀ ତତ୍ତ୍ୱ ଆଲୋଚନାରେ ଏମାନଙ୍କର କୌଣସି ସ୍ପଷ୍ଟ ଦାନ ନାହିଁ । ଏବଂ କ୍ରିଷ୍ଟୋଫାର କଡଓୟେଲଙ୍କ ପରି ପଥିକୃତ ଯୁଗେପର ଅନ୍ୟାନ୍ୟ ତାତ୍ତ୍ୱିକମାନଙ୍କ ନିକଟରୁ ଚିନ୍ତା ଦୃଷ୍ଟିରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ଥିଲେ । ସେମାନଙ୍କ ଲେଖା ବା ଆଲୋଚନା କେଉଁଠାରେ କୌଣସି ଗଭୀର ପ୍ରଭବ ପକାଇ ପାରିନାହିଁ । ଆଜିକାଲିର ଆଲୋଚନାରେ ତେଣୁ ସେମାନେ ଅନୁଲ୍ଲେଖିତ ।

ବର୍ତ୍ତମାନ ପ୍ରଥମେ ଗଠନ ସଂକ୍ରାନ୍ତ ଆଲୋଚନାକୁ ଆସିବା । ଇତିହାସର ଯେ କୌଣସି ମୁହୂର୍ତ୍ତରେ ଇତିହାସ ସଞ୍ଜାତ ଶକ୍ତିପୁଞ୍ଜ ସାମାଜିକ ମନୁଷ୍ୟର ଚେତନାକୁ ଗୋଟିଏ ବିଶେଷ ଷ୍ଟ୍ରକଚରର ଚେହେରା ଦିଏ । ଏଇ ଷ୍ଟ୍ରକଚର ହିଁ ଶିଳ୍ପବସ୍ତୁର ରୂପାୟବରେ ଏକ ଧରଣର ସଂରଚନାର ଚେହେରା ଆରୋପ କରେ । ସମାଲୋଚକର କାର୍ଯ୍ୟ ଏଇ ଗଠନର ସ୍ୱରୂପ ନିର୍ଦ୍ଧାରଣ କରିବା ଏବଂ କିପରିଭାବେ ଗୋଟିଏ ସ୍ତରର ସଂରଚନା ଆଉ ଗୋଟିଏ ସ୍ତରରେ ଆରୋପିତ ହୁଏ, ତାହା ନିରୂପଣ କରିବା । ଐତିହାସିକ ବସ୍ତୁବାଦୀ ସାହିତ୍ୟତତ୍ତ୍ୱ ସଂକ୍ରାନ୍ତ ଆଲୋଚନାରେ ସଂରଚନାକୁ ଅବଲମ୍ବନ କରି ତତ୍ତ୍ୱ ପ୍ରତିଷ୍ଠାକୁ ସବୁଠାରୁ ମୂଲ୍ୟବାନ ମନେ କରଯାଏ । ଅଥଚ ଏହା ମଧ୍ୟ ମନେ କରଯାଏ ଯେ ଯେଉଁ ଦାର୍ଶନିକଙ୍କ ପ୍ରଭବରୁ ମାର୍କସ ନିଜକୁ ଦୂରେଇ ଆଣିଥିଲେ । ସେଇ ହେଗେଲଙ୍କ ଦର୍ଶନର କେତେକ ପ୍ରଭବ ଏଇ ଗଠନ ସଂକ୍ରାନ୍ତ ସାହିତ୍ୟତତ୍ତ୍ୱର ଆଲୋଚନାରେ ରହିଯାଇଛି । ସମ୍ପୂର୍ଣ୍ଣ ସମାଜ-ନିରପେକ୍ଷ ଭବେ ସାହିତ୍ୟର ଉଦ୍ଭବ ସମ୍ଭବ ନୁହେ । ଅଥଚ ସୃଷ୍ଟିପରେ ସାହିତ୍ୟର ଗୋଟିଏ ସ୍ୱତନ୍ତ୍ର, ଗୋଟିଏ ବିଶିଷ୍ଟ ସତ୍ତା ଗଢିଉଠେ । ମାର୍କସଙ୍କ ଲେଖାରେ super structureର ସତ୍ତା ଓ ବିଶେଷତ୍ୱ ନେଇ ବିଶଦ ବିଶ୍ଳେଷଣ ନାହିଁ । ଅର୍ଥନୈତିକ ଭିତ୍ତି ସହିତ super structureର ବିଭିନ୍ନ ଉପାଦାନର ପାରସ୍ପରିକ

ସମ୍ପର୍କ ନିର୍ଣ୍ଣୟ କର୍ତ୍ତବ୍ୟ । ପରବର୍ତ୍ତୀ ବସ୍ତୁବାଦୀ ଚିନ୍ତାବିତ୍‌ମାନଙ୍କ ଉପରେ ହିଁ ଉତ୍ତରାଧିକାର ସୂତ୍ରରେ ଆସି ପଡ଼ିଛି । ଗୋଟିଏ ସାଧାରଣ ଜିନିଷ ସମସ୍ତଙ୍କ ଆଖିରେ ପଡ଼େ । ଇତିହାସ ବା ସାମାଜିକ ଅବସ୍ଥାର ବିଶେଷ ମୁହୂର୍ତ୍ତରେ ଅନେକ ତଥ୍ୟ ସିଦ୍ଧାନ୍ତଗୁଡ଼ିକ ଅଥବା ଇଚ୍ଛାକୃତ, ଅନିଚ୍ଛାକୃତ ବିକୃତିନେଇ ସାହିତ୍ୟିକ ବିଷୟବସ୍ତୁ ସହିତ ଏକାକାର ହୋଇଥାନ୍ତି । କିନ୍ତୁ ସାହିତ୍ୟିକ ବିଷୟବସ୍ତୁରୁ ସାମାଜିକ ଉପାଦାନକୁ ଅଲଗାକରି ବାହାର କରିନେଇ ଐତିହାସିକ ବସ୍ତୁବାଦ କୌଣସି କିଛି ପ୍ରତିଷ୍ଠା କରିବାକୁ ଚାହେଁନି । ବରଂ ଏ ବସ୍ତୁବାଦର ଉଦ୍ଦେଶ୍ୟ ହେଲା ଅନୁଧ୍ୟାନ କରିବା, କିପରି ଭାବେ ଐତିହାସିକ ସାମାଜିକ ଉପାଦାନ ସାହିତ୍ୟର ରୂପାବୟବ ନିର୍ଣ୍ଣୟରେ ଅନିର୍ବାର୍ଯ୍ୟ ଭୂମିକା ଅବଲମ୍ବନ କରେ । ଯେ କୌଣସି ସାମାଜିକ ଅଭିଜ୍ଞତା ଓ ଅଭିଜ୍ଞତାର ଗୋଟିଏ ଅଦ୍ୱିତୀୟ ଷ୍ଟ୍ରକଚର ପରି ଆବଶ୍ୟକ ଅଙ୍ଗାଙ୍ଗୀ ସମ୍ପର୍କକୁ ବୁଝିବାକୁ ଚେଷ୍ଟା କରିବା ମଧ୍ୟ ଐତିହାସିକ ବସ୍ତୁବାଦର ଗୋଟିଏ ଲକ୍ଷ୍ୟ । ଗୋଟିଏ ନୀତିରେ ଅଭିଜ୍ଞତା ଓ ଷ୍ଟ୍ରକଚରର ସମ୍ପର୍କ ସାହିତ୍ୟ ରୀତିରେ ମଧ୍ୟ ମିଳିବ । ବାସ୍ତବବାଦ (Realism) ସମ୍ପର୍କରେ Georg Lukacsଙ୍କର ବକ୍ତବ୍ୟ ଏହି ପ୍ରସଙ୍ଗରେ ସ୍ମରଣ କରଯାଏ । ବହିର୍ଜଗତ ଠିକ୍ ଯେପରି ପ୍ରକାଶିତ, ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାରେ ତାକୁ ଠିକ୍ ସେହିପରି ଭାବେ ଧରି ରଖିବାର ଚେଷ୍ଟା ବା ଉଦ୍ଦେଶ୍ୟ ବାସ୍ତବବାଦ ନୁହେଁ । ମନୁଷ୍ୟ ପ୍ରକୃତି ଓ ଇତିହାସ ଏବଂ ସେମାନଙ୍କର ସମନ୍ୱୟ ପରସ୍ପର ନିର୍ଭରଶୀଳ ଏକ ପରିପୂର୍ଣ୍ଣତା (Totality) ଗଢ଼ି ତୋଳେ । ସେଇ ପରିପୂର୍ଣ୍ଣତା କୌଣସି ବିଶେଷ ଐତିହାସିକ ଅବସ୍ଥାରେ ପ୍ରତିନିଧି ସ୍ୱରୂପ କୌଣସି ବିଶେଷ ବ୍ୟକ୍ତି ବା ବ୍ୟକ୍ତିବୃନ୍ଦଙ୍କ ମାଧ୍ୟମରେ (ଯେପରି ପ୍ରତିନିଧି ମାଧ୍ୟମରେ) ନିଜକୁ ପ୍ରକାଶ କରିପାରେ । ପ୍ରତିନିଧି ସ୍ୱରୂପ ବ୍ୟକ୍ତିତ୍ୱରେ ପ୍ରତିଫଳିତ ସେଇ ପରିପୂର୍ଣ୍ଣତା ଯେତେବେଳେ ସାହିତ୍ୟର ରୂପ ପରିଗ୍ରହ କରିପାରେ, ସେତେବେଳେ ସେଇ ସାହିତ୍ୟ ବାସ୍ତବବାଦୀ ସାହିତ୍ୟରେ ପରିଣତ ହୋଇପାରେ । ଆଧୁନିକ ୟୁରୋପୀୟ ସାହିତ୍ୟରେ ଅନେକ ସମୟରେ ଶିଳ୍ପୀ ସମାଜଠାରୁ ନିଜକୁ ବିଚ୍ଛିନ୍ନ ଅନୁଭବ କରି ଏକାନ୍ତ ଭାବେ ନିଜସ୍ୱ ବ୍ୟକ୍ତି ଚେତନାରେ ଆଶ୍ରୟ ଖୋଜନ୍ତି । ସମାଜ ସମ୍ପର୍କଚ୍ୟୁତ ସମ୍ପୂର୍ଣ୍ଣ ଭାବେ ବ୍ୟକ୍ତି ଚେତନାଶ୍ରୟୀ ଏଇ ଆଧୁନିକତାର ବିପରୀତ ମେରୁରେ ରହିଛି ବାସ୍ତବବାଦ । ଧନତାନ୍ତ୍ରିକ, ଅର୍ଥନୈତିକ ସମ୍ପର୍କ ମନୁଷ୍ୟକୁ ପୁରାପୂରି ବିଚ୍ଛିନ୍ନତା ଭିତରେ ଠେଲି ଦେବା ଆଗରୁ ଇତିହାସର ଏକ

ସନ୍ଧିକ୍ଷଣରେ ବାଲଜାକ ବା ସ୍କଟ୍ ବା ଟଲଷ୍ଟୟଙ୍କ ପରି ଔପନ୍ୟାସିକମାନେ ସାହିତ୍ୟରେ ସେମାନଙ୍କ ସମୟର ପ୍ରଚଳିତ ଧାରଣାର ଷ୍ଟ୍ରକଚର, ବ୍ୟକ୍ତି ଓ ଇତିହାସର ପାରସ୍ପରିକ ସମ୍ପର୍କକୁ ଧାରଣ କରି ରଖି ପାରିଛନ୍ତି । ଲୁକାଚଙ୍କ ମତରେ ଯେଉଁ ସାହିତ୍ୟ କର୍ମରେ ଗୋଟିଏ ଐତିହାସିକ ମୁହୂର୍ତ୍ତର ପ୍ରଧାନ ଅର୍ଥନୈତିକ ଓ ସାମାଜିକ ସମ୍ପର୍କ ବ୍ୟକ୍ତିଜୀବନ ଭିତରେ ବ୍ୟକ୍ତିମାନଙ୍କର କ୍ରିୟା ପ୍ରତିକ୍ରିୟା ମଧ୍ୟଦେଇ ଯେତେ ପରିପୂର୍ଣ୍ଣ ଭାବେ ଦେଖାଯିବ, ସେଇ ସାହିତ୍ୟ କର୍ମର ମୂଲ୍ୟ ହେବ ସେତେ ବେଶି ।

Lucien Goldman (ଲୁସିଆନ ଗୋଲଡମାନ) ସାମାନ୍ୟ ଭିନ୍ନ ରାସ୍ତାରେ ଅନ୍ୱେଷଣ କରିଛନ୍ତି, କିପରି ଅନିବାର୍ଯ୍ୟ ଭାବେ ସାହିତ୍ୟର ରୂପାବୟବ ସାହିତ୍ୟ ଓ ସମାଜର ପାରସ୍ପରିକ ସମ୍ପର୍କକୁ ଧାରଣ କରିଥାଏ । ଗୋଲଡମାନଙ୍କ ବିଶ୍ଳେଷଣରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ନିରୂପକ ହେଲା ବିଶ୍ୱଦୃଷ୍ଟି (Weltanscha-nunge) ଏବଂ ତାଙ୍କ ବିଶ୍ଳେଷଣରେ ସେ ମାର୍କସୀୟ ପନ୍ଥାରେ ନିର୍ଣ୍ଣୀତ ଶ୍ରେଣୀକୁ ଅନୁସନ୍ଧାନ କ୍ଷେତ୍ର ହିସାବରେ ନିର୍ବାଚନ ନ କରି ଶ୍ରେଣୀ ଅନ୍ତର୍ଗତ କୌଣସି ସ୍ୱଷ୍ଟ ଉପବିଭାଗକୁ ଅନୁସନ୍ଧାନର କ୍ଷେତ୍ର ହିସାବରେ ବାଛି ନେଇଛନ୍ତି । କୌଣସି ଶ୍ରେଣୀର ଅନ୍ତର୍ଗତ ଉପବିଭାଗରେ ଗୋଟିଏ ବିଶେଷ ବିଶ୍ୱଦୃଷ୍ଟି ଥାଏ ଏବଂ ସେଇ ଉପ-ବିଭାଗର ଅନ୍ତର୍ଗତ ଶ୍ରେଷ୍ଠ ଶିଳ୍ପୀ-ସାହିତ୍ୟିକଙ୍କ ସୃଷ୍ଟିରେ ସେଇ ବିଶ୍ୱଦୃଷ୍ଟିର ସବୁଠାରୁ ପରିଷ୍କାର ପ୍ରତିଫଳନ ଘଟେ । ଅର୍ଥାତ୍ ସେମାନଙ୍କର୍ ଶିଳ୍ପ ସୃଷ୍ଟିରେ ସେଇ ବିଶ୍ୱ-ଦୃଷ୍ଟି ରୂପ ପରିଗ୍ରହ କରେ । ସାହିତ୍ୟିକର ଚେତନାରେ ସେଇ ବିଶ୍ୱଦୃଷ୍ଟି ଗୋଟିଏ ଷ୍ଟ୍ରକଚର ଭିତରେ ଉପକରଣଗୁଡ଼ିକୁ ସନ୍ନିବେଶିତ କରେ ଏବଂ ସାହିତ୍ୟର ରୂପାବୟବରେ ସେଇ ଏକ ଗଠନ (Homology) ଅନିବାର୍ଯ୍ୟ ଭାବେ ଆରୋପିତ ହୁଏ । ଗୋଲଡମାନଙ୍କ ମତରେ ସମାଲୋଚକର କାର୍ଯ୍ୟ ଐତିହାସିକ ଷ୍ଟ୍ରକଚରର ନିର୍ଣ୍ଣୟ, ପରୀକ୍ଷା ଏବଂ ଏହାର ସାହିତ୍ୟରେ ପ୍ରବେଶ ଏବଂ ସାହିତ୍ୟିକର ସାମାଜିକ ଅବସ୍ଥାନ ବିଶ୍ଳେଷଣ କିପରି ଭାବରେ ଏଇ ଷ୍ଟ୍ରକଚରର୍ ଧାରଣା ଓ ଆରୋପ ଏବଂ ତାର ଅବସ୍ଥିତିରେ ଅବଶ୍ୟମ୍ଭାବୀ ସାମାଜିକ ପରିଣାମ । ଏକଥା ମନେ ହୋଇପାରେ ଯେ ଗୋଲଡମାନଙ୍କ ମତରେ ଗୋଟିଏ ଷ୍ଟ୍ରକଚର ଆଉ ଏକ ସ୍ତରରେ ପ୍ରତିଫଳିତ ହେଉଛି । କିନ୍ତୁ ଏଇ ମାନସିକ ପ୍ରକ୍ରିୟା ଯେତେ ଅନିବାର୍ଯ୍ୟ ହେଉ ନା କାହିଁକି ତାର ପ୍ରତିଫଳନ ବା ଚେତନାସ୍ତର ଦେଇ ପ୍ରତିସରଣର ବିସ୍ତାର ଲାଗି ଅବକାଶ ଅଛି । ଐତିହାସିକ ବ୍ୟକ୍ତିପୁଞ୍ଜ ଶ୍ରେଣୀଚେତନା ହିସାବରେ

ବ୍ୟକ୍ତିର ମନରେ ପ୍ରତିଫଳିତ ହୁଏ । ପୁଣି ସେଇ ଚେତନା ଶିଳ୍ପ ସୃଷ୍ଟିରେ ରୂପାବୟବରେ ପରିଣତ ହୁଏ । ସାହିତ୍ୟକୁ କେବେବେଳେ ହେଲେ ସମାଜର ସଂସ୍ପର୍ଶଠାରୁ ଭିନ୍ନ କରି ଦେଖାଯାଏ ନାହିଁ । ଏହି ଧାରଣାଟି ସ୍ୱଷ୍ଟ ହେଲେ ମଧ୍ୟ ଲୁକାଚ୍‌ଙ୍କ ଟୋଟାଲିଟି (Totality) ଧାରଣାକୁ ବୁଝିବା କଠିନ ।

ଏଥର ଦ୍ୱିତୀୟ ଧାରଣାଟିର ପରିଚୟ ନିଆଯାଉ । ନାନା ସାମାଜିକ ଅଭିଘାତର ଭିତର ଦେଇ ଶିଳ୍ପୀ ଯେଉଁ ଶିଳ୍ପରୂପ ସୃଷ୍ଟି କରେ ସେଇ ରୂପ ହିଁ ତାର ଚରମ ଓ ପରିଣତ ରୂପ ହୋଇପାରେ ନାହିଁ । ସମ୍ଭୋଗର ମୁହୂର୍ତ୍ତରେ ବାସ୍ତବ ପରିସ୍ଥିତି ସେଇ ଶିଳ୍ପକୁ ନାନା ଭବେ ରୂପାନ୍ତରିତ କରେ । ଗେମାର୍କ୍‌ସିକ୍ ଡ୍ରେ-ଚିନ୍ତାର ଶିଳ୍ପସୃଷ୍ଟି ଓ ଶିଳ୍ପ ସ୍ରଷ୍ଟାର ଧାରଣକୁ ନାକଚ କରିଦେଇ ନାଟ୍ୟକାର ବେର୍ଟୋଲ୍ଟ ବ୍ରେଶ୍‌ଟ ଶିଳ୍ପକୁ ଏକ ବିଶେଷ ଉତ୍ପାଦନ ପ୍ରଣାଳୀର ବ୍ୟବହାରରେ ଏକ ଧରଣର ଉତ୍ପାଦନ ବୋଲି ବର୍ଣ୍ଣନା କରିଛନ୍ତି । ଏହି ବ୍ୟାପାରରେ ବ୍ରେଶ୍‌ଟଙ୍କ ସହିତ ମତର ଖୁବ୍ ସାମଞ୍ଜସ୍ୟ ରହିଛି ଓ୍ୱାଲଟର ବେଞ୍ଜାମିନ୍‌ଙ୍କର (୧୮୯୨-୧୯୪୦) । ସେ ଯାହାହେଉ, ବ୍ରେଶ୍‌ଟଙ୍କ ମତରେ ନାଟ୍ୟକାରର ହାତରେ ନାଟକ ଯେଉଁ ରୂପ ଲାଭ କରିଛି, ଏପରିକି ମଞ୍ଚ ଉପରେ ନାନା ଧରଣର ସରଞ୍ଜାମ ଓ ଅଭିନେତାମାନଙ୍କର ଅଭିନୟ କୁଶଳତା ସହଯୋଗରେ ନାଟକର ଯେଉଁ ରୂପ ଉପସ୍ଥାପିତ କରଯାଏ, ତା ମଧ୍ୟ ନାଟକର ଚରମ ପରିଣତ ରୂପ ନୁହେ । ଦର୍ଶକ ଏକ ଧରଣର ସକ୍ରିୟ ଅଂଶ ଗ୍ରହଣ କରେ । ପ୍ରତ୍ୟେକ ଥର ପ୍ରତ୍ୟେକ ଧରଣର ଦର୍ଶକ ବିଶିଷ୍ଟ ସକ୍ରିୟ ଅଂଶ ଗ୍ରହଣ ମାଧ୍ୟମରେ ନାଟକକୁ ବାରମ୍ବାର ଅଲଗା ଅଲଗା ପରିଣତ ରୂପ ଦାନ କରେ । ଅର୍ଥନୈତିକ ଜୀବନରେ ଉତ୍ପାଦନ ଶକ୍ତିର ବିକାଶ ସଙ୍ଗେ ସଙ୍ଗେ ଯେପରି ସାମାଜିକ ସମ୍ପର୍କରେ ମଧ୍ୟ ବିକାଶ ଆସିବାକୁ ବାଧ୍ୟ, ଠିକ୍ ସେପରି ଭବରେ ଯେଉଁ ଶିଳ୍ପର ସୃଷ୍ଟି ବସ୍ତୁଗତ ଉପକରଣ ଉପରେ ନିର୍ଭରଶୀଳ, ସେଇ ବସ୍ତୁଗତ ଉପକରଣର ବିକାଶ ସହିତ ଶିଳ୍ପ ରୂପରେ ବିକାଶ ଘଟେ । ପୁଣି ଶିଳ୍ପ ବସ୍ତୁ ଓ ଭୋକ୍ତା ସହିତ ସାମାଜିକ ସମ୍ପର୍କର ବିବର୍ତ୍ତନ ଘଟେ । ଏଇ ବିଶ୍ଳେଷଣ ପଦ୍ଧତିକୁ ସାହିତ୍ୟରେ ପ୍ରୟୋଗ କରିବା ଏକାବେଳକେ ସହଜ କାର୍ଯ୍ୟ ନୁହେଁ, ତେବେ ବସ୍ତୁବାଦୀ ସାହିତ୍ୟତତ୍ତ୍ୱରେ ବିଶ୍ୱାସୀ ଏପରି ସାହିତ୍ୟ ପାଠକକୁ ଏଇ ଦୁରୂହ ପଦ୍ଧତି ପ୍ରୟୋଗ କରି ଶିଳ୍ପବସ୍ତୁର ସ୍ୱରୂପ ସମ୍ବନ୍ଧରେ ନୂତନ ଅନ୍ତର୍ଦୃଷ୍ଟି ଲାଭ କରିବାକୁ ହେବ ।

Ideology ସମ୍ପର୍କରେ ମାର୍କସଙ୍କ ମୌଳିକ ତତ୍ତ୍ୱକୁ ଲୁଇ ଆଲଥୁସାର ବିଶଦ ଭାବେ ବ୍ୟାଖ୍ୟା କରିଛନ୍ତି ଏବଂ ମାର୍କସଙ୍କ ନିଜ ଚିନ୍ତାରେ ମଧ୍ୟ ଯେଉଁଠାରେ ସ୍ୱଚ୍ଛତାର ଅଭାବ ଥିଲା, ସେ ତାହା ଦୂର କରି ଦେଖାଇଛନ୍ତି ଯେ ଠିକ୍ ଅର୍ଥରେ ଏହା ସାହିତ୍ୟ ବା ଶିଳ୍ପ Ideology ପଦବାଚ୍ୟ । ଏ ବିଷୟରେ ତାଙ୍କର ନିଜସ୍ୱ କୌଣସି ତତ୍ତ୍ୱ ନାହିଁ । ବରଂ ତାଙ୍କର ବ୍ୟାଖ୍ୟାକୃତ Ideologyର ଆଲୋକରେ ଯେତେବେଳେ ସେ ସାହିତ୍ୟକୁ ବୁଝିବାକୁ ଚେଷ୍ଟା କରିଛନ୍ତି, ସେଠାରେ ବୋଧହୁଏ କେତେକ ପରିମାଣରେ ଭୁଲ ଓ ସ୍ୱବିରୋଧୀ ଉକ୍ତି କରି ପକାଇଛନ୍ତି । ତାଙ୍କ ପ୍ରଦର୍ଶିତ ପଥରେ ଯେତିୟାନ ବାଲିବାର (Etienne Balibar) ଓ ପିୟାର ମାଶରେ (Piare Macherey) ସାହିତ୍ୟର ସ୍ୱରୂପ ସମ୍ପର୍କରେ ଅହୁରି ଯୁକ୍ତି-ଯୁକ୍ତ ବ୍ୟାଖ୍ୟା ଦେଇଛନ୍ତି । ଏଠାରେ ଅବଶ୍ୟ ଆମ୍ଭେମାନେ Pour Une Theorie de la production Letteraire (୧୯୭୦) ଗ୍ରନ୍ଥରେ ପିୟାର ମାସ୍‌ରେ ଯେଉଁ ଆଲୋଚନା କରିଛନ୍ତି, ଆମେ କେବଳ ତାର ପରିଚୟ ଦେବୁ । ମାସ୍‌ରେଙ୍କ ମତରେ ଜଣେ ଶିଳ୍ପୀ ବା ସାହିତ୍ୟିକ ନିକଟରେ Ideology କେତୋଟି ସର୍ତ୍ତ ରୂପରେ ଉପସ୍ଥିତ ହୁଏ । ସେ ସର୍ତ୍ତ ଅତିକ୍ରମ କରିବାର ସାଧ୍ୟ ଶିଳ୍ପୀର ନାହିଁ । ସେ ସମସ୍ତ ସର୍ତ୍ତ ଶିଳ୍ପ ବସ୍ତୁରେ ଧୃତ ହୋଇଥାଏ । ମାସ୍‌ରେଙ୍କ ମତରେ ସମାଲୋଚକର କାର୍ଯ୍ୟ ହେଉଛି ନିର୍ଦ୍ଦିଷ୍ଟ କୌଣସି Ideologyର ପରିସର ମଧ୍ୟରେ ଜଣେ ନାଟ୍ୟକାର ବା ଔପନ୍ୟାସିକ ନିଜର ନାଟକ ବା ଉପନ୍ୟାସ ରଚନା କରିଥିଲେ, ଏଇ ଅନୁସନ୍ଧାନରୁ ହିଁ ପ୍ରକାଶ ପାଇବ । ବକ୍ତବ୍ୟ, ଚରିତ୍ର-ବିଶେଷ ଏବଂ ଘଟଣା ସନ୍ନିଧାନରୁ ଇଙ୍ଗିତରୁ ଜଣାପଡ଼ିବ ଯେ କେଉଁ ବିଶେଷ Ideological କାରଣରୁ ଏଇ ସଂସ୍ଥାନର ଓଲଟା ଅନ୍ୟକିଛି କରିବା ଶିଳ୍ପୀପକ୍ଷରେ ସମ୍ଭବ ନଥିଲା । ଯାହା ଅଛି ଏବଂ ଯାହା ନାହିଁ– ଅଥଚ ନ ଥାଉ ମଧ୍ୟ ସଙ୍କେତ ରଖିଯାଇଛି । ଏ ଦୁଇଟିର ପରସ୍ପର ନିର୍ଭର ସମ୍ପର୍କ ମାଧ୍ୟମରେ ଏଇ ଶିଳ୍ପବସ୍ତୁ ନିର୍ମିତ ହୁଏ । ଏଇ ଅନ୍ତର୍ଦ୍ୱନ୍ଦ୍ୱ ଶିଳ୍ପ ବସ୍ତୁର ସ୍ୱରୂପରେ ଗୋଟିଏ ଦିଗ । ଯେଉଁ-ଠାରେ ଶିଳ୍ପୀ ଆପାତଃ ମୂକ, ସେଠାରେ ମାସ୍‌ରେ ଶିଳ୍ପୀକୁ ତାର୍ ଐତିହାସିକ ଅବସ୍ଥାନ ସହିତ ସମ୍ପର୍କିତ କରିଛନ୍ତି । ରୋମାଣ୍ଟିକ୍ ଚିନ୍ତାରେ ଶିଳ୍ପୀ ସ୍ରଷ୍ଟାର ଯେଉଁ ନିରାଲମ୍ବ ସ୍ୱୟଂସମ୍ପୂର୍ଣ୍ଣ ନିରପେକ୍ଷ ସତ୍ତାର କଳ୍ପନା କରଯାଏ, ମାସ୍‌ରେ ତାହା ମାନି ନେଇ ନାହାନ୍ତି । ସମାଲୋଚକର ଅନୁସନ୍ଧାନୀ ଆଖିରେ ଅସମ୍ପୂର୍ଣ୍ଣତା, ଅନୁପସ୍ଥିତି ଏଇସବୁ ସନ୍ଧାନ କରିବ । ଅସମ୍ଭାବ୍ୟ ମନେ ହେଲେ ବି ଏଇଟା ହିଁ

ତାର ବକ୍ତବ୍ୟ । ଯେଉଁଠାରେ ବକ୍ତବ୍ୟର ଅନୁପସ୍ଥିତି, ସେଠାରେ ହିଁ ତାର ଜଟିଳତାର ସନ୍ଧାନ ମିଳେ । ମାସ୍‌ରେ ନିଜ ସମାଲୋଚନା ପଦ୍ଧତିର ଏକ ଚମତ୍କାର ଦୃଷ୍ଟାନ୍ତ ଖୋଜି ପାଇଥିଲେ ଲେଲିନଙ୍କ ଟଲଷ୍ଟୟ-ସମାଲୋଚନାରେ । ଟଲଷ୍ଟୟଙ୍କ ସମ୍ପର୍କରେ ଲେନିନ୍ କେତୋଟି ଆଲୋଚନା କରିଥିଲେ । ଟଲଷ୍ଟୟଙ୍କ ଈଶ୍ୱର ବିଶ୍ୱାସ, ଅହିଂସବାଦ ଏବଂ ଗଭୀର ବିଷର୍ଣ୍ଣତା ଇତ୍ୟାଦି ଭିତରେ ରୁଷ୍ ବିପ୍ଳବର ଗୋଟିଏ ପର୍ଯ୍ୟାୟ କିପରି ଭାବେ ରୂପ ପାଇଛି, ତାହା ଏଗୁଡ଼ିକର ଉପଜୀବ୍ୟ । ଟଲଷ୍ଟୟଙ୍କ ଶ୍ରେଣୀ ଅବସ୍ଥାନରୁ ବାସ୍ତବ ପରିସ୍ଥିତିକୁ ଏପରି ଭାବେ ଉପସ୍ଥାପିତ କରିବା ଯେ ଅପରିହାର୍ଯ୍ୟ ଥିଲା, ଏକଥା ଲେନିନ୍ ବ୍ୟାଖ୍ୟା କରିଥିଲେ ।

ଅନେକ ମନେ କରନ୍ତି ଯେ, ସାହିତ୍ୟର ବିଷୟବସ୍ତୁ ଓ ରୂପାୟନକୁ ପୁଙ୍ଖାନୁପୁଙ୍ଖ ଭାବରେ ବିଶ୍ଳେଷଣ କରିବାର ସମାଲୋଚନା ପଦ୍ଧତି ସହିତ ସାହିତ୍ୟର ସାମାଜିକ ସମ୍ପର୍କ ନିର୍ଣ୍ଣୟ ପ୍ରଚେଷ୍ଟାର ଗୋଟିଏ ମୌଳିକ ବିରୋଧିତା ରହିଛି ଏବଂ ତାର ଇଙ୍ଗିତ ହେଉଛି, ପ୍ରଥମ ପଦ୍ଧତିଟି ଠିକ୍, ଦ୍ୱିତୀୟଟି ଭୁଲ । ଏଇ ଅଭିମତ ଭିତରେ ଗୋଟି ldeology ପ୍ରକଟ ଭାବେ କାର୍ଯ୍ୟ କରୁଛି । ଏଇ ideology ଶିକ୍ଷିତ-ମନକୁ ସମସ୍ତ ଧରଣର ସାମାଜିକ ବିଶ୍ଳେଷଣରୁ ଦୂରରୁ ଆଗ୍ଳି ରଖିବାକୁ ଚାହେଁ ।

ଦ୍ୱିତୀୟତଃ ମାର୍କସୀୟ ସାହିତ୍ୟତତ୍ତ୍ୱରେ ରାଜନୈତିକ ପ୍ରଗତିର ଅନୁକୂଳ ସାହିତ୍ୟକୁ ଅନୁସନ୍ଧାନ କରିବାର ନିର୍ଦ୍ଦେଶ ନାହିଁ, ଲକ୍ଷ୍ୟ ମଧ୍ୟ ନାହିଁ । ଇତିହାସର ଯେଉଁ ଦ୍ୱାନ୍ଦ୍ୱିକ ସମ୍ପର୍କ, ତାହା ପ୍ରଗତି ପକ୍ଷରେ ନ ଯାଇ କିପରି ଉପଲବ୍ଧି କରାଯାଏ, ବାଲ୍‌ଜାକ୍‌ଙ୍କ ଉପନ୍ୟାସରେ ମାର୍କସ୍ ତାର ପରିଚୟ ପାଇଥିଲେ, ଯଦିଓ ସଚେତନ ଭାବରେ ବାଲ୍‌ଜାକ ଥିଲେ ପ୍ରତିକ୍ରିୟାଶୀଳ ।



ଲେଖକ :
ପ୍ରଫେସର ଓ ମୁଖ୍ୟ, ଇଂରାଜୀ ବିଭାଗ,
ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ,
ଶାନ୍ତିନିକେତନ-୭୩୧୨୩୫ (ପ: ବ:)

ଅନୁବାଦକ :
ପ୍ରାଧ୍ୟାପକ, ଓଡ଼ିଆ ବିଭାଗ,
ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ,
ଶାନ୍ତିନିକେତନ-୭୩୧୨୩୫ (ପ. ବ.)

# Indian Culture In Orissa

Dr. Harekrushna Mahtab

Culture is a word which involves a number of concepts of greatest importance to the modern man. It is very difficult to define it. Tylor's definition on the whole which holds good is that "culture is that complete complex whole which includes knowledge, belief, art, morals, law, custom and any other capabilities acquired by man as a member of the society." It is extremely difficult also to trace the history of development of culture in various social units. Arnold Tynobe holds the view that culture grows as the societies move as the result of a response to a challenge. Even if this opinion is accepted, then it will be very difficult to trace the history of development of culture in India as a whole. That is because India is a very ancient country and it consists of a large number of social units which have grown in different set of circumstances, thus each developing a peculiar culture of its own. Considering all these, to-day many scholars hold the view that there is no such thing as Indian culture. But what exists is the Indian civilization which has grown in the course of the past centuries. In thish article we are to observe the

shape of Indian civilization or culture in the socieiy of Oriyas. What should strike all students of history is that the Oriya society even though it lived under different political administrations since the Sixteenth Century for about 400 years and went through all kinds of tribulations, it did not disintegrate. On the contrary, it became more and more cohesive as the situation grew more and more adverse. Arnold Tynobe in his 'study of history' suggests that a society can withstand political and other adversities if it had developed a strong literature and also a strong faith in some religion. If we study the history of Orissa from this point view, we will easily see that it is the Oriya literature and the faith in the mysterious Jagannath which have maintained the Oriya society all these years in spite of adverse circumstances. The culture of the Oriya society developed in the course of its facing the challenge which was thrown not only by political disintegration but also by severe religious conflicts. The Aryan civilization in the north and the Dravidian civilization in the south both were great challenges to the Oriya society which existed in the initial stage. The history of Jagannatha is really the history of development of culture in Orissa. Jagannath has risen from the lowest to the highest position in the course of centuries. The tribal deity was adopted by the Buddhist for about a thousand years. Then it waw taken over by Brahminism which was again divided into several sects such as Shaivas, Baishnabas, Adwaitabadis, Dwetabadis and Visistadwaitabadis and so on. In the rituals of Jagannatha the most courious phenomenon is that all the rituals of Buddhism and all the branches of Brahminism have been accommodated in a harmonious manner. This is indeed the

peculiar aspect of Indian civilization which manifests itself in Orissa. Syncretism has become the basic structure of the Oriya society and Jagannath is the epitome of it. This syncretism is reflected also in almost all the fields of activity. One will not find the rigorous caste and communal strife of the north in Orissa. Nor one will find the acrimonious relationship between Brahmins and non-Brahmins of the south in Orissa. If one is to study the groth of Indian civilization of the past several Centuries, one should study the civilization as it exists in Orissa. It will not be an exaggeration to say that Orissa is the epitome of Indian civilization.*



*ବିଶ୍ୱଭାରତୀ ପତ୍ରିକାରେ ପ୍ରକାଶ ଲଗି ୧୫ । ୩ । ୧୯୭୯ରେ ନୀଳାଦ୍ରିଭୂଷଣ ହରିଚନ୍ଦନଙ୍କ ନିକଟକୁ ପ୍ରେରିତ ଲେଖା ।